# ଗାନ୍ଧୀ ବିଚାରରେ ନାରୀ

ସୌରୀବନ୍ଧୁ କର

ମହିଳାମାନଙ୍କୁ ମୁକ୍ତି ଦେବାରେ ବା ସଶକ୍ତିକରଣ କରିବାରେ ମହାତ୍ମା ଗାନ୍ଧୀଙ୍କର ଭୂମିକା ସମ୍ପର୍କରେ ବିଚାର କରିବା ଅତ୍ୟନ୍ତ ଗହନ ବ୍ୟାପାର । ଗାନ୍ଧୀ ନିଜେ ଓ ଗାନ୍ଧୀଙ୍କ ସମ୍ପର୍କରେ ଗବେଷଣା କରୁଥିବା ଗବେଷକମାନଙ୍କ ମତରେ ଗାନ୍ଧିଜୀ ତାଙ୍କ ପ୍ରାରମ୍ଭିକ ଜୀବନରେ ନିଜ ସ୍ତ୍ରୀ କସ୍ତୁରବାଙ୍କ ପ୍ରତି ନିଷ୍ଠୁର ବ୍ୟବହାର ପ୍ରଦର୍ଶନ କରିଥିଲେ କିନ୍ତୁ ଦକ୍ଷିଣ ଆଫ୍ରିକାରେ ୧୯୧୩ ମସିହା ଅହିଂସା ସତ୍ୟାଗ୍ରହ ଆରମ୍ଭଠାରୁ ତାଙ୍କର ମୃତ୍ୟୁ ୧୯୪୮ ମସିହା ପର୍ଯ୍ୟନ୍ତ ଗାନ୍ଧିଜୀ ମହିଳାମାନଙ୍କର ସମସ୍ୟାକୁ ଶୁଣୁଥିଲେ, ସେମାନଙ୍କୁ ସମର୍ଥନ ଦେଉଥିଲେ, ଉତ୍ସାହିତ କରୁଥିଲେ ଏବଂ ସେମାନଙ୍କ ଦ୍ୱାରା ନିଜେ ଉତ୍ସାହ ପାଉଥିଲେ । ଇତିହାସରେ ଏପରି ଘଟଣା ବିରଳ । ଏନ୍.ରାଧାକ୍ରିଷ୍ଣନ୍, ଗାନ୍ଧୀ ସ୍ମୃତି ପ୍ରତିଷ୍ଠାନର ନିର୍ଦ୍ଦେଶକ ତାଙ୍କର ଲେଖା 'କସ୍ତୁରବା ଏବଂ ମହିଳା ସଶକ୍ତିକରଣ'ରେ କହିଛନ୍ତି–

"In all his fight for Justice, liberty and human dignity, it might be worth remembering that Gandhi brought women to the frontline of the fight. Never before in Indian history women joyfully participated in public activities as they did under the clarion call of the mahatma."

(Sasith Singh, ed, Kasturaba & Women Empowerment)

ଗାନ୍ଧିଜୀ କୌଣସି ସଂକୋଚ ନରଖି ଦୃଢ ଭାବରେ କସ୍ତୁରବାଙ୍କୁ ଉପଲକ୍ଷ୍ୟ କରି କହିଥିଲେ ଯେ, 'ମୁଁ ଆଜି ଯାହା କିଛି, ତାହା ତାଙ୍କ ଯୋଗୁଁ ହିଁ ହୋଇପାରିଛି ।' ତାଙ୍କ ଜୀବନରେ ସେ ଭଗବଦ୍ ଗୀତା, ଖ୍ରୀଷ୍ଟଙ୍କ ଉପଦେଶ ଓ ଟଲଷ୍ଟୟ, ରସ୍କିନ ଏବଂ ରାଜଚନ୍ଦ୍ରଙ୍କ ପରି ଲେଖକମାନଙ୍କ ଲେଖାଦ୍ୱାରା ପ୍ରଭାବିତ ହୋଇଥିଲେ । କିନ୍ତୁ ଏହା ଥିଲା ପୁସ୍ତକଗତ ବିଦ୍ୟା କିନ୍ତୁ ଗାନ୍ଧିଜୀଙ୍କୁ ସତ୍ୟାଗ୍ରହ ସମ୍ପର୍କରେ ଜାଣିବାକୁ କିଛି ସମୟ ଲାଗିଥିଲା । ସେ 'ସତ୍ୟାଗ୍ରହ'କୁ କିପରି ପ୍ରୟୋଗ କରାଯାଇପାରିବ, ତାହା କସ୍ତୁରବାଙ୍କଠାରୁ ହିଁ ଶିଖିଥିଲେ ।



୧୮୮୨ରେ ସେମାନେ ଅଳ୍ପ ବୟସରେ ବିବାହ କରିଥିଲେ । ୧୯୦୬ ମସିହା ପର୍ଯ୍ୟନ୍ତ ଅର୍ଥାତ୍ ତାଙ୍କୁ ୩୬ବର୍ଷ ହେବା ପର୍ଯ୍ୟନ୍ତ ସେ କସ୍ତୁରବାଙ୍କୁ ନିଷ୍ଠୁର ବ୍ୟବହାର କରୁଥିଲେ । ୧୯୦୬ ମସିହାରେ ସେ ବ୍ରହ୍ମଚର୍ଯ୍ୟବ୍ରତ ପାଳନ କରିବାର ସଂକଳ୍ପ ନେଲେ । କସ୍ତୁରବାଙ୍କର ଦୃଢ ଧାରଣା ଥିଲା ଯେ ହିନ୍ଦୁ ଧର୍ମରେ ସ୍ତ୍ରୀଙ୍କୁ ସ୍ୱାମୀର ଇଚ୍ଛା ନିକଟରେ ସମର୍ପଣ କରିବାକୁ ହେବ । ଯଦିଓ ସେମାନଙ୍କ ମଧ୍ୟରେ ଅନେକ ମତ ପାର୍ଥକ୍ୟ ଥିଲା, କିନ୍ତୁ ଯେଉଁ ବ୍ୟକ୍ତିକୁ ଲକ୍ଷ ଲକ୍ଷ ଲୋକ ମହାତ୍ମା ଭାବରେ ଗ୍ରହଣ କରିଛନ୍ତି, ତାଙ୍କର ସମସ୍ତ ଅବିଗୁଣ ସତ୍ତ୍ୱେ ସେ ତାଙ୍କୁ ଓ ତାଙ୍କର ମତକୁ ସମ୍ମାନର ସହିତ ଗ୍ରହଣ କରୁଥିଲେ । ମାତ୍ର ପରସ୍ପର ମଧ୍ୟରେ

ଥିଲା ଅତୁଟ ଶ୍ରଦ୍ଧା ଓ ବିଶ୍ୱାସ । ସେମାନେ ନିଜର ବିବାହ ପ୍ରତି ପ୍ରତିବଦ୍ଧ ଥିଲେ ଏବଂ ସତ୍ୟାଗ୍ରହୀ ଭାବରେ ଥିଲା ସେମାନଙ୍କର ଅତୁଟ ପ୍ରତିବଦ୍ଧତା । ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରେ ସାଧାରଣ ହିନ୍ଦୁ ପାରିବାରିକ ଜୀବନକୁ ପରିତ୍ୟାଗ କରିଥିବା ଫଳରେ କସ୍ତୁରବାଙ୍କୁ ଅତ୍ୟନ୍ତ କଷ୍ଟ ସ୍ୱୀକାର କରିବାକୁ ହୋଇଥିଲା । ତଥାପି ସେ ୧୯୧୩ ମସିହାଠାରୁ ନିଜର ଶେଷ ଜୀବନ ପର୍ଯ୍ୟନ୍ତ ଗାନ୍ଧିଜୀଙ୍କ ସହିତ ସତ୍ୟାଗ୍ରହରେ ଯୋଗ ଦେଇଥିଲେ ଏବଂ ଗଠନମୂଳକ କାର୍ଯ୍ୟରେ ଅଂଶଗ୍ରହଣ କରିଥିଲେ ।

ଗାନ୍ଧିଜୀ ବହୁତ କଥା କସ୍ତୁରବାଙ୍କଠାରୁ ଶିଖିଥିଲେ, ଏପରିକି ତାଙ୍କ ମା' ପୁତଳିବାଇଙ୍କଠାରୁ ମଧ୍ୟ ଅଧିକ ଶିଖିଥିଲେ । ସେ ତାଙ୍କର ଆତ୍ମ ଜୀବନରେ ଲେଖିଛନ୍ତି, 'ମୋ ମନରେ ଧାରଣା ରହିଛି ଯେ ମୋ ମା ସ୍ୱାଧ୍ୱୀ ଓ ଅତ୍ୟନ୍ତ ଭାବପ୍ରବଣା ଥିଲେ । ସେ ପୂଜାପାଠ ନକରି ଖାଉନଥିଲେ, ନିତି ଦେଉଳକୁ ଯାଉଥିଲେ । ମୋର ହେତୁ ପାଇଲା ଦିନୁ ସେ କେବେହେଲେ ଚାତୁର୍ମାସ୍ୟବ୍ରତ କରିନଥିବାର ମୋର ମନେ ପଡୁନାହିଁ । ସେ ବଡ ବଡ କଠିନ ବ୍ରତ ଓ ମାନସିକ କରୁଥିଲେ ଓ ବ୍ରତ ଶେଷ ହେବାଯାଏ ତାକୁ ପାଳୁଥିଲେ । ରୋଗରେ ପଡିଲେ ବି ସେ ବ୍ରତ ପାଳିବା ବନ୍ଦ କରୁନଥିଲେ । ମା' ବ୍ୟବହାର କୁଶଳୀ ମଧ୍ୟ ଥିଲେ । ଦରବାରର ସବୁକଥା ସେ ଜାଣୁଥିଲେ । ରାଣୀଙ୍କ ଉଆସରେ ତାଙ୍କୁ ସମସ୍ତେ ବୁଦ୍ଧିମତୀ ବୋଲି ବିଚାରୁ ଥିଲେ ।' ଦକ୍ଷିଣ ଆଫ୍ରିକାରେ ଗାନ୍ଧିଜୀଙ୍କର ସହକର୍ମୀ ଥିବା ମିଲି ପୋଲାକ ଲେଖିଥିଲେ, 'ଗାନ୍ଧିଜୀଙ୍କର ଅତ୍ୟନ୍ତ ସହନଶୀଳତା ଓ ଧାର୍ମିକ ଭାବନା ପାଇଁ ଗାନ୍ଧୀଙ୍କର ମା' ବହୁ ପରିମାଣରେ ଦାୟୀ ।'' ସେ ବିଶ୍ୱାସ କରୁଥିଲେ ଯେ ଗାନ୍ଧୀଙ୍କର ବ୍ୟକ୍ତିତ୍ୱକୁ ପ୍ରସ୍ତୁତ କରିବାରେ ତାଙ୍କ ମା'ଙ୍କର ପ୍ରାରମ୍ଭିକ ପ୍ରଭାବ ଥିବାବେଳେ କସ୍ତୁରବାଙ୍କର ଥିଲା ବେଶୀ ପ୍ରଭାବ ।' ଗାନ୍ଧିଜୀଙ୍କର ଆତ୍ମା ରାଜନୀତିର ମୂଳ ବସ୍ତୁତଃ ତାଙ୍କ ମା'ଙ୍କର 'ଗଭୀର ଧାର୍ମିକ ଭାବନା' ଓ 'ଦରବାରର ସବୁ କଥା ଜାଣିବା'ରୁ ଆସିଥିଲା ।

ତେଣୁ ନାରୀମାନଙ୍କ ପ୍ରତି ଅନୁରକ୍ତି ତାଙ୍କର ମା' ଓ କସ୍ତୁରବାଙ୍କ ପ୍ରତି ଅନୁରକ୍ତିରୁ ହିଁ ଜାତ ହୋଇଥିଲା ଏବଂ ସେଥିପାଇଁ ସେ ପ୍ରତ୍ୟେକ ନାରୀକୁ 'ମା' ବୋଲି ବିଚାର କରୁଥିଲେ । ତାଙ୍କ ଜୀବନ ଓ ଭାରତର ମୁକ୍ତିର ଆଦର୍ଶ ବା ଛାଞ୍ଚ ଭାବେ ସେ କ୍ରମଶଃ 'ମାତୃତ୍ୱ'କୁ ଗ୍ରହଣ କରିଥିଲେ । ମା' ଯେପରି ନିଃସ୍ୱାର୍ଥପର ଭାବେ ନିଜ ପିଲାର ଲାଳନପାଳନ କରେ ଏବଂ ବଡ ହୋଇ ସ୍ୱାଧୀନ ହେବା ପର୍ଯ୍ୟନ୍ତ ତା'ର ଯତ୍ନ ନିଏ, ଠିକ୍ ସେହିପରି ଯଦି ଆମର ଅନୁଭବ ଓ ଅନୁରକ୍ତି ଆମର ଜନ୍ମଭୂମି ପ୍ରତି ନହୁଏ, ତେବେ ବହୁ ରାଷ୍ଟ୍ର ଆମକୁ ପଦଦଳିତ କରିଦେବ ଏହା ଥିଲା ତାଙ୍କର ବିଚାର ।

ସେ ଥରେ ଜଣେ ସହକର୍ମୀଙ୍କୁ କହିଥିଲେ, 'ଯେପର୍ଯ୍ୟନ୍ତ ଭାରତରେ ମାତୃଜାତିର ମୁକ୍ତି ନହୋଇଛି, ସେପର୍ଯ୍ୟନ୍ତ ସେ ଭାରତର ମୁକ୍ତି ଦେଖି ପାରୁନାହାଁନ୍ତି । ଏହି ଦୁଃଖଦ ପରିସ୍ଥିତି ପାଇଁ ପୁରୁଷମାନଙ୍କୁ ହିଁ ଦାୟୀ କରିଥିଲେ । ତାଙ୍କର ସାମାଜିକ ସଂସ୍କାର କାର୍ଯ୍ୟକ୍ରମ ସମୟରେ ଏହା ତାଙ୍କର ପ୍ରତ୍ୟକ୍ଷାନୁଭୂତି ହୋଇଥିଲା । ଯଦି ତାଙ୍କୁ ସମାଜକୁ ସଂସ୍କାର ଓ ପବିତ୍ର କରିବାକୁ ହୁଏ, ତେବେ ତାଙ୍କୁ ପ୍ରଥମେ ନିଜ ଭିତରେ ମା'ର ହୃଦୟ ସୃଷ୍ଟି କରିବାକୁ ହେବ । ମା-ସନ୍ତାନର ସମ୍ପର୍କ ହିଁ ସାମାଜିକ ପରିବର୍ତ୍ତନର ମୁଖ୍ୟ ଶକ୍ତି, ଯାହା ତାଙ୍କ ଶେଷ ଜୀବନରେ ବିଶେଷ ଭାବେ ପ୍ରତିଫଳିତ ହୋଇଥିଲା ।

ଯଦିଓ ଗାନ୍ଧିଜୀ ତାଙ୍କ ଆତ୍ମାର ରାଜନୀତିର କେତେକ ମୌଳିକ ନୀତି ତାଙ୍କ ମା ଓ ସ୍ତ୍ରୀଙ୍କଠାରୁ ଶିକ୍ଷାଲାଭ କରିଥିଲେ, ତଥାପି ତାଙ୍କ ଉପରେ ଅନ୍ୟ ମହିଳାମାନଙ୍କର ପ୍ରଭାବ ମଧ୍ୟ ପଡିଥିଲା ।

ଗାନ୍ଧିଜୀ ମହିଳାମାନଙ୍କୁ ସତ୍ୟାଗ୍ରହରେ ଯୋଗଦେବାକୁ ଆହ୍ୱାନ କରିବା ପୂର୍ବରୁ ଭାରତୀୟ ସଂସ୍କୃତିର ସଂସ୍କାର ଆରମ୍ଭ ହୋଇଥିଲା ଓ ତା'ର ପ୍ରଭାବରେ ନାରୀ ଜାଗରଣ ଦେଖାଦେଇଥିଲା ଏବଂ ଏକ ନୂତନ ଭଦ୍ର ମହିଳା ଶ୍ରେଣୀର ଆବିର୍ଭାବ ଘଟିଥିଲା, ଯେଉଁମାନେ ଜାତୀୟତାବାଦରେ ଉଦ୍‌ବୁଦ୍ଧ ହୋଇ ନୂତନ ଭାରତୀୟ ସମାଜ ଗଠନ ପାଇଁ ଚେଷ୍ଟା କରୁଥିଲେ । ଏହି କାର୍ଯ୍ୟରେ ଅଗ୍ରଣୀ ଭୂମିକାରେ ଥିଲେ ମିସେସ୍ ଆନିବେସାନ୍ତ ଯେ କି ରାଜନୈତିକ ପୃଷ୍ଠଭୂମି ଉପରେ ମହିଳାମାନେ ଅଂଶ ଗ୍ରହଣର ଆଦର୍ଶକୁ ଉପସ୍ଥାପିତ କରିଥିଲେ । ଗାନ୍ଧିଜୀଙ୍କର ବିଶ୍ୱସ୍ତ ସହକର୍ମୀ ଶ୍ରୀମତୀ ସରୋଜିନୀ ନାଇଡୁ ଥିଲେ ଏହି 'ନୂତନ ମହିଳା' । ଶ୍ରୀମତୀ କମଳା ଦେବୀ ଚଟ୍ଟୋପାଧ୍ୟାୟ ଥିଲେ ବିପ୍ଳବିଣୀ ସତ୍ୟାଗ୍ରହୀ । ଏହି ଭଦ୍ର ମହିଳାମାନେ ଗୃହ ମଧ୍ୟରେ ନାରୀର ଭୂମିକାକୁ ଗ୍ରହଣ କରିବା ସହିତ ଜାତୀୟ କାର୍ଯ୍ୟକ୍ରମରେ ସେମାନେ ଅଂଶ ଗ୍ରହଣ କରିବାରେ ମତ ରଖୁଥିଲେ । ଯାହା ଗାନ୍ଧୀଙ୍କ ମତ ଓ ଆଦର୍ଶ ଉପଯୋଗୀ ଥିଲା । ଗାନ୍ଧିଜୀଙ୍କର ଲବଣ ସତ୍ୟାଗ୍ରହ ସମୟରେ ମହିଳାମାନଙ୍କର ଯୋଗଦାନ ଏବଂ ସତ୍ୟାଗ୍ରହରେ ଅଂଶଗ୍ରହଣ ଥିଲା ଅନନ୍ୟ ଓ ଅସାଧାରଣ । ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେମାନେ ଗୋଷ୍ଠୀ ଜୀବନକୁ ଆପଣାର କରିନେଇଥିଲେ ।

କମଳାଦେବୀ ଲେଖିଥିଲେ, " Gandhiji... who presented community life as a single canvas to achieve the desired goal, then had to be a total change: a revolution with the emphasis on duty flowing from the tradition of dharma, rather then aggresively claiming right." ଲବଣ ସତ୍ୟାଗ୍ରହ ସମୟରେ ଗାନ୍ଧୀ ଯେତେବେଳେ ଦାଣ୍ଡି ଅଭିମୁଖେ ଯାତ୍ରା କଲେ ରାସ୍ତା କଡରେ ହଜାର ହଜାର ମହିଳା ଠିଆ ହୋଇ ସତ୍ୟାଗ୍ରହୀମାନଙ୍କୁ ଉତ୍ସାହିତ କରିଥିଲେ । ଗାନ୍ଧିଜୀ ଚାହୁଁ ନଥିଲେ ମହିଳାମାନେ ପୁରୁଷମାନଙ୍କ ସହିତ ଆସନ୍ତୁ କାରଣ ଏହାଦ୍ୱାରା ବ୍ରିଟିଶ ସରକାର ପୁରୁଷମାନଙ୍କୁ ଭୀରୁ ବୋଲି ଭାବିବ । ଏହା ସତ୍ତ୍ୱେ କମଳା ଦେବୀ ଓ ଅଭନ୍ତିକା ବାଈ ଗୋଖଲେ ଲବଣ ଆଇନ ଭଙ୍ଗରେ ଯୋଗ ଦେଇଥିଲେ ।

ଗାନ୍ଧିଜୀ ପାରିବାରିକ ଜୀବନ ଓ ବୈବାହିକ ସଂବନ୍ଧ ସମ୍ପର୍କରେ ନିଜର ସ୍ପଷ୍ଟ ମତ ଦେଇଥିଲେ । ସେ କହିଥିଲେ, 'ପତ୍ନୀ ପତିର ଦାସୀ ନୁହେଁ, ସେ ହେଉଛି ତା'ର ସହଚାରିଣୀ ଓ ସାହାଯ୍ୟକାରିଣୀ, ତା'ର ସକଳ ସୁଖ ଏବଂ ଦୁଃଖରେ ଜଣେ ସମକକ୍ଷା ସଙ୍ଗିନୀ । ଆପଣାର ପତି ପରି ତା'ର ମଧ୍ୟ ମୁକ୍ତ ଭାବରେ ଆପଣାର ନିଜ ପଥଟିକୁ ବାଛି ନେବାର ସ୍ୱାଧୀନତା ରହିଛି ।'

'ମୋ ମତରେ, ଜୀବନର ଯେକୌଣସି କ୍ଷେତ୍ରପରି ବିବାହର କ୍ଷେତ୍ର ମଧ୍ୟ ଏକ ଶୃଙ୍ଖଳାର ହିଁ କ୍ଷେତ୍ର । ଜୀବନ ହେଉଛି କର୍ତ୍ତବ୍ୟ, ଏକ ପରୀକ୍ଷା କ୍ଷେତ୍ର, ଇହ ତଥା ପର ଉଭୟ କାଳରେ ବୈବାହିକ ଜୀବନ ପାରସ୍ପରିକ ଇଷ୍ଟ ମାଧ୍ୟମରେ ବୃଦ୍ଧି କରିବା ଲାଗି ଉଦ୍ଦିଷ୍ଟ ହୋଇରହିଛି । ମନୁଷ୍ୟ ଜାତିର ସେବା କରିବା ଲାଗି ମଧ୍ୟ ଅଭିପ୍ରେତ ହୋଇରହିଛି । ତୁମେ ତୁମ ସ୍ତ୍ରୀଙ୍କ ସମ୍ମାନ ଲାଗି ପ୍ରହରୀ ହୋଇ ରହିବ ଏବଂ କଦାପି ତାଙ୍କ ଉପରେ ମାଲିକ ହେବନାହିଁ । ତୁମେ ତାଙ୍କର ଯଥାର୍ଥ ବନ୍ଧୁ ହୋଇ ରହିବ ।'

ଗାନ୍ଧିଜୀଙ୍କର ଏ ମତ ସତ୍ତ୍ୱେ ସେ ବିଜୟଲକ୍ଷ୍ମୀ ପଣ୍ଡିତ ଓ ତାଙ୍କର ସ୍ୱାମୀଙ୍କୁ ବ୍ରହ୍ମଚର୍ଯ୍ୟ ପାଳନ କରିବାର ଉପଦେଶ ଦେଇଥିଲେ । ଏପରିକି ସଦାବେଳିଆ କର୍ମୀମାନଙ୍କୁ ବିବାହ ନକରି ଏକାକୀ ରହିବାର ପରାମର୍ଶ ଦେଉଥିଲେ ଯାହା ଫଳରେ ସେମାନେ ସମ୍ପୂର୍ଣ୍ଣ ଭାବେ ସ୍ୱାଧୀନତା ସଂଗ୍ରାମ ପାଇଁ ନିଜକୁ ଉତ୍ସର୍ଗ କରିପାରିବେ । ଏପରିକି ସେ କ୍ରିପାଳିନୀଙ୍କର ବିବାହକୁ ମଧ୍ୟ ବିରୋଧ କରିଥିଲେ କାରଣ ସେ ଭାବୁଥିଲେ ଏହାଦ୍ୱାରା ସେ ଜଣେ ନିଷ୍ଠାପର କର୍ମୀକୁ ହରାଇବେ ।

ଏକ ପକ୍ଷରେ ସେ ମହିଳାମାନଙ୍କର ପାରମ୍ପରିକ ଭାବମୂର୍ତ୍ତିକୁ ସୁରକ୍ଷା କରିବା ବେଳେ ସବୁବେଳେ ଏହି ଆଦର୍ଶକୁ ଧରି ରଖିନଥିଲେ । ଗାନ୍ଧିଜୀ ବିଶ୍ୱାସ କରୁଥିଲେ ଯେ ମହିଳାମାନେ ଭାରତର ପ୍ରତ୍ୟେକ କ୍ଷେତ୍ରକୁ ପରିବର୍ତ୍ତନ କରିପାରିବେ । ପୁରୁଷଙ୍କର ପୁରୁଷତ୍ୱ ସହିତ ହିଂସା ଯୋଡି ହୋଇଗଲେ ତାହା ମାନବ ଜାତିକୁ ଧ୍ୱଂସ କରିଦେବ । ତେଣୁ ପୁରୁଷ ମହିଳାମାନଙ୍କର ନୀରବ ଶକ୍ତି ଏବଂ ହିଂସା ଆଚରଣ ନକରି ଅନ୍ୟାୟକୁ ପ୍ରତିରୋଧ କରିବାର ଶକ୍ତିକୁ ଗ୍ରହଣ କରିବା ଦରକାର । ଏ ଦୃଷ୍ଟିରୁ ପୁରୁଷମାନେ ମହିଳାମାନଙ୍କୁ ଅନୁକରଣ କରନ୍ତୁ ବୋଲି ସେ ବିଚାର କରୁଥିଲେ । ସେ ତାଙ୍କ ଜୀବଦ୍ଦଶାରେ ଜଣେ ନାରୀତ୍ୱ ପୁରୁଷ ଭାବରେ ବଞ୍ଚିବାକୁ ଚେଷ୍ଟା କରିଥିଲେ । ଅର୍ଥାତ୍ ନାରୀ ଓ ପୁରୁଷର ପାରମ୍ପରିକ ଭୂମିକାକୁ ତୁଲାଇବାକୁ ଚେଷ୍ଟା କରିଥିଲେ । ଏହା ହୁଏତ ଆଂଶିକ ଭାବରେ ସଫଳ ହୋଇଥିଲା । କିନ୍ତୁ ଏହି ପ୍ରଚେଷ୍ଟା ଭାରତୀୟ ଜାତୀୟତା ଆନ୍ଦୋଳନରେ ଅତ୍ୟନ୍ତ ବିସ୍ମୟଜନକ ଏବଂ ସେସମୟରେ ଅତ୍ୟନ୍ତ ବୈପ୍ଳବିକ ପଦକ୍ଷେପ ।

ସାମାଜିକ କୁସଂସ୍କାରକୁ ଦୂର କରି ମହିଳାମାନଙ୍କୁ ପୁରୁଷମାନଙ୍କ ସହିତ ସମାନ ସ୍ଥାନ ଦେବାକୁ ସେ ଚେଷ୍ଟା କରିଛନ୍ତି । ସେ ବାଲ୍ୟ ବିବାହକୁ ତୀବ୍ର ବିରୋଧ କରିବା ସହିତ ଏହା ଶାରୀରିକ ଓ ମାନସିକ ଭାବରେ ଯନ୍ତ୍ରଣା ବୋଲି ଉଲ୍ଲେଖ କରିଛନ୍ତି । ସେ ୟଙ୍ଗଇଣ୍ଡିଆରେ ତା ୨୭.୮.୧୯୨୫ରେ ଲେଖିଥିଲେ, 'ଅଳ୍ପ ବୟସର ନିରୀହା ବାଳିକାମାନଙ୍କୁ ପୁରୁଷର କାମାନ୍ଧତାରୁ ରକ୍ଷା କରିବା ଉଦ୍ଦେଶ୍ୟରେ ହେଉଥିବା ଯେକୌଣସି ଆନ୍ଦୋଳନକୁ ମୁଁ ସମର୍ଥନ କରିବି ।' ସେ ବିବାହ ବୟସ ୧୬ବର୍ଷ ରଖିବା ଉପରେ ଦୃଢ ଯୁକ୍ତି ରଖିବା ସହିତ କହିଥିଲେ, 'ଭାରତୀୟ ବାଳିକାମାନଙ୍କୁ ଅକାଳ ବାର୍ଦ୍ଧକ୍ୟ ଓ ଅକାଳ ମୃତ୍ୟୁର କବଳରୁ ରକ୍ଷା କରିବା ଏବଂ ହିନ୍ଦୁଧର୍ମକୁ ଅସ୍ଥିସାର ଦୁର୍ବଳ ଶିଶୁ ଜନ୍ମ ଦେବାର ଅପଦାୟିତ୍ୱରୁ ମୁକ୍ତ କରିବା ପାଇଁ ଯେଉଁମାନେ ପ୍ରୟାସ କରୁଛନ୍ତି, ମୁଁ ସେମାନଙ୍କର ସକଳ ସଫଳତା କାମନା କରୁଛି । ସେ ମଧ୍ୟ କହିଛନ୍ତି ଯେ ଝିଅମାନଙ୍କ ଉପରେ ବିବାହକୁ ଜବରଦସ୍ତ ଆଣି ଲଦି ଦେବା ପିତାମାତାଙ୍କ ପକ୍ଷରେ ଏକ ସମ୍ପୂର୍ଣ୍ଣ ଭୁଲ୍ କାମ । ଝିଅମାନଙ୍କୁ ଉପାର୍ଜନକ୍ଷମ ହେବା କ୍ଷେତ୍ରରେ ଅଯୋଗ୍ୟ କରି ରଖିବା ମଧ୍ୟ ସମାନ ଭାବରେ ଭୁଲ । ବିବାହ ପାଇଁ ଅସମ୍ମତ ହେଉଛି ବୋଲି ଜଣେ ଝିଅକୁ ରାସ୍ତା ଉପରକୁ ବାହାର କରିଦେବା ପାଇଁ କୌଣସି ପିତାର ଅଧିକାର ନାହିଁ ।

ବିଧବା ବିବାହ ସମ୍ପର୍କରେ ଗାନ୍ଧିଜୀଙ୍କ ବିଚାର ଥିଲା ତିନିଗୋଟି ପର୍ଯ୍ୟାୟରେ । ପିଲାଦିନରୁ ବିଧବା ଝିଅମାନଙ୍କୁ ବାପା ମା' ବିବାହ କରାଇଦେବା ଉଚିତ୍ । ଏହାକୁ ପୁନଃବିବାହ ବୋଲି ବିଚାର କରିବା ଠିକ୍ ନୁହେଁ । ଯୁବତୀ ଝିଅମାନେ ବିଧବା ହୋଇଗଲେ ସେମାନେ ବିବାହ କରିବେ କି ନାହିଁ ତାହାର ନିଷ୍ପତ୍ତି ସେମାନେ ନେବେ । ଗାନ୍ଧୀଙ୍କ ବିଚାରରେ ପ୍ରତ୍ୟେକ ବିଧବା ସ୍ତ୍ରୀ ପୁନଃ ବିବାହ କରିବାର ଅଧିକାର ରହିଛି । କିନ୍ତୁ ସେମାନଙ୍କୁ ବିଧବା ଭାବରେ ରହିବାକୁ ବା ସ୍ୱାମୀର ଚିତାରେ ପୋଡି ମାରିବାକୁ ବାଧ୍ୟ କରାଯିବା ଉଚିତ୍ ନୁହେଁ ।

ସେ ଥିଲେ ସତୀପ୍ରଥାର ଘୋର ବିରୋଧୀ । ୟଙ୍ଗଇଣ୍ଡିଆରେ ତା ୨୧.୦୫.୧୯୩୦ରେ 'ବିଂଶ ଶତାବ୍ଦୀର ସତୀ' ବୋଲି ଏକ ଅଗ୍ରଲେଖା ଘାଟକୋପାରର ଜଣେ ଭଦ୍ର ମହିଳାଙ୍କ ଅନୁରୋଧରେ ଲେଖିଥିଲେ । ସେ ଏଥିରେ କହିଥିଲେ, 'ଯେଉଁ ପତିପ୍ରାଣ ସ୍ତ୍ରୀ ପ୍ରେମ ଓ ନିଷ୍ଠାରେ ସ୍ୱାମୀର ଜୀବିତାବସ୍ଥାରେ ଓ ମୃତ୍ୟୁପରେ ସ୍ୱାମୀର ନିଃସ୍ୱାର୍ଥ ସେବା କରେ ଏବଂ କାୟମନୋବାକ୍ୟରେ ପବିତ୍ର ରହେ, ସେଇ ହେଉଛି ପ୍ରକୃତ ସତୀ । ସ୍ୱାମୀର ଚିତାରେ ଆତ୍ମବିସର୍ଜନ କରିବା ପଛରେ କୌଣସି ସଦ୍‌ଜ୍ଞାନ ପ୍ରମାଣ ନାହିଁ, ଏହା କେବଳ ଆତ୍ମାର ସ୍ୱରୂପ ବିଷୟରେ ଅଜ୍ଞତାର ପରିଚୟ ଦିଏ ।' ପାଶବିକ କାମ-ପ୍ରବୃତ୍ତିର ପରିତୃପ୍ତି-ସାଧନ ପରିବର୍ତ୍ତେ ପତିର ବ୍ୟକ୍ତିତ୍ୱରେ ନିଜର ଅସ୍ମିତାକୁ ବିଲୀନ କରିଦେଇ ନିଃସ୍ୱାର୍ଥ ଓ ନିର୍ଲିପ୍ତ ସେବାରେ ଆଦର୍ଶ ଉପଲବ୍ଧି କରିବାକୁ ସତୀ ସ୍ତ୍ରୀ ବିବାହର ଉଦ୍ଦେଶ୍ୟ ରୂପେ ଗ୍ରହଣ କରିବ ମୃତ ସ୍ୱାମୀର ଚିତାଗ୍ନିରେ ନିଜକୁ ଝାସଦେଇ ସେ ସତୀତ୍ୱର ପ୍ରମାଣ ଦେବନାହିଁ, ମାତ୍ର ସେ ସପ୍ତପଦୀ-ପ୍ରଥାରେ ନିଜର ବିଶ୍ୱାସ ଦର୍ଶାଇବାର ମୁହୂର୍ତ୍ତଠାରୁ ସର୍ବଦା ନିଜର ତ୍ୟାଗ, ଆତ୍ମ-ନିଗ୍ରହ, ସୁଖ-ବିସର୍ଜନ, ଏବଂ ନିଜର ସ୍ୱାମୀ, ପରିବାର ଓ ଦେଶର ସେବାରେ ନିଜକୁ ଉତ୍ସର୍ଗ କରିଦେବା ଦ୍ୱାରା ତାହା ପ୍ରମାଣ କରିବ ।'

ଗାନ୍ଧିଜୀ ଯୌତୁକକୁ ଏକ ନିଷ୍ଠୁର ପ୍ରଥା ବୋଲି ଉଲ୍ଲେଖ କରିଥିଲେ । ସେ କହିଛନ୍ତି, 'ଅର୍ଥ ପାଇଁ ବାପା ମାଆ ବିବାହର ବନ୍ଦୋବସ୍ତ କରିବେ, ଏ ରୀତି ଅବଶ୍ୟ ବନ୍ଦ ହେବ । ଏହି ପ୍ରଥାଟି ଜାତି ବ୍ୟବସ୍ଥା ସହିତ ନିବିଡ ଭାବରେ ଜଡିତ ହୋଇରହିଛି । ପାତ୍ର ବା ପାତ୍ରୀ ବାଛିବା ପର୍ଯ୍ୟନ୍ତ ଏକ ନିର୍ଦ୍ଦିଷ୍ଟ ଜାତି ଭିତରେ ବାସ କରୁଥିବା ମାତ୍ର କେତେଜଣ ଯୁବକ ଯୁବତୀଙ୍କ ମଧ୍ୟରେ ସୀମାବଦ୍ଧ ହୋଇ ରହିଥିବ, ଯୌତୁକ ପ୍ରଥା ବିରୁଦ୍ଧରେ ଯେତେ ଯାହା କୁହାଗଲେ ମଧ୍ୟ ତାହା ଅବଶ୍ୟ ରହିଥିବ । ଯେଉଁ ଯୁବକ ଯୌତୁକ ନେବାକୁ ବିବାହର ଏକ ସର୍ତ୍ତ କରି ଥୋଇଛି, ତାହାର ଶିକ୍ଷା ଓ ତାହାର ଦେଶ ନାରୀ ଜାତିର ଅବମାନନା ହିଁ କରୁଛି ।''

ଯୌତୁକ ଦାବିକୁ ଉପେକ୍ଷା କରି ଝିଅମାନେ ବିବାହକୁ ପ୍ରତ୍ୟାଖ୍ୟାନ କରିବାକୁ ସେ ପରାମର୍ଶ ଦେଇଛନ୍ତି ।

ଗାନ୍ଧିଜୀ ପର୍ଦ୍ଦା ପ୍ରଥାର ସମ୍ପୂର୍ଣ୍ଣ ବିଲୋପ ପାଇଁ ମତ ଦେଇଛନ୍ତି । ୩/୨/୧୯୨୭ରେ ସେ ୟଙ୍ଗଇଣ୍ଡିଆରେ ଲେଖିଥିଲେ, 'ବଙ୍ଗଳା, ବିହାର ବା ଯୁକ୍ତ ପ୍ରଦେଶରେ ଗସ୍ତ କରିବାବେଳେ ମୁଁ ଲକ୍ଷ୍ୟ କରିଛି ଯେ ପର୍ଦ୍ଦାପ୍ରଥା ଅନ୍ୟାନ୍ୟ ପ୍ରଦେଶ ଅପେକ୍ଷା ଏହି ପ୍ରଦେଶଗୁଡିକରେ ଅଧିକ କଡା ଭାବରେ ପ୍ରଚଳିତ । ଥରେ ଦରଭଙ୍ଗାରେ ମୁଁ ଗୋଟିଏ ସଭାରେ ଭାଷଣ ଦେଉଥିଲି । ସଭାରେ କୌଣସି ଗୋଳମାଳ ଓ ଗହଳଚହଳ ନଥାଏ ଏବଂ ବେଶୀ ଲୋକନଥାନ୍ତି । ମୋ ଆଗରେ ପୁରୁଷ ଲୋକ ବସିଥାନ୍ତି ମାତ୍ର ମୋ ପଛରେ ଓ ପର୍ଦ୍ଦାର ଅନ୍ତରାଳରେ ସ୍ତ୍ରୀ ଲୋକ ବସିଥାନ୍ତି । ମାତ୍ର ସ୍ତ୍ରୀ ଲୋକ ଯେ ସଭାକୁ ଆସିଛନ୍ତି ଏକଥା ମୋତେ ନ କହିବା ପର୍ଯ୍ୟନ୍ତ ମୁଁ ଏହା ଜାଣିନଥିଲି । ଗୋଟିଏ ଅନାଥାଶ୍ରମର ଭିତ୍ତିପ୍ରସ୍ତର ବସାଇବା ସମ୍ପର୍କରେ ଏକ ଉତ୍ସବ ହୋଇଥିଲା । ମାତ୍ର ପର୍ଦ୍ଦାର ଅନ୍ତରାଳରେ ଥିବା ମହିଳାମାନଙ୍କୁ କିଛି କହିବା ପାଇଁ ମୋତେ ଅନୁରୋଧ କରାଯାଇଥିଲା । ସେହି ପର୍ଦ୍ଦାର ଅନ୍ତରାଳର ଦୃଶ୍ୟ ମୋ ମନରେ ବିଷାଦ ଜନ୍ମାଇଲା । ସେହି ଅନ୍ତରାଳରେ ବସିଥିବା ସ୍ତ୍ରୀ ଲୋକଙ୍କର ସଂଖ୍ୟା ମୋତେ ଜଣାନଥିଲା । ମୁଁ ଅତିଶୟ ଲଜ୍ଜିତ ହେଲି । ଗୋଟିଏ ବର୍ବର ପ୍ରଥାକୁ ଜାବୁଡି ଧରିଥିବା ହେତୁ ପୁରୁଷ ଜାତି ନାରୀଜାତି ପ୍ରତି ଯେଉଁ ଅନ୍ୟାୟ କରୁଛି ତାହା ମୁଁ ଚିନ୍ତା କରି ବସିଲି । କୃତ୍ରିମ ଅନୁକୂଳ ବାତାବରଣ ସୃଷ୍ଟି କରି ସତୀତ୍ୱର ବିକାଶ କରାଯାଇନପାରେ । ପର୍ଦ୍ଦାରୂପକ ପାଚେରୀ ଘେରାଇ ଏହାକୁ ରକ୍ଷା କରାଯାଇପାରିବ ନାହିଁ । ସେ ପୁନଶ୍ଚ କହିଥିଲେ, 'ଭାରତର ନାରୀ ଜାତିର ମୁକ୍ତ ବିକାଶ ପଥରେ ଆମେ ବାଧା ସୃଷ୍ଟି କରି ଆମେ ମୁକ୍ତ ଓ ସ୍ୱାଧୀନ ଚେତା ପୁରୁଷମାନଙ୍କର ବିକାଶରେ ମଧ୍ୟ ପ୍ରତିବନ୍ଧକ ହୋଇଅଛୁଁ । ଆମର ନାରୀଜାତି ପ୍ରତି ଓ ଅସ୍ପୃଶ୍ୟମାନଙ୍କ ପ୍ରତି ଆମେ ଯେଉଁ ଆଚରଣ କରୁଛୁଁ, ତାହା ହଜାର ଗୁଣ ଶକ୍ତିରେ ଆମ ଉପରେ ପ୍ରତି ଆକ୍ରମଣ କରୁଛି । ଆମର ନିଜର ଦୁର୍ବଳତା, ଅସ୍ଥିରତା, ସଂକୀର୍ଣ୍ଣତା ଓ ଅସହାୟତାର ଏହା ଆଂଶିକ କାରଣ । ତେଣୁ ଚାଲନ୍ତୁ ଗୋଟିଏ ପ୍ରବଳ ଆଘାତରେ ଏହି ପର୍ଦ୍ଦା ପ୍ରଥାକୁ ସମୂଳେ ଉଚ୍ଛେଦ କରିବା ।'

ଗାନ୍ଧିଜୀ ବେଶ୍ୟାବୃତ୍ତିକୁ 'ନୈତିକ କୁଷ୍ଠ' ଭାବରେ ବର୍ଣ୍ଣନା କରିଛନ୍ତି । ଯେଉଁ ପୁରୁଷମାନେ ଏପରି ମହିଳାଙ୍କ ସାନ୍ନିଧ୍ୟ ପାଇଁ

ଯାଆନ୍ତି, ସେମାନେ ମଧ୍ୟ ଏପରି କଳୁଷିତ ବାତାବରଣ ସୃଷ୍ଟି କରୁଥିବା ପାଇଁ ଦାୟୀ । ଗାନ୍ଧିଜୀ ନିଜର ଏ ସମ୍ପର୍କିତ ଅନୁଭୂତି ବର୍ଣ୍ଣନା କରି ଲେଖିଥିଲେ, 'ଯେଉଁ ସ୍ତ୍ରୀ ଲୋକମାନେ ନିଜର ଇଜ୍ଜତ ବିକ୍ରୟ କରି ଜୀବିକା ଅର୍ଜନ କରନ୍ତି, ସେମାନଙ୍କର ସମ୍ପର୍କରେ ଆନ୍ଧ୍ରପ୍ରଦେଶର କୋକନାଡାରେ ମୁଁ ପ୍ରଥମେ ଆସିଥିଲି । କେବଳ ଛଅଜଣଙ୍କ ସଙ୍ଗରେ ଅଳ୍ପ ସମୟ ପାଇଁ ମୋର କଥାବାର୍ତ୍ତା ହୋଇଥିଲା । ବରି ସାଲରେ ଦ୍ୱିତୀୟ ଅବସର ମିଳିଥିଲା । ପୂର୍ବରୁ ସମୟ ସ୍ଥିର କରି, ଶତାଧିକ ସ୍ତ୍ରୀ ମୋତେ ଦେଖା କରିଥିଲେ । ଏହି ହତଭାଗିନୀ ଭଗିନୀମାନଙ୍କୁ ଏହି ଅଧୋଗତିରୁ ସତ୍‌ପଥକୁ ପ୍ରବର୍ତ୍ତାଇ ଆଣିବା ପାଇଁ ଦୁଇଟି ସର୍ତ୍ତ ପୂରଣ କରିବାକୁ ପଡିବ । ଆମେ ପୁରୁଷମାନେ ଆମର କାମ ପ୍ରବୃତ୍ତିକୁ ସଂଯତ କରିବାକୁ ଶିଖିବୁ ଏବଂ ଯେଉଁ ଧନ୍ଦାଦ୍ୱାରା ଏହି ନାରୀମାନେ ସମ୍ମାନଜନକ ଭାବରେ ଜୀବିକା ଅର୍ଜନ କରିପାରିବେ, ସେପରି ଧନ୍ଦା ଯୋଗାଇଦେବୁ ।

ଈଶ୍ୱରଙ୍କ ନାମରେ ଦ୍ୱାହି ଦେଇ ଝିଅମାନଙ୍କୁ ଦେବଦାସୀ ଭାବରେ ବ୍ୟବହାର କରିବାକୁ ସେ କଟୁ ସମାଲୋଚନା କରିଥିଲେ । ଏହି ସମସ୍ତ ସମସ୍ୟାର ସମାଧାନ ପାଇଁ ଗାନ୍ଧିଜୀ ଦୁଇଗୋଟି ମାର୍ଗ ପ୍ରସ୍ତୁତ କରିଥିଲେ । ପ୍ରଥମତଃ ଜନମତ ଜାଗ୍ରତ କରିବା ଏବଂ ଦ୍ୱିତୀୟରେ ଆଇନ୍ ପ୍ରଣୟନ କରିବା । କେବଳ ଆଇନ୍ କରିଦେଲେ ତାହା ବାସ୍ତବ ଭାବେ ପ୍ରୟୋଗ ହୋଇପାରିବ ନାହିଁ ଯଦି ଜନମତ ଜାଗ୍ରତ ନହୁଏ । ତାଙ୍କର ସ୍ପଷ୍ଟ ମତ ଥିଲା ଯେ ଭାରତରେ ନାରୀକୁ ଅର୍ଦ୍ଧାଙ୍ଗିନୀ, ସହଧର୍ମିଣୀ ଭାବରେ ବର୍ଣ୍ଣନା କରାଯାଇ ଯେଉଁ ମର୍ଯ୍ୟାଦା ଦିଆଯାଇଛି, ସେଥିରେ କ୍ରମଶଃ ଅବକ୍ଷୟ ଘଟିଛି ଏବଂ ଏଥିରେ ପରିବର୍ତ୍ତନ କରି ନାରୀର ସ୍ଥାନକୁ ଅଧିକା ମର୍ଯ୍ୟାଦାବନ୍ତ କରିବାକୁ ସେ ଗୁରୁତ୍ୱ ଦେଇଥିଲେ ।

ପୁରୁଷ ଓ ନାରୀ ଉଭୟ ସମାନ ଓ ପରସ୍ପରର ପରିପୂରକ । ସେ ନିଜେ 'ମୁଁ ଯଦି ନାରୀ ଜନ୍ମ ଲଭିଥାଆନ୍ତି' ଶୀର୍ଷକ ଲେଖାରେ ଲେଖିଛନ୍ତି, 'ମୁଁ ଯଦି ନାରୀଜନ୍ମ ଲଭିଥାଆନ୍ତି ତେବେ ନାରୀ ପୁରୁଷମାନଙ୍କର କ୍ରୀଡନକ ହେବାକୁ ଜନ୍ମିଛି ବୋଲି ପୁରୁଷମାନଙ୍କର କୌଣସି ଦାମ୍ଭିକ ଦାବି ବିରୋଧରେ ବିଦ୍ରୋହ କରିଥାଆନ୍ତି । ଛାଏଁ ଛାଏଁ ନାରୀର ହୃଦୟ ସ୍ପର୍ଶ କରିବା ଲକ୍ଷ୍ୟ ଘେନି ମୁଁ ତ ମାନସିକ ସ୍ତରରେ ନାରୀଟିଏ ପାଲଟି ଯାଇଛି । ମୁଁ ମୋ ସ୍ତ୍ରୀଙ୍କୁ ନୂତନ ଦୃଷ୍ଟିରେ ଦେଖିବାର ସିଦ୍ଧାନ୍ତ ନେବା ପର୍ଯ୍ୟନ୍ତ ତାଙ୍କର ହୃଦୟ ଜୟ କରି ପାରିନଥିଲି, ସେତେବେଳେ ସ୍ୱାମୀତ୍ୱର ତଥାକଥିତ ସବୁ ଅଧିକାର ମୁଁ ପରିହାର କରି ତାଙ୍କୁ ପ୍ରତ୍ୟାର୍ପଣ କରିଦେଲି ।'

ଗତ ୨୦୦୧ ମସିହାକୁ ଭାରତ ସରକାର ମହିଳା ସଶକ୍ତିକରଣର ବର୍ଷଭାବେ ଘୋଷଣା କରିଥିଲେ । ସଶକ୍ତିକରଣର ଅର୍ଥ ହେଉଛି କ୍ଷମତା ଗଠନ ପ୍ରଣାଳୀରେ ପରିବର୍ତ୍ତନ କରିବା ଏବଂ ରାଜନୈତିକ ଭାବେ ଯେଉଁମାନେ ଦୁର୍ବଳ ସେମାନଙ୍କ ହାତରେ କ୍ଷମତା ପ୍ରଦାନ କରିବା । ୭୩ତମ ସମ୍ବିଧାନ ସଂଶୋଧନ ହୋଇ ମହିଳାମାନଙ୍କ ତୃଣମୂଳ ପଞ୍ଚାୟତ ସ୍ତରରୁ କ୍ଷମତା ଦିଆଯିବା ପାଇଁ ବ୍ୟବସ୍ଥା ହୋଇଛି । ଏହା ଏକ ବଳିଷ୍ଠ ପଦକ୍ଷେପ । ପୁରୁଷ ଓ ନାରୀ ମଧ୍ୟରେ ସମାନତା ପାଇଁ ଅର୍ଥନୈତିକ ସ୍ୱାଧୀନତାର ଆବଶ୍ୟକତା ବେଶୀ । ଗାନ୍ଧୀ ଚାହିଁଥିଲେ ମହିଳାମାନେ ଅର୍ଥନୈତିକ ଭାବେ ପରାଧୀନ ନହୋଇ ସ୍ୱାଧୀନ ହୁଅନ୍ତୁ ଏବଂ ସେମାନେ ସ୍ୱାବଲମ୍ବନଶୀଳ ହୁଅନ୍ତୁ । ମହିଳାମାନେ ସ୍ୱାଧୀନ ଭାବରେ କିଛି କାର୍ଯ୍ୟ କରନ୍ତୁ । ତେଣୁ ସେ ପୁରୁଷମାନଙ୍କ ଆୟ ଉପରେ ମହିଳାମାନଙ୍କର ସମ୍ପୂର୍ଣ୍ଣ ଅଧିକାର ରହୁ, ଏହା ସପକ୍ଷରେ ମତ ଦେଇଛନ୍ତି । ଏହାବ୍ୟତୀତ ଗାନ୍ଧିଜୀ ପୁରୁଷ ଓ ମହିଳାମାନଙ୍କ ନିମିତ୍ତ ସମାନ ମଜୁରୀ ହେବା ଉଚିତ ବୋଲି କହିଥିଲେ । ମହିଳାମାନଙ୍କୁ ସଶକ୍ତିକରଣ କରିବାକୁ ହେଲେ ସଚେତନତା ଜାଗ୍ରତ କରିବା ଉଚିତ । ଏଥିପାଇଁ ଶିକ୍ଷା ପ୍ରଥମ ଆବଶ୍ୟକତା । ଗାନ୍ଧିଜୀ ଶିକ୍ଷା ବ୍ୟବସ୍ଥାରେ ଥିବା ଦୋଷତ୍ରୁଟିକୁ ଲକ୍ଷ୍ୟ କରିଥିଲେ ଯାହା ଏଯାବତ୍ ପ୍ରଚଳିତ ରହିଛି । ପ୍ରଥମତଃ ଶିକ୍ଷା ବ୍ୟବସ୍ଥାରେ ଲିଙ୍ଗଭେଦଜନିତ ସମସ୍ୟା ଉପରେ ଗୁରୁତ୍ୱ ଦିଆଯାଏ ନାହିଁ । ଗାନ୍ଧିଜୀଙ୍କ ଭାଷାରେ, 'ପୁରୁଷ ଓ ନାରୀ ମଧ୍ୟରେ ଥିବା ସମ୍ପର୍କ ସମ୍ବନ୍ଧରେ ଚିନ୍ତା କରାଯାଇନି କିମ୍ବା ଭାରତୀୟ ସମାଜରେ ମହିଳାମାନଙ୍କର ସ୍ଥାନ କେଉଁଠି ତାହା ନିର୍ଦ୍ଧାରିତ ହୋଇନି ।' ଲିଙ୍ଗ ସମାନତା ଉପରେ ବିଦ୍ୟାଳୟର ବିଭିନ୍ନ କାର୍ଯ୍ୟକ୍ରମରେ ପ୍ରୋତ୍ସାହନ ମଧ୍ୟ ଦିଆଯାଏନି ।

ବର୍ତ୍ତମାନ ଶିକ୍ଷା ବ୍ୟବସ୍ଥାରେ ଗ୍ରାମ୍ୟଜୀବନ ଉପରେ ପ୍ରାଧାନ୍ୟ ନାହିଁ । ଫଳରେ ଶିକ୍ଷିତ ଶ୍ରେଣୀ ଗ୍ରାମ୍ୟଜୀବନର କଠୋର ବାସ୍ତବତା ସମ୍ପର୍କରେ ସଚେତନ ନୁହଁନ୍ତି । ତୃତୀୟତଃ ବର୍ତ୍ତମାନର ଶିକ୍ଷା ବ୍ୟବସ୍ଥା ଶିକ୍ଷିତ ଓ ଅଶିକ୍ଷିତମାନଙ୍କ ମଧ୍ୟରେ ବ୍ୟବଧାନ ବଢାଇବାରେ ଲାଗିଛି । ଶିକ୍ଷିତ ମହିଳାମାନଙ୍କର ଗାଁର ଅଶିକ୍ଷିତ ମହିଳାମାନଙ୍କ ସହିତ ସମ୍ପର୍କ ନାହିଁ । ଯେଉଁ ମହିଳା ଆନ୍ଦୋଳନ ହେଉଛି ତାହା ବିଶେଷ ଭାବେ ସହରୀକେନ୍ଦ୍ରିକ ।

ଗାନ୍ଧିଜୀଙ୍କ ଶିକ୍ଷା ବ୍ୟବସ୍ଥାରେ ଥିଲା କେବଳ ଲିଙ୍ଗଗତ ସାମ୍ୟ ନୁହେଁ ବରଂ ପ୍ରଥମତଃ ପୁରୁଷମାନଙ୍କର ମହିଳାମାନଙ୍କ ପ୍ରତି ଆଚରଣରେ ପରିବର୍ତ୍ତନ । ପୁରୁଷମାନଙ୍କ ମଧ୍ୟରେ ବସା

ବାନ୍ଧିଥିବା ଧାରଣାର ପରିବର୍ତ୍ତନ । ଶିକ୍ଷିତ ମହିଳା ନିଜକୁ ଦୁର୍ବଳ ବୋଲି ଭାବିବ ନାହିଁ । ମହିଳା କେବଳ ସ୍ୱାକ୍ଷର ହେଲେ ଚଳିବ ନାହିଁ । ଶିକ୍ଷା ପାଇବା ଫଳରେ ଆତ୍ମସମ୍ମାନ ବଢିବ । ଫଳରେ ଶିକ୍ଷା ମହିଳାକୁ ମାନସିକ ଭାବରେ ସଶକ୍ତି କରିପାରିବ । ଏହାବ୍ୟତୀତ ଶିକ୍ଷା ବ୍ୟବସ୍ଥା ମଧ୍ୟରେ ଶିଶୁମାନଙ୍କର ଲାଳନପାଳନ ଏବଂ ଗୃହ ପରିଚାଳନା ରଖି ମହିଳାମାନଙ୍କୁ ସେ ସମ୍ପର୍କରେ ତାଲିମ ଦେବାକୁ ହେବ ।

ଦ୍ୱିତୀୟ ପଦକ୍ଷେପ ହେଉଛି ମହିଳାମାନଙ୍କ ମଧ୍ୟରେ ସଚେତନତା ଜାଗ୍ରତ କରିବା ଯେପରି ସେମାନେ ସ୍ୱାଧୀନଭାବେ ଚିନ୍ତା କରିପାରିବେ । ଗାନ୍ଧିଜୀ କହିଲେ, 'ବର୍ତ୍ତମାନ ଖୁବ୍ କମ୍ ସ୍ତ୍ରୀ ଲୋକ ରାଜନୀତିରେ ଅଂଶଗ୍ରହଣ କରୁଛନ୍ତି ଏବଂ ପ୍ରାୟ ଅଧିକାଂଶଙ୍କର ସ୍ୱାଧୀନ ବିଚାର ନାହିଁ । ସେମାନେ ସେମାନଙ୍କର ପିତାମାତା ବା ସ୍ୱାମୀ ଯାହା ନିର୍ଦ୍ଦେଶ ଦେଲେ, ତାହା ଦ୍ୱାରା ପରିଚାଳିତ ହୁଅନ୍ତି ।' ଗାନ୍ଧିଜୀଙ୍କର ଏହି ଉକ୍ତି ଏବେ ମଧ୍ୟ ସତ୍ୟ । ଅନେକ ମହିଳା ସରପଞ୍ଚ ସେମାନଙ୍କର ପରିବାରର ନିର୍ଦ୍ଦେଶରେ ରାଜନୀତି ମଧ୍ୟକୁ ପ୍ରବେଶ କରିଛନ୍ତି ଏବଂ ଯେଉଁଠି ଦସ୍ତଖତ କରିବାକୁ କୁହାଯାଉଛି, ସେଠାରେ ଦସ୍ତଖତ ଦେଉଛନ୍ତି । ଏଥିରୁ ପ୍ରଚ୍ଛନ୍ନ ଭାବେ ପୁରୁଷ ପ୍ରାଧାନ୍ୟତା ବୁଝାଯାଇଛି । ଆତ୍ମ-ସମ୍ମାନ ଓ ଆତ୍ମ-ମର୍ଯ୍ୟାଦା ହୋଇ ମହିଳାମାନେ ନେତୃତ୍ୱକୁ ଆସିବା ଉଚିତ୍ ।

ତୃତୀୟ ପଦକ୍ଷେପ ଥିଲା ଗାନ୍ଧିଜୀଙ୍କର ମହିଳାମାନଙ୍କୁ ସଙ୍ଗଠିତ କରିବା । ମହିଳାମାନେ ହିଁ ମହିଳାମାନଙ୍କ ଭିତରେ କାର୍ଯ୍ୟ କରିବେ । ତେଣୁ ସେ ଚାହୁଁଥିଲେ ମହିଳାମାନେ ନିଜକୁ ନିଜେ ସାହାଯ୍ୟ କରନ୍ତୁ । ସଙ୍ଗଠିତ ଭାବରେ କାର୍ଯ୍ୟ କରିବା ପାଇଁ ମହିଳାମାନେ ନିଜ ଭିତରେ ଉତ୍ତମ ସାମର୍ଥ୍ୟ ସୃଷ୍ଟି କରନ୍ତୁ । ସଙ୍ଗଠିତ ଭାବରେ ପ୍ରଚେଷ୍ଟା କଲେ, ସେମାନେ ସ୍ୱାଧୀନ ହୋଇପାରିବେ । ଯାହାଫଳରେ ମହିଳା ନେତୃତ୍ୱର ବିକାଶ ହେବ । ମହିଳାମାନଙ୍କର ସଂଗଠନ ଉପରେ ଗୁରୁତ୍ୱଦେଇ ଗାନ୍ଧିଜୀ ଲେଖିଥିଲେ, 'ମହିଳାମାନଙ୍କର ସେବା କେବଳ ମହିଳାମାନେ ହିଁ କହିପାରିବେ । ମହିଳାମାନେ ଏକାଠି ରହିବାକୁ, ଏକାଠି କାମ କରିବାକୁ, ପରସ୍ପରର ସ୍ୱଭାବକୁ ସହ୍ୟ କରିବାକୁ, ସ୍ୱାଧୀନ ଭାବରେ ଚିନ୍ତା କରିବାକୁ ଏବଂ ଏହି ଚିନ୍ତା ସମୂହକୁ ସାହସ ଓ ସଂକଳ୍ପର ସହିତ କାର୍ଯ୍ୟରେ ପରିଣତ କରିବାକୁ ଓ କଠିନତାକୁ ସହ୍ୟ କରିବାକୁ ଶିଖିବେ ।'

ଏତଦ୍‌ଭିନ୍ନ ଗାନ୍ଧିଜୀ ଚାହୁଁଥିଲେ ଗ୍ରାମ୍ୟ ଜୀବନକୁ ପୁନର୍ଗଠନ କରି ଗ୍ରାମ୍ୟ ମହିଳାମାନଙ୍କର ଅବସ୍ଥାରେ ଉନ୍ନତି କରିବାକୁ କାରଣ ଗ୍ରାମ୍ୟର ଉନ୍ନତି ନହେଲେ ରାଷ୍ଟ୍ରର ଉନ୍ନତି ସମ୍ଭବ ନୁହେଁ । ସେ ଚାହୁଁଥିଲେ ମହିଳାମାନେ ରାଜନୀତିରେ ସକ୍ରିୟ ଅଂଶଗ୍ରହଣ କରନ୍ତୁ । କେବଳ ମହିଳା ବୋଲି ବିଚାର କରି ସେମାନଙ୍କୁ ସଭ୍ୟପଦ ଦିଆନଯାଉ । ସେମାନେ ଅନ୍ୟ ଉପରେ ନିର୍ଭରଶୀଳ ହୋଇ ରାଜନୀତିକୁ ଆସିବା ଠିକ୍ ନୁହେଁ, ସେମାନେ ନ୍ୟାୟ ପାଇବା ପାଇଁ ରାଜନୀତିରେ ପ୍ରବେଶ କରିବା ଦରକାର । ଗାନ୍ଧିଜୀଙ୍କର ରାଜନୈତିକ ଭାବେ ମହିଳାମାନଙ୍କର ଉନ୍ନତି ସେମାନଙ୍କର ରାଜନୀତିରେ ପ୍ରବେଶଠାରୁ ଭିନ୍ନ ଅର୍ଥ ରଖେ । ସେ ତେଣୁ କହୁଥିଲେ, 'ସାଧାରଣ ଜୀବନରେ ପ୍ରବେଶ କରିବା ଅର୍ଥ ହେଉଛି ତୁମର ଦରିଦ୍ର ଭଉଣୀମାନଙ୍କର ସେବା କରିବା ।' କାରଣ ଗରିବ ଲୋକମାନଙ୍କର ସେବା କରିବା ହେଉଛି ରାଜନୀତିର ମାଧ୍ୟମ । କାରଣ ଗାନ୍ଧିଜୀ ରାଜନୀତିରେ ବିଶ୍ୱାସ କରୁ ନଥିଲେ । ସେ ଥିଲେ ଗଠନମୂଳକ କାର୍ଯ୍ୟ ଓ ମନୁଷ୍ୟର ସେବା କରିବାର ପ୍ରବକ୍ତା । ବର୍ତ୍ତମାନ ଗଠନମୂଳକ କାର୍ଯ୍ୟକୁ ଲୋକମାନେ ଭୁଲିଗଲେଣି । ପଞ୍ଚାୟତିରାଜ ଅନୁଷ୍ଠାନ ଫଳରେ ଗ୍ରାମ୍ୟଜୀବନ ବର୍ତ୍ତମାନ ଅତ୍ୟଧିକ ରାଜନୀତିକରଣ ହୋଇଗଲାଣି । କିନ୍ତୁ ଏହା ଗ୍ରାମାଞ୍ଚଳର ମହିଳା ଓ ଦୁର୍ବଳ ଶ୍ରେଣୀକୁ ଯେଉଁ ସୁବିଧା ଦେବାକଥା ତାହା ଦେଇପାରିନି ।

ଯେଉଁ ମହିଳା ନେତୃତ୍ୱମାନେ ସ୍ଥାନ ସଂରକ୍ଷଣ ଫଳରେ ଆସୁଛନ୍ତି, ସେମାନେ ସେମାନଙ୍କର ଭୂମିକା ସମ୍ପର୍କରେ ଅଜ୍ଞ । ତେଣୁ ଅନେକେ ମହିଳାମାନଙ୍କ ପାଇଁ କି ପ୍ରକାର କାର୍ଯ୍ୟକ୍ରମ ନେବେ ତାହାର ସୂତ୍ରପାତ କରିପାରୁନାହାନ୍ତି । ଫଳରେ ଗ୍ରାମାଞ୍ଚଳର ମହିଳାମାନେ ସେଇପରି ବନ୍ଧ ହୋଇଯାଇଛନ୍ତି । ତେଣୁ ଗାନ୍ଧିଜୀ କହୁଥିଲେ, 'ଯେଉଁ ମହିଳାମାନେ ଲୋକ ପ୍ରତିନିଧି ସଭାକୁ ଯିବେ, ସେମାନେ କ'ଣ କରିବେ, ସେସମ୍ପର୍କରେ ପୂର୍ବରୁ ଧାରଣା ରହିବା ଉଚିତ୍ ।' ସେମାନଙ୍କ ନିକଟରେ ସ୍ୱଷ୍ଟ ଚିତ୍ର ନଥିଲେ ସେମାନେ କୃତକାର୍ଯ୍ୟ ହୋଇପାରିବେ ନାହିଁ । ମହିଳା ନେତୃତ୍ୱଙ୍କର ପଞ୍ଚାୟତ ପରିଚାଳନା ସମ୍ପର୍କରେ ସ୍ୱଷ୍ଟ ଧାରଣା ରହିଥିବା ଆବଶ୍ୟକ ଏବଂ ଅନ୍ୟାନ୍ୟ ମହିଳାମାନଙ୍କୁ ସେମାନେ ଯେପରି ସଠିକ୍ ବାଟ ଦେଖାଇପାରନ୍ତି । ମହିଳା ସଶକ୍ତିକରଣର ଲକ୍ଷ୍ୟ ପୂରଣ ପାଇଁ, ଦକ୍ଷ ମହିଳା ନେତୃତ୍ୱ ବିକଶିତ ହେବା ଉଚିତ୍, ଯେଉଁମାନଙ୍କର ଆତ୍ମ-ବିଶ୍ୱାସ, ଆତ୍ମ-ସ୍ୱୀକୃତି ଏବଂ ଆତ୍ମ-ପରିଚିତ ଗୁଣ ନିଜ ଭିତରେ ଥିବ । ଗାନ୍ଧିଜୀ ଏହିପରି ମହିଳା ନେତୃତ୍ୱର ବିକାଶ ହେବା ପାଇଁ ଚେଷ୍ଟା କରିଥିଲେ ।

ଏଥିରୁ ସ୍ୱଷ୍ଟ ସୂଚୀତ ହୁଏ ଯେ ମହିଳାମାନଙ୍କର ମୁକ୍ତି ଗାନ୍ଧିଜୀଙ୍କ ନିକଟରେ ଥିଲା ଏକ ସୁସଂହତ ବିଚାର, ଯାହା ମାନବିକ

ଜୀବନର ସମସ୍ତ କ୍ଷେତ୍ର ଆର୍ଥିକ, ମାନସିକ, ସାମାଜିକ ଓ ରାଜନୀତିକୁ ଆବୋରିଛି । ସେ ମହିଳାମାନଙ୍କର ସାମାଜିକ କ୍ଷେତ୍ର ଶାନ୍ତିପୂର୍ଣ୍ଣ ଭାବରେ ପରିବର୍ତ୍ତନ ହେବା ଉପରେ ଗୁରୁତ୍ୱ ଦେଇଥିଲେ । ତେଣୁ ଶିକ୍ଷା ପୁରୁଷମାନଙ୍କ ମନରେ ମହିଳାମାନଙ୍କ ପ୍ରତି ଲିଙ୍ଗ ସମାନତା ରଖିବା ଉପରେ ଗୁରୁତ୍ୱ ଆରୋପ କରିବା ଥିଲା ଗାନ୍ଧିଜୀଙ୍କର ମତ ।

ମହିଳାମାନେ ପରିବାର ମଧ୍ୟରେ ସବୁବେଳେ ରୋଷେଇ ଶାଳରେ ବାନ୍ଧିହୋଇ ରହିବା କିମ୍ବା ସନ୍ତାନ ପାଳନରେ ସବୁ ସମୟ ନକଟାଇବା ଉପରେ ତାଙ୍କର ଥିଲା ମତ । ସେ ଚାହୁଁଥିଲେ ମହିଳାମାନେ ସାମୟିକ କାର୍ଯ୍ୟରେ ନିଜକୁ ଲଗାନ୍ତୁ, ଯାହାଦ୍ୱାରା ପରିବାରର ଆୟବୃଦ୍ଧିରେ ସାହାଯ୍ୟକାରୀ ହେବ । ସୂତାକଟା ସେହିପରି ଏକ କାର୍ଯ୍ୟ, ଯାହାକୁ ସେମାନେ ନେଇପାରିବେ । 'ସୂତାକଟା'କୁ ସେ ବିଧବା ମହିଳାମାନଙ୍କର 'ପ୍ରେମାସ୍ପଦ ସହଯୋଗୀ' ବୋଲି ଉଲ୍ଲେଖ କରିଛନ୍ତି । ଏହାଦ୍ୱାରା ସେମାନଙ୍କର ଗୁଣର ସୁରକ୍ଷା ହୋଇପାରିବ । ଘରେ ବସି ସେମାନେ ସୂତାକଟା କାମ କଲେ ଏହା ଗଠନମୂଳକ କାର୍ଯ୍ୟ ହେବା ସହିତ ଆର୍ଥିକ ଦୃଷ୍ଟିରୁ ମଧ୍ୟ ଲାଭ ହେବ ।

ମହିଳାମାନେ ସାମାଜିକ କାର୍ଯ୍ୟ ଯଥା– ଅସ୍ପୃଶ୍ୟତା ନିବାରଣ, ଖଦି, ସାମ୍ପ୍ରଦାୟିକ ସମ୍ପ୍ରୀତି, ପ୍ରୌଢ଼ ଶିକ୍ଷା, ସ୍ୱାସ୍ଥ୍ୟ ସମ୍ବନ୍ଧୀୟ ଶିକ୍ଷା, ଆର୍ଥିକ ସମାନତା, କୃଷକମାନଙ୍କର ଉନ୍ନତି ସମ୍ପର୍କରେ କାର୍ଯ୍ୟକ୍ରମ ଗ୍ରହଣ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଏପରିକି ସେମାନେ ଗ୍ରାମଶିଳ୍ପରେ ନିଜକୁ ସାମିଲ କରନ୍ତୁ ଯାହା ଅଳ୍ପଖର୍ଚ୍ଚରେ ନିଯୁକ୍ତିର ସୁଯୋଗ ଦେବ ।

ଗାନ୍ଧୀ ଚାହୁଁଥିଲେ ମହିଳାମାନେ ସ୍ୱାଧୀନତା ସଂଗ୍ରାମରେ ଅଂଶଗ୍ରହଣ କରନ୍ତୁ ଏବଂ ତାଙ୍କ ଆହ୍ୱାନରେ ସେମାନେ ବିଦେଶୀ ବସ୍ତ୍ର ବର୍ଜନ, ମଦ ଦୋକାନ ଆଗରେ ପିକେଟିଂ ଇତ୍ୟାଦି କରିବା ସହିତ ଅନେକ ଜେଲ ବରଣ କରିଥିଲେ । ସେ ଅନୁଭବ କରିଥିଲେ ଯେ ମହିଳାମାନଙ୍କର ବିନା ସହଯୋଗରେ ଜାତୀୟ ଆନ୍ଦୋଳନ ସଫଳ ହେବନାହିଁ । ସେ ସେମାନଙ୍କୁ ଜାତୀୟ ଆନ୍ଦୋଳନର ସ୍ରୋତକୁ ଆଣି ସାମାଜିକ ଅସାମାନତାକୁ ଦୂର କରିବାର ମାର୍ଗ ପ୍ରସ୍ତୁତ କରିଥିଲେ । ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ହଜାର ହଜାର ମହିଳା ଜେଲ୍ ବରଣ କରିବା ସହିତ ଅନେକ କଷ୍ଟର ସମ୍ମୁଖୀନ ହୋଇଥିଲେ । ଏପରିକି ସେ କହିଥିଲେ ଯଦି ଇଉରୋପରେ ଅହିଂସା ମନ୍ତ୍ରକୁ ଗ୍ରହଣ କରାଯାଏ, ତେବେ ତାହା ମହିଳାମାନଙ୍କ ମାଧ୍ୟମରେ ହିଁ ହୋଇପାରିବ । ମହିଳା ସଶକ୍ତିକରଣ କରିବାରେ ଗାନ୍ଧିଜୀ ଥିଲେ ଆଧୁନିକ ଏବଂ ଭାରତୀୟ ସଂସ୍କୃତି ଓ ପରମ୍ପରା ସହିତ ଆଧୁନିକତାକୁ ଯୋଡିବାକୁ ଚେଷ୍ଟା କରିଥିଲେ । ମହିଳାମାନଙ୍କ ପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀର ବିଶେଷତ୍ୱ ଏହି ଯେ, ସେ ସେମାନଙ୍କର ବ୍ୟକ୍ତିଗତ ସମ୍ମାନ ସହିତ ପରିବାରରେ ଓ ସମାଜରେ ସ୍ୱତନ୍ତ୍ରତା ମିଳୁ ତାହା ଚାହୁଁଥିଲେ ।

'ଗାନ୍ଧିଜୀ ଓ ନାରୀ ସମାଜ' ଏକ ଲେଖାରେ ବିଶିଷ୍ଟ ଗାନ୍ଧୀବାଦୀ ନେତ୍ରୀ ଅନ୍ନପୂର୍ଣ୍ଣା ଦାସ ଲେଖିଥିଲେ, 'କୁଡିଆରେ ରହୁଥିବା ସେହି ଫକୀର ଭାରତୀୟ ନାରୀର ଗତାନୁଗତିକ ଜୀବନଧାରାକୁ ସମ୍ପୂର୍ଣ୍ଣ ରୂପେ ଓଲଟପାଲଟ କରି ଦେଇଥିଲେ । ତାଙ୍କ ବାଣୀରେ କି ମୋହିନୀ ମାୟା ଥିଲା କେଜାଣି, ଜଣେ ଅଧେ ନୁହେଁ, ବହୁ ସଂଖ୍ୟାରେ ନାରୀ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ଯେପରି କାମସବୁ କଲେ, ତାକୁ ଦେଖି କେହି କଳ୍ପନାରେ ସୁଦ୍ଧା ବିଶ୍ୱାସ କରିପାରିବ ନାହିଁ ଯେ, କୋଣ ଭୁଆଷୁଣୀମାନଙ୍କ ଦ୍ୱାରା ଏପରି କାମ ହୋଇପାରେ । ସେ ଭାରତର ନାରୀକୁ ରାଣୀହଂସ ପୁରରୁ ରାଜପଥକୁ, ପର୍ଦ୍ଦାଘେରା ଅନ୍ଦର ମହଲରୁ ବିଚ୍ ଦାଣ୍ଡକୁ, ଗ୍ରାର୍ହସ୍ଥ୍ୟ ଜୀବନର କେନ୍ଦ୍ରବିନ୍ଦୁରୁ ସ୍ୱାଧୀନତା ସଂଗ୍ରାମର ଖୋଲାପଡିଆକୁ, ଓଢଣା ଭିତରର ଚୁ ଚୁ ଗୁଞ୍ଜରଣରୁ ଜନାକୀର୍ଣ୍ଣ ସଭାମଞ୍ଚର ଅଗ୍ନିବର୍ଷୀ ବକ୍ତାର ସ୍ଥାନକୁ ଟାଣି ଆଣିଥିଲେ । ପର୍ଦ୍ଦା ସେପଟର ନାରୀରୂପୀ ଅଦୃଶ୍ୟ ନିର୍ଦ୍ଦେଶକକୁ ଏହି ଅହିଂସା ସଂଗ୍ରାମରେ ନେତୃତ୍ୱ ନେବାକୁ କାଢି ଆଣିଥିଲେ । ସ୍ୱାଧୀନତା ପାଇଁ ଜାତି ଧର୍ମକୁ ଜଳାଞ୍ଜଳି ଦେଇ ଭାରତର ସବୁ ପ୍ରଦେଶରୁ ଅସଂଖ୍ୟ ଶିକ୍ଷିତା, ଅଶିକ୍ଷିତା, ଅର୍ଦ୍ଧଶିକ୍ଷିତା ନାରୀ ଏଥିରେ ଝାସ ଦେଇଥିଲେ । ସେମାନେ ନିଜ ପାରିବାରିକ ଜୀବନର ଶାନ୍ତି, ସୁଖ, ସୁରକ୍ଷା ମାନ ମର୍ଯ୍ୟାଦାକୁ ତୁଚ୍ଛ କରି ଦେଇଥିଲେ । ଚୁଲି ଚକି ପାଖରୁ ଉଠିଆସି ସେମାନେ ଖଡିକା କଲଛୁରୀ ବେକରେ ହାତରେ ତ୍ରିରଙ୍ଗା ପତାକା ଓ ଚରଖା ଧରିଲେ । ଧନୀ ଗରିବ ନିର୍ବିଶେଷରେ ସଧବା, ବିଧବା, ପରିତ୍ୟକ୍ତା ଓ କୁମାରୀମାନେ ଏଇ ମହା ସଂଗ୍ରାମର ପ୍ରବାହକୁ କୁଦି ପଡିଥିଲେ ଭୂତ ଓ ଭବିଷ୍ୟତକୁ ଭୁଲିକରି । ତାଙ୍କ ଆଗରେ ଥିଲା କେବଳ ଉପସ୍ଥିତ ବର୍ତ୍ତମାନର ଉନ୍ମାଦକାରୀ ଆହ୍ୱାନ, ଲକ୍ଷ୍ୟ ସିଦ୍ଧି ବା ନିର୍ଯାତନା, କର ବା ମର । ମୃତ୍ୟୁଦଣ୍ଡ ବା କାରାଦଣ୍ଡ ଯାହାକୁ ଯାହା ମିଳିବ ବ୍ରିଟିଶ୍ ସରକାରଙ୍କ ବିଚାରରେ ।'

ଗାନ୍ଧିଜୀ ନାରୀମାନଙ୍କର ଶକ୍ତିର ଭଣ୍ଡାରକୁ ତାଙ୍କରି ହାତରେ ଉନ୍ମୋଚନ କରାଇଥିଲେ । ତାଙ୍କ ବିଚାର ତଥା ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ କେତେଜଣ ବିଦେଶୀ ମହିଳା ମଧ୍ୟ

ତାଙ୍କ ସହିତ ଯୋଗ ଦେଇଥିଲେ । ଗାନ୍ଧୀଯୁଗର ପୂର୍ବର ନାରୀ କ'ଣ ଥିଲା, ତାଙ୍କ ତେଜସ୍ୱିତାର ସ୍ପର୍ଶରେ ସେ କିପରି ସୂର୍ଯ୍ୟକାନ୍ତ ମଣିପରି ଝଟକି ଉଠିଥିଲା, ତାହା ସେସମୟର ତଥା ବର୍ତ୍ତମାନ ସମୟର ନାରୀ ପ୍ରମାଣ କରି ଦେଇଛନ୍ତି । ସମାଜରେ ତାଙ୍କର ମୂଲ୍ୟବୋଧ ଗାନ୍ଧିଜୀ ବଦଳାଇ ଦେଇଥିଲେ । ଢେଙ୍କୀଶାଳରୁ ଢେଙ୍କାନାଳ ଯାଏ, ଗୃହନୀତିରୁ ରାଜନୀତି ଯାଏ, ଗ୍ରାମସଂଘରୁ ଜାତିସଂଘ ଯାଏ ସବୁଠାରେ ଆଜି ନାରୀର ନିପୁଣ ହାତର ଚିହ୍ନ ।' ରାଜକୁମାରୀ ଅମୃତା କାଉର ଗାନ୍ଧୀଙ୍କର ବ୍ୟକ୍ତିତ୍ୱ ସମ୍ପର୍କରେ ଲେଖିବା ସମୟରେ ଲେଖିଛନ୍ତି, 'ଆମେ ତାଙ୍କ ଭିତରେ କେବଳ ଜଣେ ବାପୁ-ଜ୍ଞାନୀ ପିତାଙ୍କୁ ଦେଖୁନଥିଲୁ । କିନ୍ତୁ ଯାହା ସବୁଠାରୁ ବେଶୀ ମୂଲ୍ୟବାନ ଜଣେ ମା', ଯାହାଙ୍କର ସର୍ବବ୍ୟାପକତା ଓ ବୁଝାମଣାର ପ୍ରେମ ଆଗରେ ସବୁକିଛି ଭୟ ଓ ସଂକୋଚନ ଦୂର ହୋଇଯାଏ ।

'ନାରୀମାନେ ହିଁ ଆତ୍ମ-ପୀଡନରୁ ଜାତଶକ୍ତିର ମୂର୍ତ୍ତିମନ୍ତ ରୂପ' ଗାନ୍ଧିଜୀ ତାହା କେବଳ କହିନାହାନ୍ତି, ପ୍ରମାଣ କରିଦେଇ ଯାଇଛନ୍ତି ।

ଗଜପତି ନଗର
ଭୁବନେଶ୍ୱର-୭୫୧୦୦୫

# କରୁଣାମୟୀ

**ଚିତ୍ତରଂଜନ ବେହେରା**



କରୁଣାମୟୀ ଜନନୀ ଗୋ
ପାର୍ବଣେ ପର୍ବତ ଶିଖେ
ବସିଅଛୁ କରଯୋଡ଼ି
ଶତମୁଖ ଶିରି ଆଜି
ଦିଶେ ଜକ ଜକ ।
କାଶତଣ୍ଡୀ କବରୀରେ
ଶରତର ଜ୍ୟୋତ୍ସ୍ନାବାରି
ଢ଼ାଳି ଦିଏ ଶୀତଳ ଲହରୀ
ପବନ ତ ଗାଏ ଗୀତ
ମେଘର ଚାଦର ଢ଼ାଙ୍କି ।
ଆଖି ଆଗେ ନାଚିଯାଏ
ନିରିମାଖି ନିରାଜନା
ମାଗୁଛି ମେଲାଣି
କିଏ ଗୋ ଜନନୀ ଏଠି
ଭିକ୍ଷା କରେ ଭୋଦୁଅ ଭସାଣି ।
ତୁ ଗୋ ଜନନୀ କରୁଣାମୟୀ
କରୁଣାର ବାରି ଢ଼ାଳି
ଆସୁ ଅବତରି
ଆଶିଷ ଦେଉ ଯେ ଢ଼ାଳି
ଧରାରୁ ଧୃତ ନିପାତି ।
ଆଜି ଗୋ ପାର୍ବଣ ତିଥେ
ତନୁ ମନ ଯାଏ ଗୋ ବିଗଳି
ଜୟ ମାତା ଦୁର୍ଗତିନାଶିନୀ
ଦିଅ ଗୋ ଆଶିଷ ଢ଼ାଳି
ଧରା ପୃଷ୍ଟେ ଅବତରି
କରୁଣାର ବାରି
ଧୋଇ ଯାଉ ପାପତାପ କଳଙ୍କର ଲେପ
କଳାଧନ ଦୁର୍ନୀତିର ଦାଉ
ଦବି ଯାଉ ଦାନବର ଦେଶ
ପୂରି ଉଠୁ ମା ଗୋ ଧରାଧାମେ
ଶାନ୍ତି, ମୈତ୍ରୀ, ପ୍ରୀତିର ପ୍ରଲେପ
ପାର୍ବଣ ତ ହେଉ ଶତମୁଖ ।



ବି/୨୭, ରସୁଲଗଡ଼ ଶିକ୍ଷାଞ୍ଚଳ,
ଭୁବନେଶ୍ୱର-୧୦

# ଗାନ୍ଧିଜୀ : ଅସାଧାରଣ ବ୍ୟକ୍ତିତ୍ୱ

**ବିନ୍ଦୁ ବଳୟ ଦାଶ**

ସେ ପୃଥିବୀର ଜଣେ ସାଧାରଣ ମଣିଷ । ତାଙ୍କର ପୋଷାକ କହିଲେ ଖଣ୍ଡେ ଆଣ୍ଠୁ ଲୁଚୁ ନଥିବା ଅଣଓସାରିଆ ଖଦୀ । ଆହାର କହିଲେ ଛେଳି ଦୁଧ, ଆଉ କିଛି ପ୍ରାକୃତିକ ଖାଦ୍ୟ । ପତଳା ଶରୀର । ଓଜନ ପ୍ରାୟ ଶହେ ପାଉଣ୍ଡରୁ କମ୍ । ହେଲେ ଏଇ ସାଧାରଣ ମଣିଷ ଜଣଙ୍କ ଯେତେବେଳେ ଉଷନ୍ତିନା- ସେତେବେଳେ ସାରା ଦୁନିଆ ଦୋହଲି ଉଠେ । ସବୁ ଦେଶର ବାୟୁମଣ୍ଡଳରେ ବତାସ ବହେ । ସବୁ ଦେଶର ଖ୍ୟାତନାମା ଖବର କାଗଜରେ ମୁଖ୍ୟ ସମ୍ବାଦ ହୁଏ । ସେହି ମଣିଷ... ଆଉ କେହି ନୁହଁନ୍ତି... ଆମ ଜାତିର ଜନକ ମହାମାନବ ମହାତ୍ମା ଗାନ୍ଧୀ । ଭାରତୀୟମାନେ ତାଙ୍କୁ ଅବତାର ମଣନ୍ତି । ବଡଲାଟ୍ ଲିନିଲିଥିଗୋ କୁହନ୍ତି- 'ଭାରତରେ ସବୁଠାରୁ ମୂଲ୍ୟବାନ ଜିନିଷ ଗାନ୍ଧୀ' । ଗଣିତଜ୍ଞ ଆଇନ୍‌ଷ୍ଟାଇନ୍ କୁହନ୍ତି- ଗାନ୍ଧୀ ହେଉଛନ୍ତି ସାରା ବିଶ୍ୱର ବିବେକର ବାଣୀ ।' ଚର୍ଚ୍ଚିଲ କୁହନ୍ତି- 'ଲଙ୍ଗଳା ଫକିର ।' ଆଉ ଆମେ ସମସ୍ତେ କହୁ 'ଗାନ୍ଧୀ-ନର ଶ୍ରେଷ୍ଠ ନାରାୟଣ ।'

୧୮୬୯ ମସିହା ପୃଥିବୀ ଇତିହାସରେ ମହତ୍ୱପୂର୍ଣ୍ଣ ସମୟ । ସେହିବର୍ଷ ଖୋଲିଥାଏ ସୁଏଜ କେନାଲ । ଆଉ ସେହିବର୍ଷ ସର୍ବତ୍ର ପ୍ରକାଶ ପାଇ ଆଦୃତ ହୋଇଥାଏ କାର୍ଲମାକ୍ସଙ୍କର 'କ୍ୟାପିଟାଲ' ପୁସ୍ତକ । ବୀର ଶ୍ରେଷ୍ଠ ନେପୋଲିୟନଙ୍କ ଜନ୍ମ ଶତବାର୍ଷିକ ପାଳନ କରୁଥାନ୍ତି ଫ୍ରାନ୍ସବାସୀ । ବିଲାତରେ ଶାସନ କରୁଥାନ୍ତି ରାଣୀ ଭିକ୍ଟୋରିଆ । ଜର୍ମାନୀରେ ଯୁଦ୍ଧ ଡାକରା ଦେଉଥାନ୍ତି ବିସ୍ମାର୍କ । ଆଉ ସେହିବର୍ଷ ଗୁଜୁରାଟର ପୋର ବନ୍ଦରଠାରେ ୧୧ଫୁଟ ଚଉଡା, ୧୯.୫ଫୁଟ ଲମ୍ବ, ୧୦ଫୁଟ ଉଚ୍ଚର ଗୋଟିଏ ଛୋଟ ଘରେ ଜନ୍ମ ନେଇଥିଲେ ନରଶ୍ରେଷ୍ଠ ନାରାୟଣ, ଅହିଂସାର ପୂଜାରୀ ମୋହନ ଦାସ କରମ ଚାନ୍ଦ ଗାନ୍ଧୀ । ସେ ଦିନଟି ଥିଲା ଅକ୍ଟୋବର ୨ତାରିଖ । ପିତା ଥିଲେ- କରମଚାନ୍ଦ କାବା ଗାନ୍ଧୀ ଓ ମାତା ପୁତୁଳା ବାଈ ।

ଗାନ୍ଧୀଙ୍କ ନିକଟରେ ନଥିଲା ଷ୍ଟାଲିନ୍‌ଙ୍କ ପରି ସୈନ୍ୟଦଳ, ଅବା ଚର୍ଚ୍ଚିଲଙ୍କ ଚାଲବାଜି । ନଥିଲା ମଧ୍ୟ ନିଜାମଙ୍କ ପରି ଧନ, ଅବା ଆଇନ୍‌ଷ୍ଟାଇନ୍ ବା ନିଉଟନ୍‌ଙ୍କ ବିଜ୍ଞାନ । କିନ୍ତୁ ଏ ସମସ୍ତଙ୍କଠାରୁ ଗାନ୍ଧୀ ଥିଲେ ଶକ୍ତିଶାଳୀ । ଦେହରେ ତାଙ୍କର ବଳ ଅତି କମ୍ । କିନ୍ତୁ ତାଙ୍କ ମନର ବଳ ଶତାଧିକ ଯୁଦ୍ଧ ଜାହାଜଠାରୁ ବଳୀୟାନ । ତରବାରୀର ଜୟରେ ବିଶ୍ୱାସ ନକରି ସେ ହୃଦୟର ଜୟକୁ ବିଶ୍ୱାସ କରନ୍ତି । ସେ ସରକାର, ଅବା ସରକାରର କେହି ନଥିଲେ, ହେଲେ କୋଟି ଜନତାର ସହସ୍ର ସୈନ୍ୟ, ସାମନ୍ତ, ମନ୍ତ୍ରୀ ପରିଷଦ, ସରକାର ତାଙ୍କୁ ସମ୍ମାନ କରନ୍ତି । ପାଉଁଶ ବୋଳା ଭୋଳାନାଥ ଶ୍ମଶାନରେ ବୁଲନ୍ତି । କିନ୍ତୁ ରାସ୍ତାରେ ଦେଖିଦେଲେ ଇନ୍ଦ୍ର ବି ଐରାବତରୁ ଓହ୍ଲାଇ ତାଙ୍କ ପାଦତଳେ ପ୍ରଣାମ କରନ୍ତି । ଅନୁରୂପ ଭାବରେ ଗାନ୍ଧୀ ଖଦୀ ଖଣ୍ଡେ ପିନ୍ଧି ବୁଲୁଥିଲାବେଳେ ସର୍ବୋଚ୍ଚ ପଦବୀଧାରୀ ବ୍ରିଟିଶ ଲାଟ୍ ତାଙ୍କୁ ଗାଡିରୁ ଓହ୍ଲାଇ ସମ୍ମାନ ଦେଉଥିଲେ ।

ପୃଥିବୀରେ ବଡ ଲୋକଙ୍କର ଅଭାବ ନାହିଁ, ମହାପୁରୁଷଙ୍କ ଅଭାବ । ଗାନ୍ଧୀ ଜଣେ ମହାପୁରୁଷ । ଲିଙ୍କନ୍, ଲେନିନ୍, ଷ୍ଟାଲିନ୍, ଚର୍ଚ୍ଚିଲ ସମସ୍ତେ ମାଟିରୁ ଆସି ଶେଷ ଜୀବନ ମହଲାରେ କାଟିଛନ୍ତି । କିନ୍ତୁ ଗାନ୍ଧୀ ମହଲାରୁ ଆସି ମାଟିରେ ଶୋଇଛନ୍ତି । ପୋର ବନ୍ଦରର ତିନି ମହଲାରେ ଜନ୍ମ ନେଇଥିବା ଗାନ୍ଧୀ ସାବରମତୀ ସେବା ଗ୍ରାମର ମାଟିର କୁଡିଆରେ ଶେଷ ଜୀବନ ବିତାଇଲେ । ବିଲାତି ପୋଷାକ ଛାଡି ଖଦୀ ପିନ୍ଧୁଥିଲେ । ସାହେବୀ ଲଞ୍ଚ, ଡିନର ଛାଡି ଛେଳି ଦୁଧ, ଶାଗପତ୍ର ଖାଉଥିଲେ । ହାତରେ ନଥିଲା ତାଙ୍କର ଲୁହାର ତରବାରୀ ଅବା ବନ୍ଧୁକ । ଥିଲା କାଗଜ ତିଆରି ଅସ୍ତ୍ର ଗୀତା । ତାଙ୍କ ସାମ୍ରାଜ୍ୟ ମାଟିର ନୁହେଁ- ମନର ସାମ୍ରାଜ୍ୟ, ସତ୍ୟ ଓ ଅହିଂସାର ସାମ୍ରାଜ୍ୟ ଥିଲା ।

◆◆◆

ୱେଷ୍ଟ ମିନିଷ୍ଟର ପ୍ୟାଲେସ ବିଲାତ ରାଜାଙ୍କ ନଅର । ମଣିଷର ଖାଲି ପାଦ କେବେ ସେ ନଅରର ପାହାଚରେ ପଡିନଥିଲା । ପ୍ରଥମ ପାଦ ପକାଇଲେ ଗାନ୍ଧୀ । ବିଲାତି ରାଜାଙ୍କ ନଅରରେ ଖାଲି ପାଦ ପଡିବା ସେଇ ପ୍ରଥମ ଓ ଶେଷ ବୋଧେ । ଚର୍ଚ୍ଚିଲ କୁହନ୍ତି ଲଙ୍ଗଳା ଫକିର କିନ୍ତୁ ଫକିର ଥରେ ରଷିଲେ, ବ୍ରିଟିଶ ସରକାରଙ୍କ ରକ୍ତ କାକର ହୋଇଯାଏ । ଗାନ୍ଧୀ ବିଲାତ ରାଜାଙ୍କ ନଅରକୁ ଗଲାବେଳେ ତାଙ୍କୁ ଦେଖୁଥିଲେ ଅଷ୍ଟମ ଏଡ୍‌ୱାର୍ଡ କୋଠା ଉପରୁ । ସେ ତାଙ୍କ ଅନୁଚରମାନଙ୍କୁ କହୁଥିଲେ– 'ଚର୍ଚ୍ଚିଲ ସିନା ୟାଙ୍କୁ ଲଙ୍ଗଳା ଫକିର କହୁଛନ୍ତି । ହେଲେ ଏଇ ମଣିଷ ଦିନେ ବ୍ରିଟିଶ ସରକାରଙ୍କୁ ଲଙ୍ଗଳା କରି ଛାଡିଦେବ ।' ସେହି ରାଜକୁମାରଙ୍କ କଥା ଶେଷରେ ସତ ହୋଇ ଫୁଟିଲା ।

ଗାନ୍ଧିଜୀଙ୍କ ଜୀବନ ଶୈଳୀ ଥିଲା ଅତି ଆଶ୍ଚର୍ଯ୍ୟଜନକ । କୌଣସି ଭୁଲ୍ କଲେ ନିଜକୁ ପବିତ୍ର କରିବା ପାଇଁ ସେ ଉପବାସ କରୁଥିଲେ । ମହାତ୍ମା ଗାନ୍ଧୀ ଯେତେବେଳେ ଉପବାସ କରନ୍ତି, କି ଦେଶ, କି ବିଦେଶ ସବୁଠାରେ ଚହଳ ପଡେ । ବ୍ରିଟିଶ ବଡଲାଟ୍‌ମାନଙ୍କୁ ସେ ତିଳେହେଲେ ଡରନ୍ତିନି, କିନ୍ତୁ ଡରନ୍ତି ସ୍ତ୍ରୀ କସ୍ତୁରବାଙ୍କୁ । କସ୍ତୁରୀ ବାଈ ଗୁଜୁରାଟୀ ଅକ୍ଷ ଜାଣିଥିଲେ । ବେଶୀ ପାଠ ପଢିନଥିଲେ ।

ଗାନ୍ଧୀ ଥିଲେ ସେସମୟରେ ଜାତୀୟ କଂଗ୍ରେସର ମା', ବାପା । ସତ୍ୟ, ଅହିଂସା ତାଙ୍କ ଜୀବନର ବ୍ରତ ଥିଲା । ଦେଶକୁ ବିଦେଶୀ ଶାସନ କବଳରୁ ମୁକ୍ତ କରିବା ଥିଲା ତାଙ୍କର ଲକ୍ଷ୍ୟ । ସତ୍ୟ ଥିଲା ତାଙ୍କର ସାଧନା । ଶତ୍ରୁ ଆଗରେ ବି ମନଖୋଲି ସବୁକଥା ସେ କହିପକାନ୍ତି । ଭୁଲ୍ କଲେ ବଡ ପାଟିରେ କହି ଦିଅନ୍ତି ଭୁଲ କରିଛନ୍ତି ବୋଲି । ଆଜି ଗୋଟିଏ କଥା କହିଥିଲେ, ତାକୁ କାଲି ପରିବର୍ତ୍ତନ କରନ୍ତି । ଉତ୍ତରରେ କୁହନ୍ତି– ମୁଁ ସତ୍ୟର ସାଧନା ଓ ପରୀକ୍ଷା କରୁଛି । ବିଦେଶୀ ଶାସକ ଏ ପ୍ରକାର ଢଙ୍ଗ ଦେଖି ତାଜୁବ୍ ହୋଇଯା'ନ୍ତି ।

ଗାନ୍ଧୀ ଥିଲେ ଦରିଦ୍ରର ସଖା । ଅସହାୟର ସହାୟ । ଭାରତୀୟ କୃଷକଟିଏ ଆଣ୍ଠୁ ଯାଏ ଲୁଗାପିନ୍ଧି ବିଲରେ କାମ କଲାପରି ସେ ଲୁଗା ପିନ୍ଧୁଥିଲେ । ହୁଏତ ପୃଥିବୀରେ ଏ ମହତ ଆଦର୍ଶ ଆଉ କୌଣସି ନେତାଙ୍କର ନଥାଇପାରେ । ଅବଶ୍ୟ ଗାନ୍ଧୀଙ୍କୁ ସାଧାରଣ ନେତାଙ୍କ ସହ ତୁଳନା କରିବା କେତେ ଯୁକ୍ତିଯୁକ୍ତ, ତାହା ପାଠକ ବିଚାର କରିବେ । ଖାଲି ପାଟିରେ କଥା କହି, ସତ୍ୟ ଓ ଅହିଂସାର ସାଧନା କରି ବିଶ୍ୱର ସର୍ବଶକ୍ତିମାନ ଏକ ଶକ୍ତିକୁ ସେ ଏ ଦେଶରୁ ତଡିଦେଲେ । ଦେଶର ଉପକାର କରି ଗୁଳି ଚୋଟରେ ଭୂମିରେ ଲୋଟିଲେ । ଦେଶ ଓ ଦେଶର ମଙ୍ଗଳ ପାଇଁ ସେ ଯେମିତି ପ୍ରାଣ ଦେବାକୁ ଚାହିଁ ବସିଥିଲେ ।

ସେ ଦିନଟି ଥିଲା ୧୯୪୮ ମସିହା ଜାନୁଆରୀ ୩୦ ତାରିଖ । ସମୟ ଅପରାହ୍ନ ୪ଘ.୩୦ମି. । ଦିନର ଶେଷ ଭୋଜନ ସାରି ଆଭା ଓ ମାନୁଙ୍କ କାନ୍ଧରେ ହାତ ଭରା ଦେଇ ବିରଳା ଭବନରୁ ବାହାରିଲେ ପ୍ରାର୍ଥନା ପାଇଁ । ସେଦିନର ପ୍ରାର୍ଥନା ହେଲା ତାଙ୍କର ଶେଷ ପ୍ରାର୍ଥନା ।

ସତ୍ୟ ଓ ନ୍ୟାୟର ଶେଷ ପ୍ରଦୀପ ଲିଭିଗଲା । ମାନ୍ୟବର ପ୍ରଧାନମନ୍ତ୍ରୀ ଘୋଷଣା କଲେ– 'ଆଲୁଅ ଲିଭିଗଲା' । ଗାନ୍ଧୀଙ୍କ ପାଇଁ ସମଗ୍ର ବିଶ୍ୱରୁ ୩୪୪୧ଟି ଟେଲିଗ୍ରାମ୍ ଶୋକବାର୍ତ୍ତା ପାଇଲେ ସରକାର । ବୋଧହୁଏ ପୃଥିବୀର ସବୁ କୋଣରେ ଟେଲିଗ୍ରାମ୍ ଯନ୍ତ୍ର ଏକ ସମୟରେ ବାଜି ଉଠିଲା ।

ଇଂଲଣ୍ଡର ରାଜା, ଆମେରିକାର ସଭାପତି, ଚୀନ୍‌ର ଚାଙ୍ଗକାଇ ସେକ୍, ଫ୍ରେଞ୍ଚ ପ୍ରେସିଡେଣ୍ଟ, ଆଇନ୍‌ଷ୍ଟାଇନ୍, ଆନ୍ଦ୍ରେ ଗ୍ରୋମିକୋ ଭଳି ବହୁ ବିଶ୍ୱ ନେତାଙ୍କ ନିକଟରୁ ଆସିଲା ଶୋକବାର୍ତ୍ତା । ଏଠାରେ ଉଲ୍ଲେଖଯୋଗ୍ୟ କାଲିଫର୍ଣ୍ଣିଆର ଜଣେ ୧୩ବର୍ଷର ବାଳିକା ଶୋକ ବାର୍ତ୍ତାରେ ଲେଖିଥିଲେ, 'ମୁଁ ଗାନ୍ଧୀଙ୍କୁ କେବେ ଦେଖିନାହିଁ, ତାଙ୍କ ଭାଷା ଜାଣେ ନାହିଁ କିମ୍ବା ତାଙ୍କ ଦେଶରେ ମୋ ପାଦ ପଡିନାହିଁ । ତଥାପି ମୋତେ ଲାଗୁଛି ସତେ ଯେମିତି ମୁଁ ମୋର କୌଣସି ନିକଟ ସମ୍ପର୍କୀୟ ଲୋକଙ୍କୁ ହରାଇଛି ।' ଫ୍ରାନ୍‌ସର ସାମ୍ୟବାଦୀ ଲେ ଅଁ ବ୍ଲେଁଙ୍କ ସମେତ ଆହୁରି ଅନେକ ମଧ୍ୟ ଏହିପରି ବାର୍ତ୍ତା ପଠାଇଥିଲେ । ଆନ୍ତର୍ଜାତିକ ଅନୁଷ୍ଠାନ ତାଙ୍କୁ ସମ୍ମାନ ଦେବା ପାଇଁ ପତାକା ନୁଆଁଇ ଦେଲେ । ସାରା ମଣିଷ ଜାତି ତା'ର ପତାକା ନୁଆଁଇ ଦେଲା ।

ଶେଷରେ ଏତିକି କୁହାଯାଇପାରେ– 'ଏ ଦୁନିଆରେ ଯଦି ସତ କହି କିଏ ରାଜନୀତି କରିଥାନ୍ତି, ତେବେ ସେ ହିଁ କେବଳ ଗାନ୍ଧୀ । ଏହାର ଦ୍ୱିତୀୟ ଉଦାହରଣ ଦୁନିଆ ଦେଖିଛି, ନା... ମୋ କଳ୍ପନାର ବାହାରେ... ।'

ରାଜେନ୍ଦ୍ର ନଗର, କଟକ–୧୦



# କାଲିର ମୋହନ ଆଜିର ସ୍ମୃତି

**ହରିବନ୍ଧୁ ମଙ୍ଗରାଜ**

ନିର୍ଣ୍ଣାୟକ ପୁରୁଷ ସେ ! ଯାହାଙ୍କଠି ମାୟା ଓ ପାର୍ଥିବ ଜୀବନର ବିଷୟା ଧନ୍ଦା ସ୍ପର୍ଶ କରି ପାରିନଥିଲା । କାମିନୀ କାଞ୍ଚନ ମୋହ ଜୀବନ ଚଲାପଥରେ ସୁଯୋଗ ପାଇ ମଧ ବିମୋହିତ କରିନଥିଲା । ସବୁର ଅଧିକାରୀ ହୋଇ କୌଣସିର ଜାହିରିତ୍ୱ ସୃଷ୍ଟି କରିନଥିଲା । ସେ ଏକ ନିଆରା ମାନବ ଯାହାଙ୍କୁ ମିଥ୍ୟା, ରାଗ, ଅହଂକାର ଈର୍ଷା ଦେଖିଲେ ଦୂରରୁ ଜୁହାର କରୁଥିଲା । ନିରାଡମ୍ବର ଚଳଣି, ସାଧାସିଧା ପୋଷାକ ଆବରଣ, ଆଣ୍ଠୁ ଲୁଚା ଲୁଗା, ଖୋଲା ଦେହ, ଲଙ୍ଗଳା ଫକୀର, ହାତରେ ବାଡିଟିଏ । ବାଟ ଚାଲୁ ଚାଲୁ ବହୁବାର ବାଟ ଝୁଣ୍ଟି ଖଣ୍ଡିଆ ଖାବରା ହୋଇ କ୍ଷତ ବିକ୍ଷତ ହେଲେ ମଧ ସାହସର ବନ୍ଧ ବାନ୍ଧି ଚାଲିଥିଲେ ଆଗକୁ ଆଗକୁ । ସେ କେବେ ଥକିଯାଇ ପଛକୁ ଅନେଇ ନାହାଁନ୍ତି । ସତ୍ୟର ସନ୍ଧାନ ଲାଗି ରାଜ ସିଂହାସନର ପ୍ରଲୋଭନରେ ପଡି ନିଜକୁ ବିକି ନଦେଇ ଶାସନର କଣ୍ଟା ଚାବୁକ ପ୍ରହାରରେ ଜର୍ଜରିତ ହୋଇ ନିଜ କର୍ତ୍ତବ୍ୟ ପଥରୁ ବିଚ୍ୟୁତ ହୋଇନଥିଲେ । କଳାଧନ ରୋଜଗାର କରି ଭୋଗ ବିଳାସରେ ମାତି ରହି ସମାଜର ଯନ୍ତ୍ରଣା ଦେଖିବି, ପର ଆଖିରେ ଲୁହ ଦେଖି ନିଜକୁ ଘୋଡାଇ ରଖିବି, ଏ ପରିକଳ୍ପନା ନଥିଲା ତାଙ୍କଠାରେ । ତାଙ୍କର ଥିଲା ଗୋଟିଏ ବ୍ରତ 'ସତ୍ୟ ଓ ଅହିଂସା' । ଯାହାକୁ ଖୋଜୁ ଖୋଜୁ ଅକଥନୀୟ ବେଦନାର ଶିକାର ହୋଇ ଜୀବନକୁ ତଳିତଳାନ୍ତ କରି ଗରିବ ଚାଷୀ ମୂଲିଆ, ସମାଜର ପଛୁଆ ବର୍ଗ ପାଇଁ ଛୁଆଁ ଅଛୁଆଁ, ଭେଦଭାବ ପାଚେରିକୁ ହଟେଇ ସେମାନଙ୍କ ମୁଖରେ ହସର କୋରକ ଫୁଟାଇଥିଲେ । ପରାଧୀନ କାରା ଘରୁ ଲୁହାର କବାଟକୁ ଭାଙ୍ଗି ସ୍ୱାଧୀନତାର ସ୍ୱାଦୁ ଚଖାଇ ଅବତାର ମାନବ ଅବତାରୀ ହୋଇଗଲେ ।

ବିଂଶ ମସିହା ପୂର୍ବରୁ ଭବିଷ୍ୟତର ଆହ୍ୱାନ ଦେଇ ଦୀର୍ଘ ଦୁଇଶହ ବର୍ଷର କୁଶାସନ କବଳରୁ ଭାରତ ମାତା ହାତରୁ ଦୁଃଖର ବେଡି ଫିଟାଇ ମାତୃଭୂମିର ତ୍ରିରଙ୍ଗାକୁ ଉଚ୍ଚା ରଖି ସବୁଜ ଲହରୀ ସୃଷ୍ଟି କରି ମାଟି ମାଆକୁ ଚିର ମୁକୁଳା କଲେ । ଜାତିର ଜନକ ଆଜି ସବୁରି ମୁଖରେ । ଡାକ ନା 'ବାପୁଜୀ' ।

ସେଇ ବିସ୍ମୟ ପୁରୁଷଙ୍କର ଜନ୍ମ ୧୮୬୯ ମସିହା ଅକ୍ଟୋବର ୨ ତାରିଖରେ ଗୁଜୁରାଟର ପୋର ବନ୍ଦରଠାରେ । ପିତା କରମଚାନ୍ଦ ଗାନ୍ଧୀ, ମାତା ପୁତୁଲୀବାଈଙ୍କ କୋଳ ମଣ୍ଡନ କରି ଶୈଶବର କଅଁଳିଆ ପାଦ ଥାପିଲେ ଧରିତ୍ରୀ ମା' ବୁକୁରେ । ଦୋହଲା ଦୁର୍ବଳ ଶରୀରରେ ପିତାମାତାଙ୍କ ୪ର୍ଥ ପୁତ୍ର ରୂପରେ ବିବେଚିତ ହେଲେ ମୋହନ ଦାସ କରମ ଚାନ୍ଦ ଗାନ୍ଧୀ । ତୁଳସୀ ଦୁଇ ପତ୍ରରୁ ବାସିଲା ପରି ସେ ପିଲାଟି ଦିନରୁ ହିଁ ସତ୍ୟ ପାଇଁ ଜିଦ୍‌ଖୋର ହୋଇଉଠିଥିଲେ । ସାଙ୍ଗସାଥୀ ମେଳରେ ସ୍କୁଲକୁ ଯାଉଥିଲେ । କିନ୍ତୁ ସମୟେ ସମୟେ ସ୍କୁଲରେ ଅନୁପସ୍ଥିତ ରହୁଥିଲେ ନିଜର ସ୍ୱାସ୍ଥ୍ୟଗତ କାରଣ ନେଇ । ଯେବେ ସ୍କୁଲକୁ ଯାଆନ୍ତି ସମୟର ଠିକ୍ ଉପଯୋଗ କରି ନିୟମତା ପାଳନ କରନ୍ତି । ବିଳମ୍ବତାକୁ ସେ ପସନ୍ଦ କରୁନଥିଲେ କି କାହାରି ପ୍ରରୋଚନାରେ ପଡି ନିଜ ଜିଦ୍‌ରୁ ଓହରି ଯାଉନଥିଲେ । ଥରକର କଥା– ନିଜ ସ୍କୁଲକୁ ଶିକ୍ଷା ବିଭାଗର ଉଚ୍ଚ କର୍ମଚାରୀ ସ୍କୁଲ ପରିଦର୍ଶନ ପାଇଁ ଆସିଥିଲେ । ସେ ମହାଶୟ କ୍ଲାସ ପରିଦର୍ଶନ କଲାବେଳେ କିଛି ପାଠ୍ୟକ୍ରମ ପିଲାଙ୍କୁ ପରୀକ୍ଷା ପାଇଁ ପ୍ରଶ୍ନ କରିଥିଲେ, ଉତ୍ତର ପାଇଁ ମୋହନ ଦାସ ସବୁ ପ୍ରଶ୍ନର ଉତ୍ତର ଠିକ୍ ଲେଖିଥିଲେ ମଧ ସ୍ଥଳ ବିଶେଷରେ କାଁ ଭାଁ ଭୁଲ୍ ହୋଇ ଯାଇଥିଲା । କ୍ଲାସ ଶିକ୍ଷକ ପରୋକ୍ଷ ଇଙ୍ଗିତ ଦେଇ କହିଥିଲେ ସାଥୀ ପିଲାଠାରୁ ଦେଖି ଉତ୍ତର ଠିକ୍ କରିବା ପାଇଁ । କିନ୍ତୁ ମୋହନ ଜାଣିଶୁଣି ନିଜ କଥାରେ ଅଟଳ ରହି ସେ ଭୁଲ କାର୍ଯ୍ୟ କରିନଥିଲେ । ସ୍କୁଲ ପରିଦର୍ଶକ ଚାଲିଯିବା ପରେ ଶିକ୍ଷକ ମୋହନଙ୍କୁ ଡାକି ପଚାରିଲେ ତୁମେ କାହିଁକି ମୋ

ଇଙ୍ଗିତ ନମାନି ଉତ୍ତର ଠିକ୍ କଲ ନାହିଁ । କିନ୍ତୁ ମୋହନଙ୍କ ଉତ୍ତର ଥିଲା ଏପରି 'କପି କରିବା ମହାପାପ' । ଶିକ୍ଷକ ଅବାକ୍ ହୋଇଗଲେ ଏବଂ ସ୍କୁଲର ସମସ୍ତ ଶିକ୍ଷକ ଏକଥା ଜାଣି ସ୍ତମ୍ଭୀଭୂତ ହୋଇଯାଇଥିଲେ ଓ ସେଇଦିନଠାରୁ ଶିକ୍ଷକମାନେ ମୋହନଙ୍କ ଉପରେ ସୁଦୃଷ୍ଟି ରଖିଥିଲେ । ପାଠର ପ୍ରଥମ ପାହାଚ ଡେଇଁ ପ୍ରବେଶ କଲେ ଦ୍ୱିତୀୟ ପାହାଚରେ ମୋହନ । ସେ ସନ ୧୮୮୭ ମସିହାରେ ବମ୍ବେ ବିଶ୍ୱବିଦ୍ୟାଳୟରୁ ମାଟ୍ରିକ ପାଶ୍ କଲେ । ଇତିମଧ୍ୟରେ ତାଙ୍କର ବାଲ୍ୟ ବିବାହ ସମବୟସ୍କା କସ୍ତୁରବାଙ୍କ ସଙ୍ଗେ ହୋଇସାରିଥିଲା । କିଶୋର ବୟସର ମାଦକତା ନେଇ ମୋହନ ସମୟର ତାଳେ ତାଳେ ବୈବାହିକ ଜୀବନ ବେଶ ଉପଭୋଗ କରିଥିଲେ । କିନ୍ତୁ ସେ ଭାରି ଲାଜକୁଳା ଓ ଭୟାଳୁ ଥିଲେ । ରାତିରେ ପରିଶ୍ରା କରିବାକୁ ଗଲେ କସ୍ତୁରବାଙ୍କୁ ସାଙ୍ଗରେ ନେଇ ବାହାରକୁ ଯାଉଥିଲେ । କାଳକ୍ରମେ କସ୍ତୁରବା ତାଙ୍କର ଏ ଭୟାଳୁ ପଣକୁ ନିର୍ଭୟରେ ପରିଣତି କରିଥିଲେ । କିନ୍ତୁ ବୟସର ସଙ୍ଗ ଦୋଷ ତାଙ୍କୁ କିଛି ସମୟରେ ଅବାଟକୁ ଟାଣିଥିଲା । ଯେଉଁଥିରେ ସେ ବିଡି ବା ପିକା ପାଇଁ ପଇସା ଚୋରି କରିଥିଲେ । ପରେ ବିବେକର ଦଂଶନ ଫଳରେ ଗୁରୁଜନଙ୍କ ଅଜାଣତରେ ଏପରି କରିବା ଠିକ୍ ହେବନାହିଁ ବୋଲି ନିଜ ଦୃଢୋକ୍ତି ବଳରେ ସେ ପଥରୁ ଓହରି ଆସିଥିଲେ । ସେଇଦିନଠାରୁ ସେ ସବୁ ଅଭ୍ୟାସ ଛାଡି ଦେଇଥିଲେ । ଦିନକର କଥା ଜଣେ ମୁସଲମାନ ସାଙ୍ଗ, ସାଙ୍ଗମାନଙ୍କ ସହିତ ଆଲୋଚନା କରୁଥିଲେ । ଇଂରେଜମାନେ ଭାରି ବଳୁଆ ଓ ବୁଦ୍ଧିଆ ଜାତି । ସେମାନେ ମାଂସ ଖାଇବାକୁ ସାରା ପୃଥିବୀକୁ ଶାସନ କରୁଛନ୍ତି, ତେଣୁ ସେମାନେ ମାଂସ ଖାଇବା ପାଇଁ ଯୋଜନା କଲେ ଏବଂ ଛୁଟି ଦିନ ଦେଖି ଏକ ନଦୀ କୂଳକୁ ଯାଇ ରୁଟି ସହିତ ମାଂସଖଣ୍ଡଗୁଡିକୁ ଟକ୍ ଟାକ୍ କରି ଗିଳି ପକାଇଲେ । କାରଣ ସେ ଗୁଜୁରାଟି ପରିବାର ହୋଇଥିବାରୁ ତାଙ୍କ ପରିବାରରେ ଆମିଷ ଭକ୍ଷଣ ନିଷେଧ ଥିଲା । ମୋହନ ମାଂସ ଖାଇସାରି ଫେରିବା ପରେ ନିଜକୁ ଦୋଷୀ ମନେକରି ସାରା ରାତି ଶୋଇପାରିଲେ ନାହିଁ । ଏକେତ ପରିବାର ବିରୋଧତା ଆଚରଣ କରି ଗୁରୁଜନଙ୍କୁ ଲୁଚାଇ ଏପରି ଅପକର୍ମ କରିଛନ୍ତି । ଦ୍ୱିତୀୟରେ ଜୀବ ହତ୍ୟା ମହାପାପ ଭାବି ସାରାରାତି ଶୋଇ ପାରିଲେ ନାହିଁ । ନିଜର ଭୁଲକୁ ଅନୁତାପ କରି ସବୁଦିନ ପାଇଁ ସେଥିରୁ ନିବୃତ୍ତ ରହିଲେ ଏବଂ ଜୀବପ୍ରତି ଦୟାଭାବ ଜାଗ୍ରତ ହେଲା ।

ଆଉ ଦିନକର କଥା, ସେ ତାଙ୍କ ଭାଇ କର୍ଷନ ଓ ଶେଖ ମେହେତାବ୍ ତାଙ୍କୁ ଭୁଲ ପଥରେ ଯିବାକୁ ଶିଖାଇଥିଲେ । କାରଣ କର୍ଷନ ମେହେତାବ୍‌ଠାରୁ ୨୫ଟଙ୍କା ଧାର ଆଣି ସୁଝି ନପାରିବାରୁ ତାଙ୍କୁ ଚୋରି କରିବାକୁ ପ୍ରବର୍ତ୍ତାଇ ଥିଲେ । ମୋହନ ଘରୁ ସୁନା ବାହୁଟି ଆଣି ସେଥିରୁ କିଛି ଅଂଶ କାଟି ବିକ୍ରି କରି ଭାଇ କର୍ଷନର ଧାର ସୁଝିଥିଲେ । ପରେ ନିଜେ ଏପରି କରିବା ଠିକ୍ ନୁହେଁ ଏବଂ ବାପା ମା'ଙ୍କୁ ଏ ସତ କଥା କହିଦେବାକୁ ମନରେ ଠିକ୍ କଲେ । କିନ୍ତୁ ବାପା ରୋଗ ଶଯ୍ୟାରେ ପଡିଥିବା ହେତୁ ତାଙ୍କୁ ମୁହଁରେ କିଛି କହିନପାରି ପତ୍ର ମାଧ୍ୟମରେ ସବୁ କଥା ଲେଖି ବାପାଙ୍କ ହସ୍ତକୁ ବଢାଇ ଦେଇ ଲୁଚିକରି ଅନୁଧ୍ୟାନ କରିଥିଲେ । ବାପା ପତ୍ରଟି ପଢିସାରି ଦୁଃଖରେ ମ୍ରିୟମାଣ ହୋଇ କଇଁ କଇଁ ହୋଇ କାନ୍ଦିବାର ଦେଖି ମୋହନ ନିଜକୁ ସମ୍ଭାଳି ନପାରି ସେ ବାପାଙ୍କୁ କୋଳେଇ କାନ୍ଦି ପକାଇଲେ ଏବଂ ଭାବିଲେ ମୋର ଅନୁତାପ ଲୁହ କରିଥିବା ପାପକୁ ସତ କହିବାରୁ ଧୋଇ ନେଲା ।

କିଛିଦିନ ପରେ ଉଚ୍ଚଶିକ୍ଷା ପାଇଁ କଲେଜ ପଢିବା ପାଇଁ ବମ୍ବେ ଗଲେ କିନ୍ତୁ କଲେଜର ଇଂରାଜୀ ଦୁର୍ବୋଧ୍ୟ ହେବାରୁ ତାଙ୍କୁ ପଢିବା ପାଇଁ ଭଲ ଲାଗିଲାନି । ତେଣୁ ସେ ଲଣ୍ଡନ ଯାଇ ବାରିଷ୍ଟର ପଢିବାକୁ ସ୍ଥିର କଲେ । କାରଣ ତାଙ୍କର ସମ୍ପର୍କୀୟ କେତେଜଣ ଛାତ୍ର ଲଣ୍ଡନରେ ପାଠ ପଢୁଥିବାରୁ ଏପରି ସେ ନିଷ୍ପତ୍ତି ନେଇଥିଲେ । ବଡ ଭାଇ ଲକ୍ଷ୍ମୀଦାସ ମୋହନଙ୍କୁ ପୁଅ ଭଳି ତାଙ୍କ ସ୍ନେହ ବନ୍ଧନରେ ବାନ୍ଧି ଦେଇଥିଲେ । ତେଣୁ ପିତାଙ୍କର ରୋଗିଣା ଅବସ୍ଥାକୁ ମୁକାବିଲା କରି ମୋହନଙ୍କ ପାଇଁ କିଛି ଟଙ୍କା କରଜ କରି ଲଣ୍ଡନକୁ ବାରିଷ୍ଟରି ପଢିବା ପାଇଁ ପରିବାର ସମ୍ମତିକ୍ରମେ ଦିନଧାର୍ଯ୍ୟ ହେଲା । କିନ୍ତୁ ମା'ଙ୍କର ରକ୍ଷଣଶୀଳ ଲକ୍ଷ୍ମଣ ରେଖାକୁ ମୋହନ ଯେପରି ନଡିଅନ୍ତି, ତେଣୁ ମା' ନିଜର ମଥା ଛୁଆଇଁ କହିଲେ ମୋହନ ତୁ ଏଇ ତିନୋଟି କଥା ମୋର ନିଶ୍ଚୟ ରକ୍ଷା କରିଲେ ତୋତେ ଲଣ୍ଡନ ଛାଡିବି ।

୧-ମଦ ପିଇବୁ ନାହିଁ, ୨- ମାଛ, ମାଂସ ଖାଇବୁ ନାହିଁ, ୩-କୌଣସି ସ୍ତ୍ରୀକୁ ଛୁଇଁବୁ ନାହିଁ । ଏହି ସର୍ତ୍ତରେ ମୋହନ ରାଜି ହୋଇ ମା' ପାଖରେ ଶପଥ କରି ଲଣ୍ଡନ ପଢିବାକୁ ବାହାରି ପଡିଲେ । ସେଦିନ ଥିଲା ସେପ୍ଟେମ୍ବର ମାସ ୪ତାରିଖ ୧୮୮୮ ମସିହା, ମୋହନ ବମ୍ବେ ବନ୍ଦରରୁ ଲଣ୍ଡନ ଯାତ୍ରା କଲେ ପାଣି ଜାହାଜରେ ବାରିଷ୍ଟରି ପାଠ ପଢିବା ପାଇଁ । ବାଟରେ ଜଣେ ବଙ୍ଗ ବନ୍ଧୁ ଓକିଲ ବୟସରେ ଯଥେଷ୍ଟ ବଡ ହେଲେ ମଧ୍ୟ ସେ ମୋହନଙ୍କ ଯୁବ ସୁଲଭତା ଅନୁଯାୟୀ ତାଙ୍କ ସହିତ ଖାପଖୁଆଇ ଅତି ଆପଣାର ହୋଇ ସହଯାତ୍ରୀ ହୋଇଗଲେ । ଦୀର୍ଘ ୨୫ ଦିନ ପରେ ସେ ଯାଇ ଲଣ୍ଡନରେ ପହଞ୍ଚିଗଲେ । ବଙ୍ଗ ବନ୍ଧୁଙ୍କ

ସହ ଯାଇ ସେ ପ୍ରଥମେ ହୋଟେଲ ଭିକ୍ଟୋରିଆରେ ରହିଲେ । ହୋଟେଲର ଚାକଚକ୍ୟ ଦେଖି କ୍ଷଣିକ ପାଇଁ ମୋହରେ ମୋହନ ଚକିତ ହୋଇଗଲେ । ହୋଟେଲରେ ତିନିଦିନ ରହିସାରିବା ପରେ, ତାଙ୍କର ଦୈନିକ ଶୁଭେଚ୍ଛୁ ଡକ୍ଟର ମେହେଟ୍ଟା ହୋଟେଲ ଛାଡିବା ପାଇଁ ପରାମର୍ଶ ଦେଲେ । କାରଣ ଏ ସ୍ଥାନ ଅତି ବିଳାସପୂର୍ଣ୍ଣ । ତେଣୁ ଖର୍ଚ୍ଚରୁ ବଞ୍ଚିବା ପାଇଁ ସେ ପ୍ରସ୍ତାବ ଦେଲେ ଓ ତାହାହିଁ ହେଲା । ତେଣୁ ଜଣେ ସ୍ଥାନୀୟ ବୟସ୍କା ମେମ୍‌ଙ୍କ ଘରେ ପେଇଙ୍ଗ୍ ଗେଷ୍ଟ୍ ହିସାବରେ ରହିଲେ । କଥାରେ ଅଛି ଯେ ଦେଶ ଯାଇ ସେ ଫଳ ଖାଇ ନ୍ୟାୟରେ ମୋହନ ଜଣେ ପ୍ରତିଷ୍ଠିତ ଇଂରାଜୀ ଶିକ୍ଷକଙ୍କ ପାଖରେ ଇଂରାଜୀ ଶିଖିଲେ ଏବଂ ସାମୟିକ ଭାଓଲିନ୍ ମଧ୍ୟ ଶିଖିଲେ । ସେଠାରେ ରହି ଫରାସୀ ଓ ଲାଟିନ୍‌ଭାଷା ଶିଖିବା ସଙ୍ଗେ ସଙ୍ଗେ ଆଉଥରେ ମାଟ୍ରିକ୍ ପାଶ୍ କଲେ ଏବଂ ସାହିବ ଢଙ୍ଗ ଢାଙ୍ଗରେ ପୋଷାକ କରି ପିନ୍ଧିଲେ ଓ ଦାମିକା ଟୋପି କିଣିଲେ । ଏସବୁ ଖର୍ଚ୍ଚ ପାଇଁ ବଡ ଭାଇ ଲକ୍ଷ୍ମୀ ଦାସ ପ୍ରତିମାସରେ ତାଙ୍କ ପାଇଁ ରୀତିମତ ଟଙ୍କା ଠିକ୍ ସମୟରେ ପଠାଉଥିଲେ । କିଛି ଦିନ ପରେ ସେ ଭାବିଲେ ସେ ତ ସବୁଦିନ ପାଇଁ ଲଣ୍ଡନରେ ରହିବେ ନାହିଁ, ତେଣୁ ତାଙ୍କ ବେଶଭୂଷା ଭାରତୀୟ ଢଙ୍ଗରେ ପୂରା ପରିବର୍ତ୍ତନ କଲେ । ମନରେ ଜିଦ୍ ରଖି ଭଲ ପାଠ ପଢିଲେ । ମଝିରେ ମଝିରେ ସେ ଭାରତୀୟ ସ୍ମୃତିର ଶ୍ରବଣ କୁମାରଙ୍କ, ବୁଦ୍ଧଦେବଙ୍କ ଓ ଦାନବୀର ହରିଶ୍ଚନ୍ଦ୍ରଙ୍କ ଜୀବନୀ ପାଠକରି ଅନୁପ୍ରାଣିତ ହୋଇଗଲେ । ତେଣୁ ତାଙ୍କର ପିତାମାତାଙ୍କ ପ୍ରତି ପ୍ରଗାଢ ଭକ୍ତି, ସ୍ନେହ ଜାଗ୍ରତ ହେଲା ଏବଂ ଗୀତାକୁ ମୂଳମନ୍ତ୍ର କରି ନିଜର ଜୀବନଶୈଳୀ ଭାରତୀୟ ପରମ୍ପରାରେ ବଜାୟ ରଖିଲେ । ସେ ହିନ୍ଦୁ ଧର୍ମକୁ ପ୍ରାଧାନ୍ୟ ଦେଲେ ମଧ୍ୟ ଇସ୍‌ଲାମି ଓ ଖ୍ରୀଷ୍ଟିୟାନ୍ ଧର୍ମପ୍ରତି ପ୍ରଗାଢ ସମ୍ମାନ ବି ଥିଲା । ସବୁ ଧର୍ମକୁ ସମାନ ବିଚାରଭାବେ ଗ୍ରହଣ କରୁଥିଲେ । ଶେଷରେ ୧୮୯୧ ମସିହା ମେ ମାସରେ ବାରିଷ୍ଟର ପାଶ୍ କରି ଜୁନ୍ ମାସରେ ବାରିଷ୍ଟର ହେବା ପାଇଁ ଅନୁମତି ପତ୍ର ପାଇଲେ । କିଛିଦିନ ପରେ ଘର ବାହୁଡା ହୋଇ ସ୍ୱଦେଶକୁ ଫେରିଲେ । ବମ୍ବେ ବନ୍ଦରରେ ଯେତେବେଳେ ବଡ ଭାଇ ପାଛୋଟି ଆଣିବା ପାଇଁ ଯାଇଥିଲେ, ସେ ତାଙ୍କୁ ଦେଖି ଅତି ଆବେଗ ଭରା କଣ୍ଠରେ ବାପା ମା'ଙ୍କ କଥା ପଚାରି ବସିଥିଲେ କିପରି ଅଛନ୍ତି ? ବାରମ୍ବାର ପଚାରିବା ପରେ ବଡଭାଇ ନୀରବ ଓ ଅଶ୍ରୁଳତାପୂର୍ଣ୍ଣ ନୟନରେ ଚାହିଁ ରହିଲେ । ସେଥିରୁ ସେ ଜାଣି ଗଲେ ନିଶ୍ଚୟ ବାପା ମା'ଙ୍କର କିଛି ଅଘଟଣ ଘଟିଛି । କୋହଭରା କଣ୍ଠ ଓ ଆବେଗ ଭରା ଦୁଃଖରେ କହିଲେ, ସେମାନେ ସବୁଦିନ ପାଇଁ ଆମକୁ ଛାଡିଗଲେ । ମୁଁ ତୁମକୁ ଏଇଥି ପାଇଁ ଜଣାଇ ନଥିଲି ତୁମର ପାଠପଢାରେ ବ୍ୟତିକ୍ରମ ହେବ ବୋଲି । ଘରେ ପହଁଚି କସ୍ତୁରବାଙ୍କ ଉପରେ ସ୍ୱାମୀତ୍ୱର ଜାହିର ଦେଖାଇ ବହୁତ ଗାଳି ଗୁଲଜ କଲେ । କସ୍ତୁରବା ନୀରବ ରହି ଘରର ପରିସ୍ଥିତି ସବୁ ଟିକିନିଖି ଭାବେ ଜଣେଇ ଦେଲେ । ଆଉ ବଡ ଭାଇ ବହୁତ କରଜରେ ବୁଡି ରହିଥିବା କଥା ପ୍ରସଙ୍ଗରେ କହି ପକାଇଲେ । ଏଇଠୁ ପିତାମାତାଙ୍କର ସ୍ନେହ ମମତା ମୋହନଙ୍କ ପାଇଁ ଚିର ସ୍ୱପ୍ନ ହୋଇ ରହିଲା । ଦୁଃଖରେ କିଛି ଦିନ ଭାଙ୍ଗି ପଡିଲେ ଏବଂ ଘରର ରୋଜଗାର ପନ୍ଥା ପାଇଁ ଓକିଲାତି କରିବା ପାଇଁ ମନସ୍ଥ କରି ବମ୍ବେ ହାଇକୋର୍ଟକୁ ଚାଲିଲେ ନିଜର ବେଉଷା କରି କିଛି ଅର୍ଥ ଉପାର୍ଜନ କଲେ ଘରର ଭରଣ ପୋଷଣ ହେବା ସଙ୍ଗେ ସଙ୍ଗେ ଭାଇଙ୍କର କରଜ ସୁଝା ଯିବ । କିନ୍ତୁ ନିୟତିର ବିଡମ୍ବନା, ସେ ବମ୍ବେ କୋର୍ଟରେ ଅସଫଳ ହେଲେ । କାରଣ ମହକିଲର କେଶ ନେଇ ଜଜ୍‌ଙ୍କ ସମ୍ମୁଖରେ ପ୍ରତିକୂଳ ଓକିଲ ଆଗରେ ଯୁକ୍ତି ବାଢିଲା ବେଳକୁ ମୁଖରୁ ପଦେ ହେଲେ କଥା ବାହାରିଲା ନାହିଁ । ସମସ୍ତେ ଯାହା ଆଶା କରୁଥିଲେ ବିଲାତ ଫେରନ୍ତା ବାରିଷ୍ଟର ଭଲ କରିବେ ବୋଲି ତାହା ଆଶାରେ ହିଁ ରହିଗଲା । ଶେଷରେ ମନସ୍ଥ କଲେ ଶିକ୍ଷକତା କରି ଛାତ୍ରଙ୍କ ଚରିତ୍ର ଗଠନ କରିବେ ଯାହାକି ସମାଜରେ ଏକ ମହତ କାର୍ଯ୍ୟ । ସେଇଆ ହେଲା ଶେଷରେ ଶିକ୍ଷକତା କଲେ । ସହକର୍ମୀ, ଛାତ୍ର ଓ ଅଭିଭାବକମାନେ ମୋହନଙ୍କୁ ଖୁବ୍ ଭଲ ପାଇଲେ ତାଙ୍କ କାର୍ଯ୍ୟକଳାପ ପାଇଁ କିନ୍ତୁ ଦଇବର ଇଚ୍ଛା ଯାହା ସେଇଆ ହେବ । କଥାରେ ଅଛି ଦଇବ ଦଉଡି ମଣିଷ ଗାଈ, ଯେଣିକି ଟାଣିଲେ ତେଣିକି ଯାଇ, ପରେ ଯେତେବେଳେ ସ୍କୁଲର ପ୍ରଧାନ ଶିକ୍ଷକ ଜାଣିଲେ ମୋହନଙ୍କର ବିଶ୍ୱବିଦ୍ୟାଳୟର ଡିଗ୍ରୀ ନାହିଁ କି, ଶିକ୍ଷକତା ସମ୍ପର୍କରେ କୌଣସି ତାଲିମ ପ୍ରାପ୍ତ ଯୋଗ୍ୟତା ପ୍ରମାଣ ପତ୍ର ନାହିଁ, ତେଣୁ ସ୍କୁଲ ପ୍ରଧାନ ଶିକ୍ଷକ ତାଙ୍କୁ ଚାକିରିରୁ ବିଦାୟ କରିଦେଲେ । ଦୁଃଖ ନୈରାଶ୍ୟରେ ଭାଙ୍ଗି ନପଡି ଧୈର୍ଯ୍ୟର ସହ ମୁକାବିଲା କରି ସ୍ଥିର କଲେ ରାଜକୋଟ ଯାଇ ମୋହରିର କାମ କରି ପରିବାରର ଗୁଜୁରାଣ ମେଣ୍ଟେଇବେ । ଭାଗ୍ୟର ବିଡମ୍ବନା, ଜଣେ ବାରିଷ୍ଟର ଶେଷରେ ପେଟ ପାଇଁ କିରାଣୀ କାମ କଲେ । ମୋହନ ସେଥିରେ ସନ୍ତୁଷ୍ଟ ନଥିଲେ, ସବୁବେଳେ ଚିନ୍ତାମଗ୍ନ ଥିଲେ ପରିବାର କିପରି ଚଳିବ ଓ ଭାଇଙ୍କର କରଜ କିପରି ସୁଝାଯିବ ।

ଏତିକି ବେଳେ କାଥିଆୱାଡାର ଏକ ମୁସଲମାନ ପ୍ରତିଷ୍ଠାନ ଦକ୍ଷିଣ ଆଫ୍ରିକାରେ ବ୍ୟବସାୟ କରୁଥାନ୍ତି ତାହାର ମାଲିକ ଅବଦୁଲା ଜଣେ ମୂର୍ଖ ଲୋକ । ତେଣୁ ସେ ସବୁବେଳେ ଭାବୁଥିଲେ ଜଣେ ବିଶ୍ୱସ୍ତ ଲୋକ, ଓକିଲାତି ପାଶ କରିଥିବ ଏବଂ ସଚ୍ଚୋଟ ହୋଇଥିବ

ଦକ୍ଷିଣ ଆଫ୍ରିକା ଯାଇ ତାଙ୍କର ସଂସ୍ଥାର କେଶ ବୁଝାବୁଝି କରିବା ପାଇଁ । ସେଭଳି କଥା ଶୁଣି ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ଆଉ ମଧ୍ୟ ଗାନ୍ଧୀ ପରିବାର କଥା ସେ ଅଞ୍ଚଳରେ ଖୁବ୍ ସୁନାମ ଥିଲା । ତେଣୁ ସେ ମୋହନଙ୍କୁ ମୋଟା ଅଙ୍କର ଦରମା ଦେବେ ଓ ଖାଇବା ରହିବା ସବୁ ବ୍ୟବସ୍ଥା କରାଯିବ ବୋଲି ତାଙ୍କୁ ବୁଝେଇ ଦିଆଗଲା । ଏଥିରେ ମୋହନ ଓ ମୋହନଙ୍କ ପରିବାର ଆନନ୍ଦିତ ହୋଇ ପ୍ରସ୍ତାବରେ ରାଜି ହୋଇଗଲେ ଏବଂ ମୋହନ ବର୍ଷକ ପାଇଁ ଚୁକ୍ତି କରି ସେ ସେଠାରେ ଅନେକ ବର୍ଷ (ଦକ୍ଷିଣ ଆଫ୍ରିକାରେ) ରହିଗଲେ । ୧୮୯୩ ମସିହାରୁ ଯାଇ ୧୯୧୪ ମସିହାର ଶେଷ ଭାଗରେ ସ୍ୱଦେଶକୁ ଫେରିଲେ। ସେଠାରେ ରହି ମୋହନଙ୍କର ଆର୍ଥିକ ସ୍ଥିତି କିଛି ମାତ୍ରାରେ ସୁଧୁରି ଗଲା କିନ୍ତୁ ଦକ୍ଷିଣ ଆଫ୍ରିକାରେ କଳା ଗୋରା ବର୍ଣ୍ଣ ବୈଷମ୍ୟ ଭାବ ଭାରି ତୀବ୍ରତା ଧାରଣ କରିଥାଏ । ସେଠାରେ ଭାରତୀୟମାନଙ୍କୁ ଅକଥନୀୟ ଯନ୍ତ୍ରଣା ଗୋରା ଶାସକମାନେ ଦେଉଥିଲେ । ତେଣୁ ମୋହନ ଏସବୁ ଦୃଶ୍ୟ ଦେଖି ନିଜେ ଶିକାର ହୋଇଥିଲେ ମଧ୍ୟ ଭାରତୀୟମାନେ ସେଠାରେ ବହୁ କ୍ଷେତ୍ରରେ ନିନ୍ଦିତ, ଅପମାନିତ, ଉପେକ୍ଷିତ ଓ ଲାଞ୍ଛିତ ହୋଇ ଦହଗଞ୍ଜ ହେଉଥିଲେ । ମୋହନ ଏସବୁକୁ ବରଦାସ୍ତ ନକରିପାରି ଦକ୍ଷିଣ ଆଫ୍ରିକାରେ ଇଂରେଜଙ୍କ ବିରୁଦ୍ଧରେ ଏକ ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ସ୍ଥିତି ପରିବର୍ତ୍ତନ କରିବା ପାଇଁ ମନରେ ଦୃଢ ସଂକଳ୍ପ ନେଲେ ଓ ନାଟାଲରେ ଥିବା ଭାରତୀୟମାନଙ୍କୁ ନେଇ ସେଠାରେ କଂଗ୍ରେସ ଗଠନ କଲେ । ଏସବୁ କାର୍ଯ୍ୟ କରିବା ପାଇଁ ମୋହନଙ୍କୁ ଘୋର ବିପଦର ସମ୍ମୁଖିନ ହେବାକୁ ପଡିଲା । ଇଂରେଜମାନଙ୍କର ଏତେ ବର୍ବରତା ସ୍ୱଭାବ ଥିଲା ଯେ କଳା ଲୋକମାନେ ଟ୍ରେନରେ ପ୍ରଥମ ଶ୍ରେଣୀରେ ଯାତାୟାତ କରିପାରିବେ ନାହିଁ, ପିଚୁରାସ୍ତା ଉପରେ ଯାଇପାରବେ ନାହିଁ । ଦକ୍ଷିଣ ଆଫ୍ରିକାରେ ରହିବାକୁ ହେଲେ ବାର୍ଷିକ କର ଦେବାକୁ ହେବ । ଏଥିରେ ମୋହନ ଦାସ ନିଜେ ପ୍ରତ୍ୟକ୍ଷ ସମ୍ମୁଖୀନ ହୋଇ ଶାରୀରିକ ଓ ମାନସିକ ଯନ୍ତ୍ରଣା ଭୋଗ କରିଥିଲେ । ଗୋଟିଏ ଦିନର କଥା ଡର୍ବାନ ସହରରୁ ପ୍ରିଟୋରିଆ ଯିବାକୁ ପଡିଲା ଏକ କୋର୍ଟ କାମରେ । ସେ ଟ୍ରେନ୍‌ରେ ପ୍ରଥମ ଶ୍ରେଣୀ ଟିକଟ କାଟି ଯାଉଥିବା ବେଳେ ଜୋହାନସ୍‌ବର୍ଗ ଷ୍ଟେସନରେ ଜଣେ ଗୋରା ସାହେବ ସେହି ଡବାରେ ଉଠିଲେ ଯିବା ପାଇଁ । କିନ୍ତୁ ମୋହନଙ୍କୁ ଦେଖି ଭୃକୁଂଚନ କରି ଓହ୍ଲେଇ ପଡିଲେ ଏବଂ ରେଲୱେ ବିଭାଗରେ କ'ଣ ଫେରାଦ କଲେ ଯେ ଗୋରା ପୋଲିସମାନେ ଆସି ମୋହନଙ୍କ ଆବାସପତ୍ର ଜୋର ଜବରଦସ୍ତି ତଳକୁ ଫୋପାଡି ଦେଇ ତାଙ୍କୁ ମାଡ ଦେବାକୁ ପଛେଇଲେ ନାହିଁ ଏବଂ ଟ୍ରେନରୁ ତାଙ୍କୁ ଓହ୍ଲେଇ ଦେଲେ । କ'ଣ କରିବେ ଦୁଃଖ ପରେ ଦୁଃଖ, ମଣିଷ ହୋଇ କେତେବା ସହିବେ । ପୁଣି ଉଚ୍ଚ ଶିକ୍ଷିତ ଯୁବକ । ନିଜର ହକ୍ ପାଇବାକୁ ତାଙ୍କର ଅଧିକାର ନାହିଁ । ଏପରି ସାରା ରାତି ଶୀତରେ ଠିକ୍ କଲେ ମୁଁ ଯଦି ଶିକ୍ଷିତ ହୋଇ ଏପରି ଭୋଗୁଛି, ଛାର ଅଶିକ୍ଷିତ ଭାରତୀୟମାନେ କିପରି ଜୀବନଯାପନ କରିବେ ଏଠି । ତେଣୁ ମନରେ ଦୃଢ ସଂକଳ୍ପ ନେଇ ନାଟାଲ୍ କଂଗ୍ରେସ୍‌କୁ ଖୁବ୍ ଯୋରଦାର କଲେ । ସବୁ ଭାରତୀୟଙ୍କୁ ଏକାଠି କରି ନିଜର ନ୍ୟାଯ୍ୟ ଦାବି ହାସଲ କରିବା ପାଇଁ ସତ୍ୟାଗ୍ରହ ମାଧ୍ୟମରେ ସାରା ପୃଥିବୀରେ ଥିବା ଭାରତୀୟମାନଙ୍କୁ ଇଂରେଜଙ୍କ କୁଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ଆହ୍ୱାନ ଦେଲେ । ସେଥିରେ ସେ ଗୋଟାକ ପରେ ଗୋଟିଏ କାର୍ଯ୍ୟରେ ସଫଳତା ପାଇଲେ । ଏଣେ ମୁସଲମାନ ବ୍ୟବସାୟୀ ଓ ଅନ୍ୟ ବ୍ୟବସାୟୀ ଯଥା ଭାରତୀୟମାନେ ତାଙ୍କୁ ଆର୍ଥିକ, ମାନସିକ ଓ ଶାରୀରିକ ସମର୍ଥନ ଜଣାଇଲେ । ମୋହନ ଦାସଙ୍କୁ ଦକ୍ଷିଣ ଆଫ୍ରିକା ପଠାଇଥିଲେ ସେସବୁ କ୍ଷେତ୍ରରେ ଉତ୍ସାହିତ କରୁଥିଲେ । ଏଣେ ଭାରତରେ ସ୍ୱାଧୀନତାର ନିଆଁ ଆସ୍ତେ ଆସ୍ତେ ଜୁହୁଳିବାକୁ ଲାଗିଲା । ସେଥିପାଇଁ ଭାରତୀୟ କଂଗ୍ରେସ ତରଫରୁ କଲିକତାଠାରେ ୧୯୦୧ ମସିହା ଡିସେମ୍ବର ମାସରେ ଏକ ସମ୍ମିଳନୀର ଆୟୋଜନ କରାଯାଇଥିଲା । ସେଥିରେ ଗାନ୍ଧୀଙ୍କର ପ୍ରମୁଖ ଭୂମିକା ଥିଲା । ତାଙ୍କ ଭାଷଣ ମାଧ୍ୟମରେ ଜନତାର ସେବା କରିବା ପାଇଁ ଆହ୍ୱାନ ଦେଇ ନିଜେ ଦେଶ ପାଇଁ କିଛି କରି ଦେଖାଇବେ ବୋଲି ଜନତାଙ୍କୁ ପ୍ରତିଶ୍ରୁତି ଦେଲେ ଏବଂ ତାହାହିଁ କଲେ । ମୋହନ ଭାରତକୁ ଆସି ଗୋପାଳ କୃଷ୍ଣ ଗୋଖଲେଙ୍କ ସହ ସୁସମ୍ପର୍କ ସ୍ଥାପନ କରି ତାଙ୍କୁ ରାଜନୀତି ଗୁରୁ ବୋଲି ସ୍ୱୀକାର କରିଥିଲେ । ପରେ ପରେ ରସ୍କିନଙ୍କର 'ଅନ ଟୁ ଦି ଲାଷ୍ଟ' ପୁସ୍ତକ ଓ ରୁଷିଆର ମହାନ ଋଷି ପ୍ରତିମ ଦାର୍ଶନିକ ଟଲ୍‌ଷ୍ଟୟଙ୍କର ଲେଖା ପଢି ଜୀବନର ଏକ ନିର୍ଣ୍ଣାୟକ ମୋଡ ବଦଳାଇଥିଲେ । ଟଲ୍‌ଷ୍ଟୟଙ୍କ ସହଯୋଗରେ ଜୋହାନସ୍‌ବର୍ଗଠାରୁ କିଛି ଦୂରରେ ୧୧ଏକର ଜମି ଉପରେ ଟଲ୍‌ଷ୍ଟୟ ଆଶ୍ରମ କରି ଅନ୍ତେବାସୀଙ୍କର ଖୁବ୍ ପ୍ରଶଂସାର ପାତ୍ର ହୋଇପାରିଥିଲେ । ଗାନ୍ଧିଜୀଙ୍କ ପତ୍ରାଳାପ ଦ୍ୱାରା ଟଲଷ୍ଟୟ ନିଶ୍ଚିତ ହୋଇ ସାରିଥିଲେ ଯେ ଗାନ୍ଧିଜୀ ଦିନେ ସମଗ୍ର ବିଶ୍ୱର ଜଣେ ସଂସ୍କାର ସୂର୍ଯ୍ୟ ହେବେ । ୧୯୧୦ ମସିହାଠାରୁ ୧୯୪୫ ମସିହା ଭିତରେ ବହୁ ଉଲ୍ଲେଖନୀୟ କାର୍ଯ୍ୟରେ ସଫଳ ହାସଲ କରି ଭାରତର ବିଶିଷ୍ଟ ଜନନାୟକ ଯଥା– ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ମହାଦେବ ଦେଶାଇ, ରାଜ ଗୋପାଳଚାରୀ, ଲୋକମାନ୍ୟ ବାଲ ଗଙ୍ଗାଧର ତିଳକ, ଲାଲା ଲଜପତ୍ ରାୟ, ବିପିନ ଚନ୍ଦ୍ର ପାଲ୍

(ଲାଲା, ବାଲ୍, ପାଲ୍) ଓ ପଣ୍ଡିତ ଜବାହରଲାଲ ନେହେରୁ ତାଙ୍କ ସଂସ୍ପର୍ଶରେ ଆସି ଦେଶ ସ୍ୱାଧୀନତାରେ ସହଯୋଗ କରିଥିଲେ । ଗାନ୍ଧୀଙ୍କର ଜାଲିଆନାୱାଲାବାଗ ଓ ବଙ୍ଗଳାର ନୂଆଖାଲି ଗଣ ହତ୍ୟା ଜୀବନର ସବୁଠାରୁ ଦୁଃଖଦ ଘଟଣା ହୋଇପଡିଥିଲା । ଦକ୍ଷିଣ ଆଫ୍ରିକାରୁ ଭାରତରେ ଅତ୍ୟାଚାର ଇଂରେଜମାନଙ୍କ ଦ୍ୱାରା ବଳି ପଡିଲା । ୧୯୨୯ରେ ଲାହୋର କଂଗ୍ରେସ ଅଧିବେଶନ ନେହେରୁଙ୍କ ସଭାପତିତ୍ୱରେ ସିଦ୍ଧାନ୍ତ ନିଆଗଲା । ୧୯୩୦ ଜାନୁଆରୀ ୨୬କୁ ସମଗ୍ର ଭାରତର ସ୍ୱାଧୀନତା ଦିବସ ପାଳିତ କରାଯିବାର ପ୍ରସ୍ତାବ ଗୃହୀତ ହେଲା  ଏବଂ ତାହାହିଁ ହେଲା । ସେହିଦିନଠାରୁ ଗାନ୍ଧିଜୀ ଆହ୍ୱାନ ଦେଲେ ଇଂରେଜମାନଙ୍କ ଦ୍ୱାରା ନିର୍ମିତ ବସ୍ତୁ ପରିହାର କରିବା ପାଇଁ ତେଣୁ ସେ ସମସ୍ତ ଭାରତୀୟମାନଙ୍କୁ କହିଲେ ଖଟି ଖାଅ, କାଟି ପିନ୍ଧ । ନିଜେ ଲୁଣ ମାରି ନିଜେ ଖାଅ । ସେଥିପାଇଁ ଲବଣ ସତ୍ୟାଗ୍ରହ ଚଳାଇଲେ । ଏ ସଂକ୍ରାନ୍ତରେ ଗାନ୍ଧିଜୀ ଗିରଫ ହେବା ଫଳରେ ସରୋଜିନୀ ନାଇଡୁ ଏହାର ନେତୃତ୍ୱ ନେଲେ । ଏସବୁ ଅତ୍ୟାଚାର ସହ୍ୟ ନକରିପାରି ନେତାଜୀ ସୁଭାଷ ବୋଷଙ୍କ ମଧ୍ୟରେ ମତ ପ୍ରାର୍ଥକ୍ୟ ଦେଖା ଦେଇଥିଲା । ନେତାଜୀ ଭାରତୀୟମାନଙ୍କୁ ଉଗ୍ରବାଦର ଆହ୍ୱାନ ଦେଇ କହୁଥିଲେ 'ହେ ଭାରତୀୟ, ତୁମ୍ଭେମାନେ ମୋତେ ରକ୍ତ ଦିଅ, ମୁଁ ତୁମକୁ ସ୍ୱାଧୀନତା ଦେବି', କିନ୍ତୁ ନେତାଜୀ ଗାନ୍ଧୀଙ୍କ ପ୍ରତି କେବେ ଅସମ୍ମାନ କିମ୍ବା ବିରୋଧରେ ସ୍ୱର ଉତ୍ତୋଳନ କରିନଥିଲେ । ନେତାଜୀ ରେଙ୍ଗୁନଠାରେ ଥାଇ ଗାନ୍ଧିଜୀଙ୍କ ଦାଣ୍ଡି ଯାତ୍ରାକୁ ପ୍ରଶଂସା କରି ରେଡିଓ ମାଧ୍ୟମରେ କହିଥିଲେ 'ଗାନ୍ଧିଜୀ ହେଉଛନ୍ତି ବିଂଶ ଶତାବ୍ଦୀର ବିସ୍ମୟ ମାନବ' । ନେତାଜୀ ଓ ଗାନ୍ଧୀଙ୍କ ମଧ୍ୟରେ ଏତିକି ପାର୍ଥକ୍ୟ ଥିଲା ନେତାଜୀ, ଗୁଳି, କମାଣ ଉପରେ ବିଶ୍ୱାସ ରଖି ସ୍ୱାଧୀନ କରିବାକୁ ଚାହୁଁଥିଲେ ଏବଂ ସେଥିପାଇଁ ୧୯୩୫ ମସିହାରେ ଫରୱାର୍ଡ ବ୍ଲକ ନାମରେ ଏକ ନୂଆ ଦଳ ଗଠନ କରିଥିଲେ । କିନ୍ତୁ ଗାନ୍ଧିଜୀ, ଅହିଂସା ଓ ବିନା ଅସ୍ତ୍ରରେ ଦେଶକୁ ସ୍ୱାଧୀନ କରିବା ପାଇଁ ଜିଦ୍ ଧରିଥିଲେ । ଶେଷରେ ଗାନ୍ଧିଜୀ ହିଁ ଦେଶ ସ୍ୱାଧୀନତାର ସଫଳ ନାୟକ ହୋଇଥିଲେ । ଗାନ୍ଧିଜୀ ଆଉ ଜଣେ ମୁସଲମାନଙ୍କ ସମ୍ପର୍କରେ ଆସିଥିଲେ, ସେ ହେଉଛନ୍ତି ଖାଁ ଅବଦୁଲ ଗଫର ଖାଁ, ଯାହାଙ୍କୁ ସମସ୍ତେ ସୀମାନ୍ତ ଗାନ୍ଧୀ ବୋଲି କହୁଥିଲେ । ସେ ମୁସଲିମ୍ ହେଲେ ମଧ୍ୟ ହିନ୍ଦୁଙ୍କ ପ୍ରତି ତାଙ୍କର ପ୍ରଗାଢ ସ୍ନେହ ମମତା ଥିଲା । ସେ ସର୍ବଦା କହୁଥିଲେ ମୋ ନାମରେ ଗାନ୍ଧୀ ଶବ୍ଦ ପ୍ରୟୋଗ କର ନାହିଁ, ଗାନ୍ଧୀଙ୍କର ଅବମାନନା ହେବ । କାରଣ ସେ ଏକମାତ୍ର ଭାରତର ଜନକ, ଦ୍ୱିତୀୟ ଗାନ୍ଧୀ କେହି ନାହିଁ । ସେ ଗାନ୍ଧିଜୀଙ୍କ ଅହିଂସା ନୀତିରେ ଅନୁପ୍ରାଣିତ ହୋଇ ଜୀବନରେ ବହୁ କାର୍ଯ୍ୟରେ ସଫଳ ହୋଇଥିଲେ ବୋଲି କୁହନ୍ତି । ୧୯୩୯ ମସିହା ବିଶ୍ୱ ଯୁଦ୍ଧ ପରେ ପରେ ଗାନ୍ଧିଜୀ ୧୯୪୨ରେ ଭାରତ ଛାଡିବା ପାଇଁ ଇଂରେଜମାନଙ୍କୁ ଧମକ ଦେବାରୁ ସମଗ୍ର ଦେଶରେ ହିଂସା କାଣ୍ଡ ସୃଷ୍ଟି ହେଲା । ବ୍ରିଟିଶ ସରକାର କଂଗ୍ରେସର ସବୁ ବ୍ୟାଙ୍କ ଆକାଉଣ୍ଟ ଓ କାର୍ଯ୍ୟାଳୟ ବନ୍ଦ କରିଦେଲେ । ଗାନ୍ଧିଜୀଙ୍କ ଡାକରାରେ ଶହ ଶହ ସରକାରୀ କର୍ମଚାରୀ ଚାକିରି ଛାଡି ଦେଶ ସ୍ୱାଧୀନତା ମହାସ୍ରୋତରେ ଝାସ ଦେଲେ । ୧୯୪୫ ମସିହାରେ ଜାପାନ ଆତ୍ମ ସର୍ମପଣ କରିବାରୁ ବ୍ରିଟିଶ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ଭାରତକୁ ସ୍ୱାଧୀନତା ଦେବା ପାଇଁ ମନା କରିଦେଲେ କିନ୍ତୁ ନିର୍ବାଚନରେ ହାରିଯିବାରୁ ଶ୍ରମିକ ଦଳର ପ୍ରଧାନମନ୍ତ୍ରୀ ଅଟ୍‌ଲି ନିଜର ନିର୍ବାଚନୀ ଇସ୍ତାହାର ଅନୁସାରେ ଭାରତକୁ ସ୍ୱାଧୀନତା ଦେବାକୁ ଚାହିଁଲେ । କିନ୍ତୁ କୁଚକ୍ରୀ ଇଂରେଜ ସରକାର କଳି ମଞ୍ଜି ପୋତିଦେଲେ ଅଖଣ୍ଡ ଭାରତକୁ ବିଭାଜନ କରିବା ପାଇଁ । ଯେଉଁଥିରେ ମହମ୍ମଦ ଜିନ୍ନା ଜିଦ୍ ଧରି ବସିଲେ ଏବଂ ଗାନ୍ଧିଜୀଙ୍କ ଅଖଣ୍ଡ ପ୍ରଭାବକୁ ସହ୍ୟ କରିପାରୁନଥିଲେ । ସେ ଲଣ୍ଡନରୁ ଫେରି ସ୍ୱତନ୍ତ୍ର ପାକିସ୍ତାନ ରାଷ୍ଟ୍ର ଗଢିବା ପାଇଁ କ୍ଷମତାଲିପ୍ସୁ ହୋଇ ନିଜର କୁଟନୀତି ପ୍ରୟୋଗ କରି ଅଖଣ୍ଡ ଭାରତକୁ ବିଭାଜନ କଲେ । ଲର୍ଡ ମାଉଣ୍ଟ ବେଟେନ ଓ ଗାନ୍ଧିଜୀ କଂଗ୍ରେସ ନେତାମାନଙ୍କୁ ବୁଝାଇ ଜିନ୍ନାଙ୍କୁ ପ୍ରଧାନମନ୍ତ୍ରୀ କରିବା ପାଇଁ ପ୍ରସ୍ତାବ ଆଗତ କଲେ କିନ୍ତୁ କଂଗ୍ରେସ କର୍ମୀମାନେ ଘୋର ବିରୋଧ କରିବାରୁ ଏହା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ଶେଷରେ ହିନ୍ଦୁ ମୁସଲମାନ ଅଲଗା ହୋଇ ଜିନ୍ନା ପାକିସ୍ତାନର ପ୍ରଧାନମନ୍ତ୍ରୀ ହେଲେ ୧୯୪୭ ମସିହା ଅଗଷ୍ଟ ୧୪ ତାରିଖ ଦିନ । ତେଣେ ଭାରତର ପ୍ରଧାନମନ୍ତ୍ରୀ ହେଲେ ପଣ୍ଡିତ ଜବାହରଲାଲ ନେହେରୁ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ନିଜ ଦେଶର ସ୍ୱତନ୍ତ୍ରତା ତ୍ରିରଙ୍ଗା ଉଡାଇ ।

ଯେତେବେଳେ ଗାଦି ଓ ଗଦି ପାଇଁ ଭାରତୀୟ କଂଗ୍ରେସ ନେତାମାନେ ନିଜ ନିଜ ପଦ ଓ ପଦବୀ ପାଇଁ ଲାଗି ରହିଥିଲେ ସେତେବେଳେ ଗାନ୍ଧିଜୀ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ନିଜକୁ ଅସହାୟତା ମଣି ସେ କଲିକତାରେ ଯାଇ ନୀରବରେ ମଉନ ବ୍ରତ ପାଳନ କଲେ ଓ ଅରଟରେ ସୂତା କାଟିଲେ କାରଣ ଏହାପୂର୍ବରୁ ହିନ୍ଦୁ ଓ ମୁସଲମାନମାନେ ସତ୍ୟ ଓ ଅହିଂସାକୁ ଭୁଲି ଉଭୟ ପକ୍ଷ ନିଜ ନିଜର ସ୍ୱାର୍ଥ ପାଇଁ ପରସ୍ପର ମାତି ରହିଲେ । ତେଣୁ ଗାନ୍ଧିଜୀ ଚାହୁଁ ନଥିଲେ ସଂଖ୍ୟାଲଘୁ ସମ୍ପ୍ରଦାୟ ଉପରେ ହିନ୍ଦୁଙ୍କର ଅତ୍ୟାଚାର । ଯେ ଜୀବନର ବହୁମୂଲ୍ୟ ସମୟକୁ ମାନବ ସେବା

ଅର୍ଥ ମାଧବ ସେବା ଭାବି ନିଜକୁ ତିଳ ତିଳ ଓ ପଳ ପଳ କରି ନିଜର ସୁଖ ସ୍ୱାଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ଅହିଂସା ପରମ ଧର୍ମ ବୋଲି କାର୍ଯ୍ୟ କରୁଥିଲେ, ଶେଷରେ ତାଙ୍କ କଥା କେହି ନଶୁଣିବାରୁ ନିଜକୁ ଦୂରେଇ ରଖିଲେ । ପରିଶେଷରେ ଭାରତ ଅଖଣ୍ଡ ରହୁ ବୋଲି ତାଙ୍କର ପ୍ରସ୍ତାବ ଥିଲା । କିନ୍ତୁ ହିନ୍ଦୁମାନେ କ୍ଷମତାର ଲୋଭରେ ହିଂସାରେ ଜଡିତ ରହି ଗାନ୍ଧିଜୀଙ୍କୁ ଭୁଲ ବୁଝିଲେ, ବାପୁଜୀ ମୁସଲମାନମାନଙ୍କୁ ପରୋକ୍ଷରେ ସାହାଯ୍ୟ କରୁଛନ୍ତି । ହିନ୍ଦୁ ମହାସଭାରେ ନାଥୁରାମ ଗଡସେ ୧୯୪୮ ମସିହା ଜାନୁଆରୀ ୩୦ ତାରିଖ ଦିନ ଗାନ୍ଧିଜୀ ସନ୍ଧ୍ୟା ପ୍ରାର୍ଥନା ସଭାକୁ ଯାଉଥିବା ବେଳେ ତା'ର ପିସ୍ତଲରୁ ୩ରାଉଣ୍ଡ ଗୁଳି ଅତର୍କିତ ଭାବେ ଗାନ୍ଧିଜୀଙ୍କ ଛାତି ଉପରକୁ ଅତି ନିଷ୍ଠୁର ଭାବେ ଚାଳନା କରିଥିଲେ । ସେହି ଗୁଳିରେ ଦେଶର ଜନନାୟକ ହା ରାମ ! କହି ଯଥା ସ୍ଥାନରେ ଟଳି ପଡି ଇହଧାମରୁ ସବୁଦିନ ପାଇଁ ବିଦାୟ ନେଲେ । ଯେଉଁ ଜନନାୟକ ଅନ୍ଧାରୀ ମୂଳକରୁ ଦେଶର ପରାଧୀନତାକୁ ସ୍ୱାଧୀନତା ଦେଲେ ସେହି ସହିଦ୍ ମହାମାନବ ଆଜିର ମହାତ୍ମା ହୋଇ ଆମ୍ଭମାନଙ୍କ ନିକଟରେ ଚିର ସ୍ମରଣୀୟ ସ୍ମୃତି !!

ଶାସ୍ତ୍ରୀନଗର, ୟୁନିଟ୍-୪
ଭୁବନେଶ୍ୱର

---



# ପାର୍ବଣ

ଡକ୍ଟର ବନପ୍ରଭା ପରିଡ଼ା



ଅକାଳ ବୋଧନେ ଆସ
ଆଦ୍ୟାଶକ୍ତି ଅମ୍ବିକା ଅପର୍ଣ୍ଣା,
ଅଯୋନି ସମ୍ଭୁତା ଉମା
ଅଖିଳ ଜଗତମାତା
ଅନ୍ତର ଆରତି ଢାଳି
କରୁ ମାଗୋ ତବ ଆରାଧନା ।
ଦଶଭୁଜା ଦୟାମୟୀ
ଦିଗମ୍ବରା ଦିବ୍ୟ ନନୀ ଗୋ
ତୁମ୍ଭେ ଦନୁଜଦଳିନୀ
ଦଶମହାବିଦ୍ୟା ରୂପେ ପୂଜିତା ଗୋ
ବିଶ୍ୱଧାତ୍ରୀ ଦୁର୍ଗତିନାଶିନୀ ।
ହାସମୟୀ କାଶ ଢ଼ାଳେ ଆଲଟ ଚାମର
ଯହିଁ ଆକାଶରେ ଜହ୍ନ ଢାଳେ ଜ୍ୟୋତ୍ସ୍ନା
ବଉଦ ତୋରଣ ସାଜେ
ସଉଧ ନୀଳ ଗଗନେ କି ଦେବି ଉପମା
ପ୍ରକୃତି ଯା ପୂଜାରିଣୀ
ପବନରେ ପ୍ଳାବିତ ଯା ଗୁଣ
ନଦୀ ଗାଏ ନାନ୍ଦିମୁଖ, କୁସୁମେ କରୁଣା ତବ
ନବମାତୃକା ଗୋ ପଦେ ଅୟୁତ ପ୍ରଣାମ ।
ପ୍ରସିଦଂ ମା ମାହେଶ୍ୱରୀ
ପ୍ରସାଦରେ ପୂରିଉଠୁ ଧରା,
ପୁଣ୍ୟମୟୀ ପୃଥ୍ୱୀ ହେଉ
ସତ୍ୟ-ଶାନ୍ତି-ସ୍ନେହ ମୈତ୍ରୀ ପ୍ରୀତିର ପସରା
କାତ୍ୟାୟିନୀ କରାଳିଗୋ କରୁଣା କଟାକ୍ଷ ଢାଳି
କରକ୍ଷମା ମୂଢ଼ଜନେ
ଧନ୍ୟ ହେଉ ତୁମ୍ଭ ଆଗମନ
କଲ୍ୟାଣମୟୀ ଗୋ କୃପା କର ବାରେ
ପୂର୍ଣ୍ଣ ହେଉ ସଭିଙ୍କର ଆଶା
ପୁଣ୍ୟ ହେଉ ପବିତ୍ର ପାର୍ବଣ ।

ଅଧ୍ୟାପିକା, ଓଡ଼ିଆ ଭାଷା-ସାହିତ୍ୟ ବିଭାଗ,
ନାରାୟଣ ବୀରବର ସାମନ୍ତ ମହାବିଦ୍ୟାଳୟ,
ଝିମାଣୀ, କୁଜଙ୍ଗ,
ଜଗତସିଂହପୁର-୭୫୪୧୪୧

❖ ❖ ❖

# ସାହିତ୍ୟିକ କବି ଅନନ୍ତ ପଟ୍ଟନାୟକ

**ନିର୍ମଳା କୁମାରୀ ମହାପାତ୍ର**

ଆଜକୁ ପ୍ରାୟ ଶହେ ବର୍ଷ ତଳେ ଅବିଭକ୍ତ ପୁରୀ ଜିଲ୍ଲା (ବର୍ତ୍ତମାନର ଖୋରଧା ଜିଲ୍ଲା)ର ଚଣାହାଟ ଗ୍ରାମରେ ଶିଶୁଟିଏ ଜନ୍ମ ହୋଇଥିଲେ ୧୧-ଜୁନ୍-୧୯୧୨ ତାରିଖରେ ମାତା ମହାଦେଈ ଓ ପିତା ଚୌଧୁରୀ ଜୟକୃଷ୍ଣ ପଟ୍ଟନାୟକଙ୍କର ପ୍ରଥମ ସନ୍ତାନ ଭାବେ । ନାମ ରଖାଗଲା ଅନନ୍ତ, ଡାକନାମ ବାବାଜୀ । ଏହାର ଚାରିବର୍ଷ ପରେ ସେହି ପରିବାରରେ ଆଉ ଏକ ପୁତ୍ର ସନ୍ତାନ ଜନ୍ମନେଲେ । ନାମ ହେଲା ଗୁରୁଚରଣ, ଡାକନାମ ବାଉ । ଅନନ୍ତଙ୍କୁ ସାଢେ ଚାରିବର୍ଷ ଓ ଗୁରୁଚରଣର ବୟସ ମାତ୍ର ଛଅମାସ, ଏକା ଦିନରେ ମାଆ-ବାପାଙ୍କର ଦେହାନ୍ତ ହେଲା । ଦୁଇ ଶିଶୁ ହେଲେ ଛେଉଣ୍ଡ ପିଲା । ପିଉସା ସତ୍ୟବାଦୀ ଦାସ ଓ ପିଉସୀ ବସନ୍ତ କୁମାରୀଙ୍କ ହେପାଜତରେ ଅନନ୍ତ ରହି ପାଠ ପଢିଲେ । ପୁରୀରେ ନବମ ଶ୍ରେଣୀ ଯାଏ ଓ ପରେ ପିଉସାଙ୍କର ବଦଳି ଯୋଗୁଁ ଦଶମ-ଏକାଦଶ ଶ୍ରେଣୀ କଟକର ରେଭେନ୍ସା କଲିଜିଏଟ୍ ହାଇସ୍କୁଲରେ ପଢି ୧୯୩୦ ମସିହାରେ ଅନନ୍ତ ପଟ୍ଟନାୟକ ମାଟ୍ରିକୁଲେସନ୍ ପାଶ୍ କଲେ । ୧୯୩୧ରେ କଲେଜ ଜୀବନ, ପୁଣି ରେଭେନ୍ସା କଲେଜରେ । ସେତେବେଳକୁ ସ୍ୱାଧୀନତା ପାଇଁ ଆନ୍ଦୋଳନ । ଲବଣ ସତ୍ୟାଗ୍ରହ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ଛାତ୍ର ସଂଘର ଡାକରା, ଗାନ୍ଧିଜୀଙ୍କର ପଦଯାତ୍ରା ଆଦିରେ ସାମିଲ ହୋଇ ଅନନ୍ତଙ୍କର ପାଠ ପଢାରେ ବ୍ୟାଘାତ ହେଲା । ତଥାପି ତାଙ୍କର ଖୁଡୁତା ବିଶିଷ୍ଟ କବି କୃଷ୍ଣମୋହନ ପଟ୍ଟନାୟକ, କଲେଜ ଅଧକ୍ଷ ଡକ୍ଟର ପ୍ରାଣକୃଷ୍ଣ ପରିଜା ଓ ଶୁଭେଚ୍ଛୁ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସହଯୋଗକ୍ରମେ ଅନନ୍ତ ପଟ୍ଟନାୟକ ୧୯୩୫ ମସିହାରେ ବିଏ ପାଶ୍ କଲେ । ପରବର୍ତ୍ତୀ କାଳରେ ସେ ପରିଚିତ ହେଲେ ବିପ୍ଳବୀ କବି, ଗାଳ୍ପିକ, ନାଟ୍ୟକାର, ଅନୁବାଦକ, ଚଳଚ୍ଚିତ୍ରର ରୂପକାର, ସାମ୍ବାଦିକ, ଶକ୍ତିଶାଳୀ ସଂଗଠକ ତଥା ରାଜନୀତିକ ନେତାଭାବେ ।

ଅନନ୍ତ ପଟ୍ଟନାୟକଙ୍କର ଜୀବନ ଘଟଣାବହୁଳ । ତାଙ୍କର ଅନ୍ୟତମ ବନ୍ଧୁ ଥିଲେ କବି ସଚ୍ଚିଦାନନ୍ଦ ରାଉତରାୟ, ଗୁରୁଜଙ୍ଗ, ଖୋରଧା । ଏଣୁ ଖୋରଧାର ଗୁରୁଜଙ୍ଗରେ ସେମାନେ ଜନ ଆନ୍ଦୋଳନ କରିଥିଲେ ।

୧୯୩୮ ମସିହାରେ ଢେଙ୍କାନାଳର ପ୍ରଜାମଣ୍ଡଳ ବିଦ୍ରୋହ ଦମନ କରିବା ପାଇଁ ଫଉଜ ଆସିଲେ । ବ୍ରାହ୍ମଣୀ ନଦୀର ନୀଳକଣ୍ଠପୁର ଘାଟରେ ବାଜିରାଉତ (୧୨ବର୍ଷ ବୟସର ବାଳକ) ନମାନିବାରୁ ତାକୁ ଗୁଳି କରାଗଲା । ସେଇ ଘଟଣାରେ ବାଜିରାଉତ ସହ ଲକ୍ଷ୍ମଣ, ହୁରୁଷି, ଗୁରି, ନଟ ଓ ରଘୁ- ଏହିପରି ମୋଟ ଛଅଜଣ ଶହୀଦ ହେଲେ । ସେମାନଙ୍କ ଶବକୁ ୬ଟି ଶଗଡରେ କଟକ ରେଳଷ୍ଟେସନରୁ ଖାନନଗର ମଶାଣିରେ ପହଞ୍ଚାଇଲେ ଛଅଜଣ ଶଗଡିଆ । ପ୍ରକାଶଥାଉ କି, ସେତେବେଳେ କଟକ ଥିଲା ଓଡ଼ିଶାର ରାଜଧାନୀ । ଏବେ ସେଇ ଛଅଜଣ ଶଗଡିଆଙ୍କୁ ଚିହ୍ନିବା । ସେମାନେ ହେଲେ- ଅନନ୍ତ ପଟ୍ଟନାୟକ, ସଚ୍ଚି ରାଉତରାୟ (କବି ଡକ୍ଟର ସଚ୍ଚିଦାନନ୍ଦ ରାଉତରାୟ), ଗୋବିନ୍ଦ ମହାଂତି, ବିଶ୍ୱନାଥ ପଶାୟତ, ରବି ଘୋଷ ଓ ମୋତିଲାଲ ତ୍ରିପାଠୀ । ସେକାଳରେ କବିତା ଜରିଆରେ ଆନ୍ଦୋଳନକୁ ଜାରି କରି ରଖାଉଥିଲେ କବି ଅନନ୍ତ ପଟ୍ଟନାୟକ । ତାଙ୍କର ଅଗ୍ନିବର୍ଷୀ ରଚନା ଓ ଆନ୍ଦୋଳନରେ ଯୋଗଦାନ ପାଇଁ ତାଙ୍କୁ ଦୁଇବର୍ଷ ସଶ୍ରମ ଓ ଛଅମାସ ଅଶ୍ରମ କାରାଦଣ୍ଡ ଆଦେଶ ହୋଇଥିଲା ।

ଢେଙ୍କାନାଳ ଜେଲ ଓ ମଢି (ବର୍ତ୍ତମାନର କାମାକ୍ଷା ନଗର) ଜେଲ୍‌ରେ ତାଙ୍କୁ ଅକଥନୀୟ ଦଣ୍ଡ ଦିଆଯାଇଥିଲା । ଅନୁଗୋଳ ଜେଲରେ କଏଦୀ ଭାବେ ଥିବାବେଳେ ସେ ସାରସ୍ୱତ ସାଧନା ପାଇଁ ଅନୁକୂଳ ପରିବେଶ ପାଇ 'ରାବଣ' ନାଟକ ରଚନା କରିଥିଲେ । ଏହାଛଡା ସେ ପଞ୍ଚଶୀଳ, ସପ୍ତଶଯ୍ୟା ନାମକ ନାଟକ

ରଚନା କରିଥିଲେ । ୧୯୪୮-୪୯ରେ 'ସପ୍ତଶର୍ଯ୍ୟା' ନାଟକଟି ଚଳଚ୍ଚିତ୍ର ରୂପ ପାଇଥିଲା । ସେଥିରେ କବି ଅନନ୍ତ ଚିତ୍ରନାଟ୍ୟ, ସଂଳାପ, ସଙ୍ଗୀତ ରଚନା କରି ଚଳଚ୍ଚିତ୍ରର ସହ-ନିର୍ଦ୍ଦେଶକ ମଧ୍ୟ ଥିଲେ । ସଂସ୍କୃତ ନାଟକ ମୃଚ୍ଛକଟିକମ୍ (ଲେଖକ-ଶୁଦ୍ରକ)ର ଅନୁବାଦ କରି ତାହାର ନାମ ରଖିଥିଲେ 'ମାଟି ଶଗଡ' ।

କବି ଅନନ୍ତଙ୍କର କବିତା ପୁସ୍ତକ ମଧ୍ୟରୁ ଶାନ୍ତିଶିଖା, ସତ ହେଲା ମଣିଷର ସ୍ୱପ୍ନ, ଅଲୋଡା ଲୋଡା ଛାଇର ଛିଟା, ଅରତୁ ରତୁ, ଅବାନ୍ତର, କିଞ୍ଚିତ ଆଦି ରଷୀୟ ଭାଷାରେ ରଚିତ ଗର୍କୀଙ୍କର ଉପନ୍ୟାସ 'ଦ ମଦର'ର ଅନୁବାଦ ସେ କରିଥିଲେ ଓ ନାମ ରଖିଥିଲେ ମାଆ ।

ଶିଶୁସାହିତ୍ୟ ତଥା ପାଠ୍ୟପୁସ୍ତକର ବିଷୟ ସଂରଚନାରେ କବି ଅନନ୍ତ ପଟ୍ଟନାୟକ ଥିଲେ ଜଣେ ବିଶିଷ୍ଟ ବ୍ୟକ୍ତିତ୍ୱ । ଓଡ଼ିଶା ପାଠ୍ୟପୁସ୍ତକ ପ୍ରକାଶନ କମିଟିର ସମ୍ପାଦକ ଭାବେ ସେ ୧୯୬୮-୭୮ଯାଏ ପ୍ରାୟ ୧୧ବର୍ଷ କାଳ ଦାୟିତ୍ୱ ନିର୍ବାହ କରିଥିଲେ । ଓଡ଼ିଶା ସରକାରଙ୍କର ଶିକ୍ଷା ଓ ଯୁବକଲ୍ୟାଣ ବିଭାଗର ଶିଶୁ-କିଶୋର ପତ୍ରିକା 'ଶିଶୁଲେଖା'ର ସମ୍ପାଦନା ଦାୟିତ୍ୱ ୧୯୬୮-୧୯୭୩ ଯାଏ ସେ ବହନ କରିଥିଲେ । ସେକାଳରେ କଟକର ଆଲାମଚାନ୍ଦ ବଜାରର 'ଶିଶୁଲେଖା' ଅଫିସ ଥିଲା ଲେଖକମାନଙ୍କର ଏକ ଆକର୍ଷଣୀୟ ସ୍ଥଳ । ନିର୍ଭୁଲ ମୁଦ୍ରଣ, ଆକର୍ଷଣୀୟ ଚିତ୍ର ଓ ରୁଚିକର ପରିପାଟୀ ଥିଲା ତାଙ୍କ ସମ୍ପାଦନର ବୈଶିଷ୍ଟ୍ୟ । ତାଙ୍କ କଲମରୁ କେତେଗୋଟି ଉଦାହରଣ ପ୍ରଦାନ କରାଗଲା । ଯଥା-

ସୁଲୁସୁଲିଆ ପତର ନାଆ
ନାଇଁରେ ତା'ର ଛାତ
ଝିଣ୍ଟିକାଟି ଗୋଡରେ ତା'ର
ମାରୁଚି ବସି କାତ ।

କଥାଟିଏ କହେ ଠୁକୁରୁଠୁକୁ
ନିହାଣ ମୂନ ମୋ' ପଥର ଝରାଇ ଟୁକୁରୁଟୁକୁ
ଠେକୁଆ ଠେକୋଇ ଠୁକୁରୁଠୁକୁ

X X X

କଳଘରେ କଳ ଘୁରୁରୁଘୁରୁ
କାହିଁ ଫୁଲଛୁଇଁ ଫୁରୁରୁଫୁରୁ

X X X

ଚାଉଳ ପୋଷକେ
ମୁଢି ହୁଡୁମ ମୋ' ମୁସୁରୁମୁସୁ ।''

-ଶିଶୁଲେଖା, ସେପ୍ଟେମ୍ବର-୧୯୮୭ସଂଖ୍ୟା/ପୃଷ୍ଠା-୨

ସୁନୀଳ ଗ୍ରୀବାଟି ଢଳାଇ ଧୀରେ
ସୁମଂଜୁଳ ଚୂଳ ଦୋଳାଇ ଶିରେ
ସୁଢଳ ନୟନେ ଜୀମୂତେ ଦେଖି
ଛଳଛଳ ମନେ କଳାପ ଟେକି
ଶିଖୀଟିଏ ମାତି
ଫୁଲାଇ ଦେଇଛି ଛବିଳ ଛାତି ।

X X X

ଭାରତର ଯେତେ ଗୁଣ ଗରବ
ସାହସ ଶକତି ମୈତ୍ରୀ ବିଭବ
ନୃତ୍ୟ, ଗୀତ ଶିଳ୍ପ ରୂପ ଅତୁଳ
ସତେ ତାହାଠାରେ ହୋଇଛି ଠୁଳ
ସେଥିପାଇଁ କିବା
ଜାତୀୟପକ୍ଷୀ ସେ ଜାତିପ୍ରତିଭା

ଅନନ୍ତ ପଟ୍ଟନାୟକ-ରଚନା
ସମଗ୍ର(ପଞ୍ଚମଭାଗ)
ପୃଷ୍ଠା-୨୩୩-୩୪

''ଆଖିରେ ଆମର ଆକାଶର ନୀଳ
ଅଧରପୁଟରେ ଉଷାର ଅରୁଣ ଝଳି
କପୋଳେ ଆମର ଶିଶିର-ମୁକ୍ତା
ହୃଦୟେ ଆମର ମମତାର ମଧୁକଳି
କଳକଳ ହାସେ
ନିର୍ମଳ ଭାଷେ
ଆମେ ତୋଳି ଆଣୁ ସଞ୍ଜ ସକାଳେ
କଳ୍ପନା କୋଳେ ତାରା
ଆମେ ଖେଳିଯାଉ ମରମେ ମରମେ
ନୂଆ ଜୀବନର ଧାରା
ଚୂରି ଚୂରି ଯେତେ ବାଧା ଅର୍ଗଳ
ଯେତେ ଅନ୍ଧାର କାରା

ଅନନ୍ତ ପଟ୍ଟନାୟକ:
ରଚନା ସମଗ୍ର ପଞ୍ଚମଭାଗ
ପୃଷ୍ଠା-୨୬୧

କବିଙ୍କର ଅନ୍ୟତମ କବିତା 'ନଗର ଓ ପଲ୍ଲୀ'ରେ ଉଭୟଙ୍କ ଭିତରେ ବିବାଦ ଉପସ୍ଥିତ ହୋଇଛି । ମଣିଷ ଶେଷକୁ ନିଷ୍ପତ୍ତି ନେଇ ଉଭୟଙ୍କ ଭିତରେ ସମନ୍ୱୟ ଆଣି କହିଛି–

''ମୁହିଁ ଯେ ତୁମକୁ ସୃଷ୍ଟି କରେ
ମୋହରି ସ୍ୱପ୍ନ ସୁଖର ଆଶେ
ପଲ୍ଲୀ ନଗରୀ ମୋହରି ଗଳେ
ଦୁହେଁ କି ଦୋଳୁନ ବିଲୋଳ ହାସେ ?

X X X

ପଲ୍ଲୀ ନଗରୀ, ଦୁହେଁ ମୋ ସଖୀ
ଦୁହେଁ ମୋ' ଆଖିର ସ୍ନିଗ୍ଧ ତାରା
ମୋ' ଲାଗି କେତେ ଯେ ସୁଷମା ରାଶି
ଦୁହେଁ କି ଜାଳୁନ ପ୍ରୀତିର ଧାରା ??''

କବିଙ୍କର ଆଉ ଏକ ଶିକ୍ଷଣୀୟ କବିତା–''ତୁମେ ତ ଲୋକରେ ସାର'ରେ କଟକ ନଗରକୁ କାଠଯୋଡି ନଈର କୂଳଖାଇବାରୁ ରକ୍ଷା କରିବା ପାଇଁ ବାଇମୁଣ୍ଡି ନାମକ ଜଣେ ସାଧାରଣ ଶ୍ରମିକ ଓ ନୃପତି ମର୍କତ କେଶରୀଙ୍କ ମଧ୍ୟରେ ଘଟିଥିବା ବର୍ଣ୍ଣନା ପ୍ରତିଫଳିତ । ଜୀବନ ସାରା ଖଟି ସଞ୍ଚି ରଖିଥିବା ମୁଦ୍ରା ଥଳିକୁ ନୃପତିକୁ ଦେଇ କଟକ ନଗର ରକ୍ଷା ନିମନ୍ତେ ପ୍ରାର୍ଥନା କରିଛନ୍ତି ବାଇମୁଣ୍ଡି । ନିଜର ପରିଚୟ ଦେବାକୁ ଯାଇ କହିଛନ୍ତି କବିଙ୍କ ଭାଷାରେ–

'ବାଇଆ ଭିତରେ ଗଣା ମୁଁ କଟକେ
ବାଇମୁଣ୍ଡି ମୋର ନାମ
ନାହିଁ ଏଥି ମୋର ପାଦେ ଦେଲେ ଭୂଇଁ
ସାରା ଓଡ଼ିଶା ମୋ ଧାମ ।''

ରାଜାଙ୍କ ପ୍ରଶଂସା ଥିଲା–

'କିଏ କହେ ତୁମେ ଛାର ମୂଲିଆ ହେ
ତୁମେ ତ ଲୋକରେ ସାର ।
ତୁମ ଲାଗି ଆଉ କଟକବାସୀର
ରହିବନି ହାହାକାର ।

କବିତା ରଚନାରେ କବି ଅନନ୍ତ ଥିଲେ ଅନନ୍ୟ, ସ୍ମରଣୀୟ ତଥା ଜଣେ ଅମଳିନ ପ୍ରତିଭା । ଏଥିସହିତ ଶିଶୁ–କିଶୋର ଉପଯୋଗୀ ଉତ୍ସାହଧର୍ମୀ ଏକାଙ୍କିକା ମଧ୍ୟ ସେ (କବି ଅନନ୍ତ ପଟ୍ଟନାୟକ) ରଚନା କରିଥିଲେ । ସେଗୁଡିକ ହେଲା–

ଗୋଟିଏ ପରୀକ୍ଷା, ମହାବୀର ଶେରଓ୍ୱାନି, ହୀରାକୁଦ ଆଦି । କବି ଅନନ୍ତ ନିଜ ଗ୍ରାମରେ 'ଜନ ବିଦ୍ୟାମନ୍ଦିର' ନାମରେ ଏକ ହାଇସ୍କୁଲ ଗଢି ସେଥିରେ ପ୍ରଧାନ ଶିକ୍ଷକଭାବେ କାର୍ଯ୍ୟ କରୁଥିଲେ । ସେତେବେଳେ ନିଜ ରଚିତ ନାଟକ 'ରାବଣ' ପିଲାମାନଙ୍କ ଦ୍ୱାରା ମଞ୍ଚସ୍ଥ କରାଇଥିଲେ ।

ପିଲାଙ୍କ ପାଠ୍ୟ ପୁସ୍ତକରେ ବିଷୟବସ୍ତୁ ପାଇଁ ସେ ରଚନା କରିଥିଲେ ଅନେକ କିଛି । ସେଥିରୁ କେତୋଟିର ନାମ ତଳେ ଦିଆଗଲା । ଯଥା– ଜାତୀୟ ସମର ଶିକ୍ଷାର୍ଥୀ ବାହିନୀ, ସମୁଚିତ ଶିକ୍ଷା, ବିଜ୍ଞାନର ଗତି, ଆମର ପାର୍ଲିଆମେଣ୍ଟ, ତୁମେ ତ ଲୋକରେ ସାର (ବାଇମୁଣ୍ଡି କଥା) ସୁନାମୂଲ ସିନା... (ସୁନା ଓ ମାଟି ନେଇ ଆଲୋଚନା), ଏକତାର ରାହା, ଏହି ଜୟଗୀତି ଜନତା ଗାଏ, ମହାକାଶ ପଥେ ଆଦି ।

ଜୀବନ ରଚନା କ୍ଷେତ୍ରରେ କବି ଅନନ୍ତ ପଛରେ ପଡିନାହାନ୍ତି । ବରଂ ଲେଖିଛନ୍ତି– କବି ବଳଦେବ ରଥ, କବି ଗୋପାଳକୃଷ୍ଣ, ଗୋପବନ୍ଧୁ, ବାପୁଜୀ, ମନିଷୀ ଆରିଷ୍ଟଟଲ୍, ଆଇରିନ୍ କ୍ୟୁରି ଓ ଲୁଇପାଷ୍ଟୁର । 'କଥା ଓ କାହାଣୀ' ଲେଖିବାକୁ ଯାଇ ସେ ପୁରାତନ ଓ ନୂତନ କଥା ବସ୍ତୁକୁ ଆଧାର କରିଛନ୍ତି । ଯଥା– ବିକ୍ରମାଦିତ୍ୟଙ୍କ ଉଦାରତା, ବୃଦ୍ଧ ଓ ସନ୍ନ୍ୟାସୀ, ମୀନ ଓ ମନୁ, ବୁଦ୍ଧଦେବଙ୍କ ପଦେ କଥା, ବିକ୍ରମାଦିତ୍ୟଙ୍କ ଦାନ, ନିଜ ହାତରେ ନିଜ ଭାଗ୍ୟ, କୋଣାର୍କର ଜନ୍ମ, କୁଳର ଦୀପ ଲିଭାଅ ନାହିଁ, ଶତ୍ରୁ–ମିତ୍ର ଆଦି । ବର୍ତ୍ତମାନର ଚାହିଦା ଜ୍ଞାନ–ବିଜ୍ଞାନକୁ ନେଇ । ତାଙ୍କର ପୁସ୍ତକ 'ଜ୍ଞାନ–ବିଜ୍ଞାନ'ରେ ରହିଛି ପରମାଣୁ, ବିଭିନ୍ନ ଶିଳ୍ପର ରୂପରେଖ, ବିଜ୍ଞାନର ଗତି, ଅଙ୍ଗୁର, ସାମାଜିକ ସ୍ୱାସ୍ଥ୍ୟ, ଆଲୁମିନିୟମ୍, ବାଉଁଶ ଆଦି ଶୀର୍ଷକର ଲେଖା ।

ଛୋଟ ପିଲାଙ୍କ ମନକୁ ଛୁଇଁଲା ଭଳି ଶବ୍ଦ ଯୋଜନା ଦେଇ କବି ଅନନ୍ତ ଲେଖିଛନ୍ତି 'ଲାଲ ଟୁକୁଟୁକୁ ସ୍ୱରୂପଟିଏ, କିଏ ସେ ନିଏ' । ଅରଗଡ ବରଗଡ ଆଦି । ସେଥିରେ ରହିଛି ଅନେକ ଗୀତ । ଯଥା– 'କୁନୁମୁନି ଚିଠି ଲେଖେ ଚୁନୁମୁନି ଜାଣିବୁ', 'କରରେ କର ପଣ', ଝିଲିମିଲିକା ଜହ୍ନ ଉଇଁ, ଝରରେ ହସ, 'କୁହୁକୀ ଆମେ' ଆଦି । ସବୁଥିରେ ରହିଛି ପିଲାଙ୍କ ପାଇଁ ଆନନ୍ଦଦାୟକ ଶିକ୍ଷା । ଶିଶୁ ସାହିତ୍ୟକାର କବି ଅନନ୍ତ ପଟ୍ଟନାୟକ ଜଣେ ଅବିସ୍ମରଣୀୟ ବ୍ୟକ୍ତିତ୍ୱ–ଏହା ନିଃସନ୍ଦେହ ।

ପତ୍ରପତ୍ରିକା ସମ୍ପାଦନ ସହ ସାମ୍ବାଦିକତାରେ କବି ଅନନ୍ତ ଥିଲେ ଅନନ୍ୟ ପ୍ରତିଭା । 'ମୁକ୍ତିଯୁଦ୍ଧ', 'ଆଧୁନିକ' ପତ୍ରିକାର

ସଂପାଦନରେ ଥିଲା ତାଙ୍କର ସମ୍ପୃକ୍ତି । 'The Orissa Times' 'The Observer'ର ସମ୍ପାଦନା ସେ କରୁଥିଲେ । ସୋଭିଏତ୍ ଦେଶ ପତ୍ରିକାର ତଥ୍ୟ ବିଭାଗରେ ସେ ଦୁଇବର୍ଷ କାର୍ଯ୍ୟ କରିଥିଲେ । 'The Friends of the Soviet Union' ତାଙ୍କର ଆଉ ଏକ ରଚନା । 'ସମାଜ'ର ସମ୍ପାଦକୀୟ ବିଭାଗରେ ସେ ମଧ୍ୟ କିଛି ଦିନ କାର୍ଯ୍ୟ କରିଥିଲେ । 'ଝିଟିପିଟି କହେ', 'ଅଣାକାର' ଶୀର୍ଷକ ହେଲା କବି ଅନନ୍ତଙ୍କର ଚିନ୍ତା-ପ୍ରସୂତ ନାମାଙ୍କନ । ତାଙ୍କର ବିପୁଳ ସାହିତ୍ୟ ସୃଷ୍ଟି ପାଇଁ ସେ 'ସୋଭିଏତ ଦେଶ ପୁରସ୍କାର', ନେହେରୁ ପୁରସ୍କାର, 'ଅବାନ୍ତର' କବିତା ସଂକଳନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର, ୧୯୮୭ରେ ସାରଳା ପୁରସ୍କାର ଲାଭ କରିଥିଲେ । ସାହିତ୍ୟ ସଂରଚନା ପାଇଁ ବିଦେଶ ଭ୍ରମଣର ସୁଯୋଗ ମଧ୍ୟ ପାଇଥିଲେ । ଆଫ୍ରୋ ଏସିଆନ୍ ରାଇଟର୍ସ କନଫରେନ୍ସ୍‌ରେ ଯୋଗ ଦେବାର ନିମନ୍ତ୍ରଣ ରକ୍ଷା କରି ସେ ବହୁବିଧ ସମ୍ମାନର ଅଧିକାରୀ ହୋଇପାରିଥିଲେ । ଏହାଛଡା ପ୍ରଜାତନ୍ତ୍ରର ବିଷୁବ ସମ୍ମାନ, ପାଠକ ସଂସଦ ସମ୍ମାନ ଲାଭ କରିଥିଲେ । ତାଙ୍କର ସାନ ଭାଇ ଗୁରୁଚରଣ ପଟ୍ଟନାୟକ ମଧ୍ୟ ଜଣେ ବିଶିଷ୍ଟ ଲେଖକ ।

ପ୍ରଗତିଶୀଳ ସାମ୍ୟବାଦ ଚିନ୍ତାଧାରାର ଅନ୍ୟତମ ପ୍ରବକ୍ତା, କବିତାରେ ନୂତନ ମୁକ୍ତଛନ୍ଦ, ପ୍ରତୀକବାଦର ସ୍ରଷ୍ଟା, ଗଦ୍ୟ କବିତାରେ ନୂତନ ଶବ୍ଦ ସଂଯୋଜନା ଭରି ବାସ୍ତବବାଦକୁ କେବେ ଅନ୍ତର୍ମୁଖୀ ତ କେବେ ବହିର୍ମୁଖୀଭାବେ ପ୍ରତିଭାତ କରାଇଥିବା କବି ଅନନ୍ତ ପଟ୍ଟନାୟକଙ୍କର ଦେହାନ୍ତ ହୁଏ ଜୁନ୍ ୨୫, ୧୯୮୭ ମସିହାରେ । ସୌନ୍ଦର୍ଯ୍ୟ ବିଭୋର, ସମ୍ବେଦନଶୀଳ ମାନବବାଦୀ କବିଙ୍କର ରଚନା ମନେପଡେ ଏହିପରି-

'ଆମ୍ରମୁକୁଳ ଝରିଝରି ପଡେ
ପରାଣେ ଲିପ୍ତ ଦେହ ଗୋ
ଆଜି ମଳୟ ସାଥେ
ବରଷା ଡାକିଲା
ଅକାତରେ ଏ କି ସ୍ନେହ ଗୋ' ।

ସେକ୍ଟର-୨/୪୨୬,
ନୀଳାଦ୍ରି ବିହାର
ଭୁବନେଶ୍ୱର-୨୧

# ଶାରଦ ସ୍ୱାଗତ

ନିବେଦିତା ଭଞ୍ଜ



ଆସ...ଆସ ଗୋ ଜନନୀ ଅବତରି
ପ୍ରତୀକ୍ଷା କରିଛି ଶରତ ପାର୍ବଣ
ଶାନ୍ତି, ମୈତ୍ରୀ, ପ୍ରୀତି ଆଶା କରି... ।
ଦେଖ ଏ ପୃଥିବୀ ଲୁହ, ଲହୁ ଭେଦି
ଅଥଳ ସାଗରେ ହେଉ ଅଛି ଧନ୍ଦି...
ହେ ଜଗଜ୍ଜନନୀ ଦୁଷ୍ଟ ବିନାସିନୀ
କରନା ଉଦ୍ଧାର ପତିତ ପାବନୀ... ।
ଉଠାଅ ତ୍ରିଶୂଳ, ଖଣ୍ଡା ଓ ଖର୍ପର
ଦଶଭୁଜେ ଦଶ ପ୍ରହରଣ ଧର...
ବିନାଶ ହେଉ ମା' ପାପର ପକ୍ରିୟା
ବୁଲାଇ କଟାକ୍ଷ, ଖେଳା ଲୋଳ ଜୀହ୍ୱା



ଶେଷ କର ସବୁ ମିଥ୍ୟା ପ୍ରବଞ୍ଚନା
ଅସହ୍ୟ ହେଲାଣି ପାପୀଙ୍କ ଯାଚନା... ।
ଏପରି ଦୁର୍ଦ୍ଦିନେ ନହେଲେ ତୁ ସାହା
ତୁଟିବ ବିଶ୍ୱାସ ହସିବ ଦୁନିଆ...
ଶରତ ପରବ ତୋ ବିନା କି ହେବ
ଦୁଃଖୀ ଦୁଃଖ କହ କିଏ ଘୁଞ୍ଚାଇବ... ।
ଆର୍ତ୍ତର ସ୍ୱାଗତ ରକ୍ଷା କର ମାତ
ସନ୍ଥ ପାଳି ଦୁଷ୍ଟ ନିବାର ତୁରିତ
ଜଗତ ଗାଉ ଗୋ ମାତୃ ଆବାହନୀ
ଘେନ ମା' ଗୁହାରୀ ଜଗତ ବନ୍ଦିନୀ... ।

୮୬, ସତ୍ୟନଗର
ଭୁବନେଶ୍ୱର

# ଭାରତୀୟ ଧର୍ମ ଓ ଦର୍ଶନରେ ତନ୍ତ୍ର

**ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର**

ଭାରତୀୟ ଧର୍ମ ଓ ଦର୍ଶନ ନିଗମାଗମ ମୂଳକ । ଭାରତୀୟ ଧାର୍ମିକ ବିଚାରବୋଧ ତଥା ଏଥିରୁ ସମ୍ଭୂତ ଦାର୍ଶନିକ ତତ୍ତ୍ୱରେ ନିଗମ ଅର୍ଥାତ୍ ବେଦର ଯେତିକି ମହତ୍ତ୍ୱ ରହିଛି, ଆଗମ ବା ତନ୍ତ୍ରର ସେତିକି ଗୁରୁତ୍ୱ ରହିଛି । ବୈଦିକ ଦର୍ଶନରେ ଦାର୍ଶନିକ ବିଚାର ଯେପରି ଉଜ୍ଜ୍ୱଳ, ତାନ୍ତ୍ରିକ ଦର୍ଶନ ମଧ୍ୟ ସେହିପରି ସମୁଜ୍ଜ୍ୱଳ । ଗବେଷକଙ୍କର ବିଶ୍ୱାସ, ବେଦ ରଚନାର ବହୁପୂର୍ବରୁ ଭାରତ ଭୂଖଣ୍ଡରେ ତନ୍ତ୍ରଧାରା ଅବ୍ୟାହତ ରହିଥିଲା । ପ୍ରାଚୀନ ଭାରତର ତପୋନିଷ୍ଠ ମହର୍ଷିବୃନ୍ଦ ସେମାନଙ୍କ ସାଧନାର ସମ୍ବୋଧିରେ ବେଦର ମନ୍ତ୍ର ସମୂହକୁ ଦର୍ଶନ କଲେ ଏବଂ ଏହାକୁ କେନ୍ଦ୍ରକରି ବୈଦିକ ସଂସ୍କୃତିର ଉନ୍ମେଷ ଓ ବିକାଶ ଘଟିଥିଲା । ସେହି ସମୟରେ ସମାନ୍ତରାଳ ଭାବରେ ତନ୍ତ୍ର ସଂସ୍କୃତିର ବିକାଶ ମଧ୍ୟ ଘଟିଥିଲା । କିନ୍ତୁ ମୌଳିକ ଆର୍ଯ୍ୟମାନେ ତନ୍ତ୍ରର ପକ୍ଷପାତି ନଥିଲେ । ସେମାନେ ନିତ୍ୟ ପରିବର୍ତ୍ତନଶୀଳ ସଂସାରର ଅନ୍ତଃସ୍ଥଳରେ ବିଦ୍ୟମାନଥିବା ଏକରୂପତା ବା ଅନେକର ମଧ୍ୟର ଅନ୍ତର୍ନିହିତ ଥିବା ଏକତାର ଅନ୍ୱେଷଣରେ ଥିଲେ । ପରିବର୍ତ୍ତନଶୀଳ ବ୍ରହ୍ମାଣ୍ଡ ମଧ୍ୟରେ ଥିବା ଅପରିବର୍ତ୍ତନଶୀଳ ତତ୍ତ୍ୱାନୁସନ୍ଧାନରୁ ଜନ୍ମ ନେଇଥିଲା 'ବୈଦିକ ଦର୍ଶନ' । ଅପରପକ୍ଷରେ ତନ୍ତ୍ରସିଦ୍ଧଗଣ ସେହି ଅପରିବର୍ତ୍ତନଶୀଳ ତତ୍ତ୍ୱକୁ ପ୍ରତ୍ୟକ୍ଷ କରିବା କାମନାରେ ସାଧନାରେ ବ୍ରତୀ ଥିଲେ ଏବଂ ସେହି ସାଧନାରୁ ଜନ୍ମ ନେଲା 'ତନ୍ତ୍ରଦର୍ଶନ' । ପ୍ରାଥମିକ ପର୍ଯ୍ୟାୟରେ ତନ୍ତ୍ରସିଦ୍ଧମାନଙ୍କୁ ଆର୍ଯ୍ୟପ୍ରଚେତାବୃନ୍ଦ 'ବ୍ରାତ' ନାମରେ ଅଭିହିତ କରିଥିଲେ ହେଁ ପରବର୍ତ୍ତୀ କାଳରେ ଆର୍ଯ୍ୟ ଓ ବ୍ରାତ୍ୟମାନଙ୍କର ମହାମିଳନ ସଂଘଟିତ ହୋଇଥିଲା । ପରିଣାମ ସ୍ୱରୂପ ବ୍ରାତମାନଙ୍କର ଅଥର୍ବ ବେଦ ଚାରିବେଦର ଅନ୍ତର୍ଭୁକ୍ତ ହେଲା ଏବଂ ବୈଦିକ ଦର୍ଶନ ସହିତ ତନ୍ତ୍ରଦର୍ଶନର ମିଳନାତ୍ମକ ପ୍ରକ୍ରିୟାରେ ପବିତ୍ର ଭାରତବର୍ଷରେ ନିଗମାଗମମୂଳକ ଧର୍ମ, ସଂସ୍କୃତି ଓ ଦର୍ଶନର ଧାରା ପ୍ରବାହିତ ହୋଇଥିଲା । ଉଭୟ ଗୋଷ୍ଠୀର ସିଦ୍ଧ ସାଧକଗଣ ବେଦର ତତ୍ତ୍ୱସମୂହକୁ ତାନ୍ତ୍ରିକ ଧାରାରେ ପ୍ରତ୍ୟକ୍ଷ କରିବା ନିମିତ୍ତ ମନୋନିବେଶ କଲେ । ଏପରିକି ପରବର୍ତ୍ତୀକାଳରେ ଭାରତମାଟିରେ ଜନ୍ମ ନେଇଥିବା ଅବୈଦିକ ଦର୍ଶନ ଜୈନ ଓ ବୌଦ୍ଧ ମତବାଦୀମାନେ ମଧ୍ୟ ତନ୍ତ୍ରକୁ ଆପଣେଇ ନେଲେ । ଗୁରୁତ୍ୱପୂର୍ଣ୍ଣ ହେଉଛି, ଭାରତରେ ପ୍ରାଗ୍-ବୈଦିକ କାଳରୁ ପ୍ରବାହିତ ଆଦିବାସୀ ଧର୍ମଧାରାରେ ଥିବା ତାନ୍ତ୍ରିକ ଉପାସନା ନିଗମାଗମ ମିଳନାତ୍ମକ ପ୍ରକ୍ରିୟାର ସ୍ପର୍ଶରେ ଏକ ଭବ୍ୟରୂପ ଧାରଣ କଲା । ଅନେକ ଆଦିବାସୀ ତନ୍ତ୍ରାଚାର୍ଯ୍ୟ ମୌଳିକ ଉପାସନାରୁ ବିଚ୍ୟୁତ ହୋଇନଥିଲେ ହେଁ ଅନେକ ଆଦିବାସୀ ତନ୍ତ୍ରପୀଠ ନବ୍ୟ ତନ୍ତ୍ରଧାରାର ରୂପ ଗ୍ରହଣ କଲା । ସଂକ୍ଷେପରେ ଉଲ୍ଲେଖ କଲେ, ବୈଦିକ, ଶୈବ, ଶାକ୍ତ, ବୈଷ୍ଣବ, ନାଗ, ଜୈନ, ବୌଦ୍ଧ ଓ ଆଦିବାସୀ ପ୍ରତ୍ୟେକ ଧର୍ମଧାରାରେ ତନ୍ତ୍ରାଚାରର ଅନୁପ୍ରବେଶ ଘଟି ତାନ୍ତ୍ରିକ ସାଧନା ପଦ୍ଧତି ଓ ତନ୍ତ୍ରମୂଳକ ଦାର୍ଶନିକ ସିଦ୍ଧାନ୍ତ ଭାରତୀୟ ଧର୍ମ ଓ ଦର୍ଶନର ଅଙ୍ଗୀଭୂତ ହୋଇଗଲା । ମହନୀୟତା ହେଉଛି, ଏହି ପରିବର୍ତ୍ତିତ ପ୍ରକ୍ରିୟାରେ ଅଧିକାଂଶ ତନ୍ତ୍ର ଉପାସନାର ମୂଳଭିତ୍ତି ବୈଦିକ ସିଦ୍ଧାନ୍ତ ସମନ୍ୱିତ ହୋଇ ତନ୍ତ୍ର ଉପାସନା ଏକ ସୁଗମ, ସରଳ ଓ ସହଜ ସାଧନା ରୂପେ ପ୍ରତିଭାତ ହୋଇଥିଲା ।

ତନ୍ତ୍ର ଶବ୍ଦ ତନୁବିସ୍ତାର ଧାତୁ ଏବଂ ଷ୍ଟନ୍ ପ୍ରତ୍ୟୟରୁ ଉତ୍ପନ୍ନ । ଏହାର ଅର୍ଥ ହେଉଛି ଯେଉଁ ଉପାସନା ପଦ୍ଧତି ବା ଶାସ୍ତ୍ରାଧ୍ୟୟନ ଦ୍ୱାରା ଜ୍ଞାନର ବିସ୍ତାର ଘଟେ ଓ ସାଧନା ବ୍ୟାପକ ହୁଏ, ତାହାହିଁ 'ତନ୍ତ୍ର' । ସେଥିନିମିତ୍ତ କୁହାଯାଇଛି, 'ତନ୍ୟତେ ବିସ୍ତାର୍ଯ୍ୟତେ ଜ୍ଞାନମନେନ, ଇତି ତନ୍ତ୍ରମ୍' । 'ଅମରକୋଷ'ରେ ତନ୍ତ୍ରର ଅର୍ଥ ମୁଖ୍ୟ ବିଷୟ, ସିଦ୍ଧାନ୍ତ ଅଥବା ଶାସ୍ତ୍ର ବୋଲି କୁହାଯାଇଛି । ମହର୍ଷି ପାଣିନିଙ୍କ ଅଷ୍ଟାଧ୍ୟାୟୀ ମାନ୍ୟତାରେ ତନ୍ତ୍ର ଶବ୍ଦର ଅର୍ଥ ତୁରନ୍ତ

ନିର୍ମାଣ କରିବା । ପତଞ୍ଜଳିଙ୍କ 'ମହାଭାଷ୍ୟ'ରେ ତନ୍ତ୍ରର ଅର୍ଥ ଶାସ୍ତ୍ର ବା ସିଦ୍ଧାନ୍ତ । କୌଟିଲ୍ୟ ଓ ଶଙ୍କରାଚାର୍ଯ୍ୟ ଏହି ଅର୍ଥ ହିଁ ଗ୍ରହଣ କରିଛନ୍ତି । ଅଧିକନ୍ତୁ, ଶଙ୍କରାଚାର୍ଯ୍ୟ 'ସାଂଖ୍ୟ'କୁ ତନ୍ତ୍ର ନାମରେ ଅଭିହିତ କରିଯାଇଛନ୍ତି । ମହାଭାରତରେ ନ୍ୟାୟ, ଧର୍ମଶାସ୍ତ୍ର, ଯୋଗଶାସ୍ତ୍ର ଆଦିର ପ୍ରୟୋଗ ନିମିତ୍ତ ତନ୍ତ୍ର ଶବ୍ଦ ବ୍ୟବହାର କରାଯାଇଛି ।

ନ୍ୟାୟ ତନ୍ତ୍ରାଣ୍ୟ ନେକାନି ତୈସ୍ତୈରୁକ୍ତାନି ବାଦିଭିଃ
ଯତୟୋ ଯୋଗତନ୍ତ୍ରେଷୁ ଯାନ୍ ସ୍ତୁବନ୍ତି ଦ୍ୱିଜାତୟଃ !

ମହାଭାରତ ସିଦ୍ଧାନ୍ତ ଅନୁଯାୟୀ, ଯେଉଁ ଗ୍ରନ୍ଥ ସମୂହରେ ଯନ୍ତ୍ରମନ୍ତ୍ରାଦି ସମନ୍ୱିତ ଏକ ବିଶିଷ୍ଟ ମାର୍ଗର ଉପଦେଶ ପ୍ରଦତ୍ତ, ସେହି ଗ୍ରନ୍ଥ ହିଁ ତନ୍ତ୍ର । ତନ୍ତ୍ରର ଅପର ନାମ 'ଆଗମ' । ତନ୍ତ୍ରାଚାର୍ଯ୍ୟ ପଣ୍ଡିତ ବାଚସ୍ପତି ମିଶ୍ର ସ୍ୱରଚିତ 'ତତ୍ତ୍ୱ ବୈଶାରଦୀ'ରେ ଆଗମର ବାଖ୍ୟା କରିବାକୁ ଯାଇ ଉଲ୍ଲେଖ କରିଛନ୍ତି–

'ଆଗଛନ୍ତି ବୁଦ୍ଧିମାରୋହନ୍ତି ଯସ୍ମାଦ୍ ଅଭ୍ୟୁଦୟନିଃ ଶ୍ରେସୋପାୟାଃ ସ ଆଗମଃ' ଅର୍ଥାତ୍ ଯେଉଁ ଶାସ୍ତ୍ରଦ୍ୱାରା ଭୋଗ ଓ ମୋକ୍ଷ ଉଭୟର ଉପାୟ ବୁଦ୍ଧିକୁ ଆସେ, ତାହାକୁ ଆଗମ କହନ୍ତି । ଏଥିରୁ ହୃଦ୍‌ବୋଧ ହୁଏ, କର୍ମ, ଉପାସନା ଓ ଜ୍ଞାନର ସ୍ୱରୂପ ହେଉଛି ବେଦ ବା ନିଗମ ଏବଂ ଏହାର ସାଧନଭୂତ ଉପାୟ ହିଁ ତନ୍ତ୍ର ବା ଆଗମ । ସୂକ୍ଷ୍ମ ଦୃଷ୍ଟିକୋଣରୁ ବିଚାର କଲେ ତନ୍ତ୍ର ଏକ ବ୍ୟାପକ ଶବ୍ଦ । ସାଧାରଣ ଦୃଷ୍ଟିରେ ଶାସ୍ତ୍ର, ସିଦ୍ଧାନ୍ତ, ଅନୁଷ୍ଠାନ, ଉପାସନା ପଦ୍ଧତି ଓ ବିଜ୍ଞାନ ବିଷୟକ ଗ୍ରନ୍ଥ ହିଁ ତନ୍ତ୍ର । ଭାରତୀୟ ପ୍ରଚେତା ଓ ସାଧକବୃନ୍ଦଙ୍କ ଦ୍ୱାରା ତନ୍ତ୍ର ଶବ୍ଦ ବ୍ୟାପକ ଅର୍ଥରେ ବ୍ୟବହୃତ । ତାନ୍ତ୍ରିକ ବିଚାରବୋଧରେ ତନ୍ତ୍ରକୁ ମୋକ୍ଷଦାତା ରୂପେ ମାନ୍ୟତା ପ୍ରଦାନ କରାଯାଇଛି । ଶୈବସିଦ୍ଧାନ୍ତର ତନ୍ତ୍ରଶାସ୍ତ୍ର 'କାମିକ ଆଗମ'ରେ କୁହାଯାଇଛି–

ତନୋତି ବିପୁଳାନର୍ଥାନ୍ ତତ୍ତ୍ୱମନ୍ତ୍ରସମନ୍ୱିତାନ୍,
ତ୍ରାଣଂଚ କୁରୁତେ ଯସ୍ମାଦ୍ ତନ୍ତ୍ରମିତ୍ୟଭିଧୀୟତେ ।

ଭାରତୀୟ ଆଧ୍ୟାତ୍ମିକ ସାହିତ୍ୟରୁ ତନ୍ତ୍ରର ପ୍ରାଚୀନତା ସୁସ୍ପଷ୍ଟ । ବିଶ୍ୱର ସର୍ବପ୍ରାଚୀନ ଗ୍ରନ୍ଥ ଋଗ୍‌ବେଦରେ ତନ୍ତ୍ର ଶବ୍ଦର ଉଲ୍ଲେଖ ରହିଛି–

'ଇମେ ଯେ ନାର୍ବାଙଂନ ପରଶ୍ଚରନ୍ତି ନ ବ୍ରାହ୍ମଣା ସୋ,
ନ ସୁତେକରାସଃ । ତ ଏତେ ବାଚମଭିପଦ୍ୟ ପାପୟା
ସିରୀସ୍ତତନ୍ତ୍ରଂ ତନ୍ୱତେ ଅପ୍ରଜ୍ଞୟଃ ।''

(ଋ–୧୦।୭୧।୯)

ଋଗ୍‌ବେଦ ବ୍ୟତୀତ 'ଅଥର୍ବବେଦ' ଓ 'ବ୍ରାହ୍ମଣ' ଗ୍ରନ୍ଥମାନଙ୍କରେ ତନ୍ତ୍ରର ଉଲ୍ଲେଖ ରହିଛି । ଜୈମିନୀଙ୍କ ପୂର୍ବମୀମାଂସା ସୂତ୍ର ଉପରେ କୁମାରୀଲ ଭଟ୍ଟଙ୍କ ରଚିତ ଶାବର ଭାଷ୍ୟରେ ତନ୍ତ୍ରବାର୍ତ୍ତିକ ପ୍ରକରଣ ବିଦ୍ୟମାନ । ଏଥିରୁ ଉପଲବ୍ଧି ହେଉଛି ବହୁ ପ୍ରାଚୀନ କାଳରୁ ତନ୍ତ୍ରର ମହତ୍ତ୍ୱ ରହିଛି । ବେଦବର୍ଣ୍ଣିତ ଜ୍ଞାନ, ଭକ୍ତି ଓ କର୍ମର ସାଧନ ପ୍ରଣାଳୀ ହିଁ ପ୍ରାଚୀନ ଯୁଗରୁ 'ତନ୍ତ୍ର' ନାମରେ ଅଭିବ୍ୟକ୍ତ । ଏ ସମ୍ପର୍କରେ ଗୋଟିଏ ଉଦାହରଣ ପ୍ରଦାନ କରିବା ସମୀଚୀନ ବୋଧ ହୁଏ । ଅଦ୍ୱୈତ ବେଦାନ୍ତର ମୂଳଭିତ୍ତି ହେଉଛି 'ଅଦ୍ୱୈତ ତତ୍ତ୍ୱ' । ଏହି 'ଅଦ୍ୱୈତ ତତ୍ତ୍ୱ'ର ବ୍ୟାବହାରିକ ଯୋଜନା ଶାକ୍ତତନ୍ତ୍ରରେ କରାଯାଇଛି । ସରଳ ଭାଷାରେ କହିଲେ, 'ବୈଦିକ ତତ୍ତ୍ୱର ବ୍ୟାବହାରିକ ଧାରା ହେଉଛି ତନ୍ତ୍ର' । ଜୀବାତ୍ମା ସହିତ ପରମାତ୍ମାଙ୍କର ଅଭେଦ ସିଦ୍ଧି ଶାକ୍ତଧର୍ମର ଧ୍ୟେୟ । ତାନ୍ତ୍ରିକ ଉପାସନାରେ ସାଧକ ଉପାସ୍ୟ ଦେବତାଙ୍କ ସହିତ ତଦାତ୍ମ୍ୟ ସ୍ଥାପନ କରିଥାଏ । ଶାକ୍ତଧର୍ମ ଅଦ୍ୱୈତ ବାଦର ସାଧନ ମାର୍ଗ । ଶାକ୍ତ ତାନ୍ତ୍ରିକଙ୍କ ସାଧନାରେ ଅଦ୍ୱୈତ ବାଦ ହିଁ ଅନୁସୃତ ହୋଇଥାଏ । ଶାକ୍ତ ତନ୍ତ୍ରାଚାର୍ଯ୍ୟଙ୍କ ମତରେ–

ଅହଂ ଦେବୀ ନଚାନ୍ୟୋସ୍ମି ବ୍ରହ୍ମୈବାହଂ ନ ଶୋକଭାକ୍,
ସଚ୍ଚିଦାନନ୍ଦ ରୂପୋସ୍ମିଂ ନିତ୍ୟମୁକ୍ତ ସ୍ୱଭାବବାନ୍ ।

ଶାକ୍ତମାନଙ୍କର ଆଧ୍ୟାତ୍ମିକ କଳ୍ପନାନୁସାରେ ପରଂବ୍ରହ୍ମ ନିର୍ଗୁଣ, ନିରାକାର, ଆଦ୍ୟନ୍ତ ବିରହିତ ଓ ସଚ୍ଚିଦାନନ୍ଦ ସ୍ୱରୂପ । ତନ୍ତ୍ର ଶାସ୍ତ୍ର ସମୂହରେ ସେହି ପରମ ତତ୍ତ୍ୱକୁ ମାତୃରୂପରେ ସ୍ୱୀକାର କରାଯାଇଛି । ତନ୍ତ୍ରମାନଙ୍କର ଶକ୍ତିର କଳ୍ପନା ବୈଦିକ ସିଦ୍ଧାନ୍ତ ସମୂହ ଉପରେ ପ୍ରତିଷ୍ଠିତ । ଋଗ୍‌ବେଦ ରଚନା କାଳରେ ମଧ୍ୟ ଶାକ୍ତତନ୍ତ୍ରର ସ୍ୱରୂପ ଓ ସନ୍ଦେଶ ଉପଲବ୍ଧି ନିମିତ୍ତ ମହର୍ଷି ଅମ୍ଭୃଣଙ୍କ କନ୍ୟା ବାକ୍ ବୈଦିକ ସିଦ୍ଧାନ୍ତର ସଂବୋଧି ଲାଭ କରିଥିଲେ । ସେହି ତନ୍ତ୍ର ସଂବୋଧି ବାଗାମ୍ଭୃଣୀ ସୂକ୍ତ ନାମରେ ଖ୍ୟାତ । ଏହି ସୂକ୍ତରେ ଯେଉଁ ଶକ୍ତିତତ୍ତ୍ୱର ଅବତାରଣା କରାଯାଇଛି, ତାହାହିଁ 'ଶାକ୍ତତନ୍ତ୍ର'ର ମୂଳଭିତ୍ତି । ବେଦ ସ୍ୱକୀୟ ସିଦ୍ଧାନ୍ତ ତଥା କ୍ରିୟାକଳାପକୁ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ତିନି ସମ୍ପ୍ରଦାୟ ମଧ୍ୟରେ ସୀମିତ କରିଥିବା ବେଳେ ତନ୍ତ୍ର ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୁଦ୍ର ଓ ସ୍ତ୍ରୀମାନଙ୍କ ନିମିତ୍ତ ଦ୍ୱାର ଉନ୍ମୁକ୍ତ ରଖିଛି । ସଂକ୍ଷେପରେ କହିଲେ, 'ବେଦ ଯେଉଁଠାରେ ଜ୍ଞାନ ପ୍ରଧାନ, ତନ୍ତ୍ର ସେହିଠାରେ କ୍ରିୟା ପ୍ରଧାନ । ତନ୍ତ୍ର ଏକ ସାର୍ବଜନୀନ ଉପାସନା ପଦ୍ଧତି ହୋଇଥିଲେ ହେଁ ଏହାର ଆଚାର ଏକ ରହସ୍ୟପୂର୍ଣ୍ଣ ବ୍ୟାପାର । ଏହି ରହସ୍ୟ କେବଳ ଗୁରୁଶିଷ୍ୟ ମଧ୍ୟରେ ସୀମୀତ । ତେଣୁ ତାନ୍ତ୍ରିକ ପୂଜାପଦ୍ଧତି କତିପୟ ନିର୍ଦ୍ଦିଷ୍ଟ

ସାଧକ ସଂଗୋପନରେ କରିଥାନ୍ତି । ବୈଦିକ ଯୁଗରେ ମଧ୍ୟ ତନ୍ତ୍ର ଉପାସନା ଏକ ଗୁପ୍ତସାଧନ ପଦ୍ଧତିର ମର୍ଯ୍ୟାଦାରେ ଅଧିଷ୍ଠିତ ଥିଲା । କେବଳ ଯେଉଁ ସାଧକମାନେ ଗୁରୁଙ୍କ ଦୃଷ୍ଟିରେ ସାଧନ କରିବାକୁ ଯୋଗ୍ୟ, ସେହିମାନେ ହିଁ ତାନ୍ତ୍ରିକ ସାଧନା କରୁଥିଲେ । ବେଦାନ୍ତ ବା ଉପନିଷଦ୍‌ରେ ଅନେକ ଗୁପ୍ତବିଦ୍ୟାର ଆଧାରଭିତ୍ତି ତାନ୍ତ୍ରିକ ପ୍ରତୀତ ହୁଏ । ବିଭିନ୍ନ ଉପନିଷଦ୍‌ରେ ବର୍ଣ୍ଣିତ ପଞ୍ଚାଗ୍ନି ବିଦ୍ୟା ଏକ ଗୁପ୍ତ ସାଧନ ପଦ୍ଧତି ରୂପେ ପ୍ରତିଭାତ । ଉପନିଷଦ୍ ବର୍ଣ୍ଣିତ ମଧୁବିଦ୍ୟା, ମଧୁନାଡୀ, ଗୁହ୍ୟବିଦ୍ୟା, ମଧୁକର, ପଞ୍ଚମ ଅମୃତ ପ୍ରଭୃତି ଯଥାର୍ଥରେ ତନ୍ତ୍ର ଉପାସନାର ଦିବ୍ୟସ୍ୱରୂପ ବ୍ୟତୀତ ଅନ୍ୟକିଛି ନୁହେଁ ।

ପ୍ରାଗ୍ ବୈଦିକ ଯୁଗ ଓ ବୈଦିକ ଯୁଗରେ ତନ୍ତ୍ର ଉପାସନା ଜନମାନସରେ ବିଶେଷ ପ୍ରଭାବ ବିସ୍ତାର କରିଥିଲା । ତନ୍ତ୍ର ସାଧନା ମାଧ୍ୟମରେ ଭୋଗ ଓ ମୋକ୍ଷ ଉଭୟ ପ୍ରାପ୍ତି ହେଉଥିବାରୁ ଅନେକ ସାଧକ ତନ୍ତ୍ର ଉପାସନା ପ୍ରତି ଆକୃଷ୍ଟ ହୋଇଥିଲେ । ଲୋକ ବିଶ୍ୱାସ ସୃଷ୍ଟି ହୋଇଥିଲା ଯେ, ସତ୍ୟଯୁଗରେ ବୈଦିକ ଉପାସନା, ତ୍ରେତୟା ଯୁଗରେ ସ୍ମାର୍ତ୍ତ ଉପାସନା, ଦ୍ୱାପରରେ ପୁରାଣ ସମ୍ମତ ଉପାସନା ଏବଂ କଳିଯୁଗରେ ତାନ୍ତ୍ରିକ ଉପାସନା ଅଶେଷ ମୋକ୍ଷ ଦାୟକ । 'କୁଳାର୍ଣ୍ଣବ ତନ୍ତ୍ର'ରେ ଉଲ୍ଲେଖ ଅଛି ।

କୃତେ ଶ୍ରୁତ୍ୟକ୍ତି ଆଚାର ସ୍ତେତ୍ରାୟାଂ ସ୍ମୃତିସମ୍ଭବଃ,
ଦ୍ୱାପରେ ତୁ ପୁରାଣୋକ୍ତଃ କଳାବାଗମ ସମ୍ମତଃ ।

ସାଂସାରିକ ଦୁଃଖବିନାଶ ଓ ମୁକ୍ତି ନିମିତ୍ତ ମନୁଷ୍ୟ ଅନାଦି କାଳରୁ ଅଭିଳାଷ ପୋଷଣ କରିଆସିଛି । ସତ୍ୟଯୁଗରେ ସତ୍ୟଶାନ୍ତି ଦୟାକ୍ଷମା ପ୍ରଭୃତି ସଦ୍‌ଗୁଣାବଳୀର ପ୍ରାବଲ୍ୟ ହେତୁ ଦୁଃଖର ମାତ୍ରା କମ୍ ରହିଥିଲା । ତେଣୁ ମାନବଗଣ ବୈଦିକ ଉପାସନା ଅର୍ଥାତ୍ କେବଳ ତତ୍ତ୍ୱ ଅନୁସନ୍ଧାନମୂଳକ ଉପାସନା ମାଧ୍ୟମରେ ମୁକ୍ତିଲାଭ କରିପାରୁଥିଲେ । ତ୍ରେତୟା ଯୁଗରେ ଅନେକ ସ୍ମୃତି ଶାସ୍ତ୍ର ରଚନା ହେଲା । ଏହି ଯୁଗରେ ବୈଦିକ ଉପାସନାର ବିରୋଧ କରୁଥିବା ଦାର୍ଶନିକ ସତ୍ତା ସୃଷ୍ଟି ହେବାରୁ ବୈଦିକ ମତ ପ୍ରତିଷ୍ଠା ନିମିତ୍ତ କେତେକ ପ୍ରଚେତା ସ୍ମୃତିଶାସ୍ତ୍ର ରଚନା କଲେ ତଥା ସମାଜରେ ସ୍ମୃତି ସମ୍ମତ ଉପାସନାର ଧାରା ପ୍ରବାହିତ ହେଲା । ଦ୍ୱାପର ଯୁଗ ସମୟରୁ ବେଦର ପ୍ରତିପାଦ୍ୟ ତତ୍ତ୍ୱକୁ ସାର୍ବଜନୀନ କରିବା ନିମିତ୍ତ ମହର୍ଷି ବ୍ୟାସଦେବ ବହୁ ପୁରାଣ ସହିତ ମହାଭାରତ ରଚନା କଲେ । ଫଳରେ ସମାଜରେ ପୁରାଣୋକ୍ତ ଉପାସନାର ପ୍ରାବଲ୍ୟ ବୃଦ୍ଧି ପାଇଲା । କଳିଯୁଗରେ ଧର୍ମର ଅଧୋଗତି ଫଳରେ ମାନବିକତାର ଅବକ୍ଷୟ ଘଟିଲା । ସଂସାରରୁ ଧର୍ମ, ସତ୍ୟ, ନ୍ୟାୟ, ସଦ୍‌ଭାବ, ସହାନୁଭୂତି, ଶାନ୍ତି, ପ୍ରୀତି, ଶ୍ରଦ୍ଧା, ବିଶ୍ୱାସ ଓ ସମନ୍ୱୟ ଧୀରେଧୀରେ ବିଲୁପ୍ତ ହେବାକୁ ଲାଗିଲା । ଏହି ପରିପ୍ରେକ୍ଷୀରେ କଳିଯୁଗରେ ତନ୍ତ୍ରଶାସ୍ତ୍ର ନିର୍ଦ୍ଦେଶିତ ଉପାସନା ପ୍ରାଧାନ୍ୟ ଲାଭ କଲା । କଳିଯୁଗରେ ଧର୍ମର ଅଧୋଗତି ଫଳରେ ମନ କଳୁଷିତ, ଚିନ୍ତା ଅସ୍ଥିର, ମତି ଚଞ୍ଚଳ, ଶିକ୍ଷା ବିବର୍ଣ୍ଣ, ଖାଦ୍ୟଦୂଷିତ, ପରିବେଶ ଦୁଃସହ, ସମୟ ଦାରୁଣ, ପ୍ରବୃତ୍ତି ନୀଚ, ପ୍ରକୃତି ବିଷର୍ଣ୍ଣ, ବସୁଧା ବିପନ୍ନ ଏବଂ ସତ୍ୟ ନ୍ୟାୟ ତମସାଚ୍ଛନ୍ନ ହୋଇ ସମାଜର ଧର୍ମ ଉପଦେଷ୍ଟା ବ୍ରାହ୍ମଣଗଣ ପଥଭ୍ରଷ୍ଟ ହୋଇଗଲେ । 'ବାରହୀ ତନ୍ତ୍ର'ରେ କୁହାଯାଇଛି ।

ଅଶୁଦ୍ଧାଃ ଶୂଦ୍ରକର୍ମାଣୋ ବ୍ରାହ୍ମଣାଃ କଳିସମ୍ଭବାଃ,
ତେଷାମାଗମ ମାର୍ଗେଣ ସିଦ୍ଧିର୍ନ ଶ୍ରୋତ କର୍ମଣି ।

ଅର୍ଥାତ୍, କଳିଯୁଗରେ ଜନ୍ମନେଇଥିବା ବ୍ରାହ୍ମଣମାନେ କଳୁଷିତ ହୋଇ ଶୁଦ୍ରଙ୍କ ସଦୃଶ ଅଜ୍ଞାନୀ ଓ ଅପବିତ୍ର ଅଟନ୍ତି । ତେଣୁ ସେମାନେ ବେଦମାର୍ଗରେ ସିଦ୍ଧିଲାଭ କରିନପାରି ତନ୍ତ୍ରମାର୍ଗରେ ସିଦ୍ଧିଲାଭ କରିଥାନ୍ତି । ବୈଦିକ ଉପାସନା ସଭିଏଁ କରିପାରିବା ସମ୍ଭବ ନୁହେଁ, କିନ୍ତୁ ତନ୍ତ୍ର ହେଉଛି ଏକ ସାର୍ବଜନୀନ ଉପାସନା ପଦ୍ଧତି । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୁଦ୍ର ସଭିଏଁ ତନ୍ତ୍ର ଉପାସନା କରିପାରିବେ । ଏହି ଦୃଷ୍ଟିକୋଣରେ କଳିଯୁଗରେ ତନ୍ତ୍ର ଉପାସନାକୁ ଶ୍ରେଷ୍ଠ ଉପାସନା ଓ ମୋକ୍ଷ ତଥା ଐଶ୍ୱର୍ଯ୍ୟ ଉଭୟ ପ୍ରାପ୍ତିର ଶ୍ରେୟମାର୍ଗ କୁହାଯାଇଛି ।

ତନ୍ତ୍ରଶାସ୍ତ୍ରମାନଙ୍କରେ ଶିବଙ୍କୁ ତନ୍ତ୍ରର ଉଦ୍‌ଗାତା ବୋଲି କୁହାଯାଇଛି । ମହାନିର୍ବାଣତନ୍ତ୍ରର କଥନ ଅନୁଯାୟୀ କଳିହତ ମାନବ ଜାତିର କଲ୍ୟାଣ କାମନାରେ ଶଙ୍କର ପାଞ୍ଚମୁଖରେ ପାର୍ବତୀଙ୍କୁ ତନ୍ତ୍ରର ଉପଦେଶ ପ୍ରଦାନ କରିଥିଲେ । ଏହି ତନ୍ତ୍ରରେ ମଧ୍ୟ କୁହାଯାଇଛି 'ବିନା ହଠଗମର୍ମାର୍ଗେଣ କଳୌ ନାସ୍ତି ଖତିପ୍ରିୟେ' ଅର୍ଥାତ୍ କଳିଯୁଗରେ ତନ୍ତ୍ରମାର୍ଗ ଭିନ୍ନ ଅନ୍ୟ ଗତି ନାହିଁ । କଳିଯୁଗର ମେଧାମେଧ ବିଚାରରହିତ ମାନବର ଭୋଗ ଓ ମୋକ୍ଷ ନିମିତ୍ତ ଶିବଙ୍କ ପଞ୍ଚମୁଖରୁ ତନ୍ତ୍ର ନିର୍ଗତ ହୋଇ ବାସୁଦେବଙ୍କର ସିଦ୍ଧାନ୍ତ ରୂପେ ଖ୍ୟାତ ହୋଇଥିବାରୁ ଏହାର ନାମ ଆଗମ ।

ଆଗତଂ ଶିବ ବକ୍ତ୍ରେଭ୍ୟୋ ଗତଂ ଚ ଗିରିଜା ଶ୍ରୁତୌ,
ମତଂ ଚ ବାସୁଦେବସ୍ୟ ତସ୍ମାଦାଗମ ଉଚ୍ୟତେ ।

ଭଗବାନ ଶଙ୍କରଙ୍କ ପଞ୍ଚମୁଖରୁ ନିର୍ଗତ ହୋଇଥିବାରୁ ତନ୍ତ୍ର ପାଞ୍ଚଭାଗରେ ବିଭକ୍ତ । ସେଗୁଡିକ ହେଉଛି ପୂର୍ବାମ୍ନାୟ, ଦକ୍ଷିଣାମ୍ନାୟ, ପଶ୍ଚିମାମ୍ନାୟ, ଉତ୍ତରାମ୍ନାୟ ଓ ଉର୍ଦ୍ଧ୍ୱାମ୍ନାୟ, ନିମ୍ନତର ଓ ଗୁପ୍ତମୁଖରୁ ଉତ୍ପନ୍ନ ଅର୍ଦ୍ଧାମ୍ନାୟକୁ ଷଷ୍ଠ ଆଗମ ଭାବରେ ସ୍ୱୀକାର

କରାଯାଏ । କୁଳାର୍ଣ୍ଣବ ତନ୍ତ୍ରର ତୃତୀୟ ଉଲ୍ଲାସରେ ଏହି ଆମ୍ନାୟମାନଙ୍କର ବର୍ଣ୍ଣନା ରହିଅଛି । ତନ୍ତ୍ରସିଦ୍ଧ ହେବା ନିମିତ୍ତ ମନ୍ତ୍ର, ସ୍ଥିତି ଓ ଭକ୍ତି, ସଂହାର, କର୍ମ ଓ ଅନୁଗ୍ରହ ଉପରେ ବିଜୟ ଏକାନ୍ତ ଲୋଡା । ସେଥିନିମିତ୍ତ ପ୍ରତ୍ୟେକଟିକୁ ତନ୍ତ୍ର ଶାସ୍ତ୍ରରେ ଯୋଗ ନାମରେ ଅଭିହିତ କରାଯାଇଛି । ପୂର୍ବାମ୍ନାୟ ହେଉଛି ସୃଷ୍ଟି ରୂପ ତଥା ମନ୍ତ୍ର ଯୋଗ, ଦକ୍ଷିଣାମ୍ନାୟ ହେଉଛି ସ୍ଥିତିରୂପ ତଥା ଭକ୍ତିଯୋଗ, ପଶ୍ଚିମାମ୍ନାୟ ସଂହାର ରୂପ ତଥା କର୍ମଯୋଗ ଏବଂ ଉତ୍ତରାମ୍ନାୟ ହେଉଛି ଅନୁଗ୍ରହରୂପ ତଥା ଜ୍ଞାନ ଯୋଗ । ଏହି ଦିବ୍ୟଦୃଷ୍ଟିରେ ମନ୍ତ୍ର, ଭକ୍ତି, କର୍ମ ଓ ଜ୍ଞାନର ସିଦ୍ଧି ନିମିତ୍ତ ଆମ୍ନାୟ ଭେଦାନୁସାରେ ତନ୍ତ୍ରସାଧନା ସର୍ବାଦୌ କର୍ତ୍ତବ୍ୟ । କୌଳ ସାଧକଗଣ ଊର୍ଦ୍ଧ୍ୱାମ୍ନାୟର ଭୂୟସୀ ପ୍ରଶଂସା କରିଥାନ୍ତି । ଶିବଙ୍କ ପଞ୍ଚବକ୍ତ୍ରରୁ ୨୮ ପ୍ରକାର ତନ୍ତ୍ର ନିର୍ଗତ ହୋଇଥିଲା । ସଦ୍ୟୋଜାତ ମୁଖରୁ କାମିକ, ଯୋଗଜ, ଚିନ୍ତ୍ୟ, କାରଣ, ଅଜିତ, ବାମଦେବ ମୁଖରୁ ଦୀପ୍ତ, ସୂକ୍ଷ୍ମ, ସହସ୍ର ଅଂଶୁମାନ ଓ ସୁପ୍ରଭେଦ, ଅଘୋର ମୁଖରୁ ବିଜୟ, ନିଶ୍ୱାସ, ସ୍ୱାୟମ୍ଭବ, ଅନଳ ଓ ବୀର, ତତ୍ପୁରୁଷ ମୁଖରୁ ରୌରବ, ମୁକୁଟ, ବିମଳ, ଚନ୍ଦ୍ରଜ୍ଞାନ ଓ ବିମ୍ବ ତଥା ଈଶାନ ମୁଖରୁ ପ୍ରୋଦ୍‌ଗୀତ, ଲାଳିତ, ସିଦ୍ଧ, ସନ୍ତାନ, ସର୍ବୋତ୍ତର, ପରମେଶ୍ୱର, କିରଣ ଓ ବାତୁଳ ପ୍ରଭୃତି ୨୮ ପ୍ରକାର ତନ୍ତ୍ର ଶିବଙ୍କ ପଞ୍ଚମୁଖରୁ ନିର୍ଗତ ହୋଇଥିଲା ।

କଳିଯୁଗୀୟ ମାନବମାନଙ୍କ ଭୋଗ ଓ ମୋକ୍ଷ ପ୍ରାପ୍ତି ନିମିତ୍ତ ତନ୍ତ୍ରରେ ଆରାଧ୍ୟ ଦେବତାଙ୍କ ସ୍ୱରୂପ, ସ୍ୱଭାବ, ଗୁଣ, କର୍ମ ଆଦିର ଚିନ୍ତନ ବିଷୟକ ମନ୍ତ୍ରକୁ ଯନ୍ତ୍ରରେ ସଂଯୋଜିତ କରାଯାଇ ଦେବତାଙ୍କ ଧ୍ୟାନ, ଜପ ତଥା ତାନ୍ତ୍ରିକ ଉପାସନାର ପାଞ୍ଚଟି ପଦ୍ଧତି ଯଥା: ପଟଳ, ପଦ୍ଧତି, କବଚ, ସହସ୍ରନାମ ଓ ସ୍ତୋତ୍ର ବ୍ୟବସ୍ଥିତ ରୂପରେ ଦେଖାଇ ଦିଆଯାଇଥାଏ । ବାରାହୀ ତନ୍ତ୍ର ଅନୁସାରେ ସୃଷ୍ଟି, ପ୍ରଳୟ, ଦେବତାର୍ଚ୍ଚନ, ସର୍ବସାଧନ, ପୁରଶ୍ଚରଣ, ଷଟ୍‌କର୍ମ(ଶାନ୍ତି, ବଶୀକରଣ, ସ୍ତମ୍ଭନ, ବିଦ୍ୱେଷଣ, ଉଚ୍ଚାଟନ ତଥା ମାରଣ)ର ସାଧନ ତଥା ଧ୍ୟାନଯୋଗ ପ୍ରଭୃତି ଲକ୍ଷଣଯୁକ୍ତ ଗ୍ରନ୍ଥମାନଙ୍କୁ ଆଗମ କୁହାଯାଏ ।

ସୃଷ୍ଟିଶ୍ଚ ପ୍ରଳୟ ଶ୍ଚୈବ ଦେବତାନାଂ ଯଥାର୍ଚ୍ଚନମ୍,
ସାଧନଂ ଚୈବ ସର୍ବେଷାଂ ପୁରଶ୍ଚରଣମେବ ଚ ।
ଷଟ୍‌କର୍ମ ସାଧନଂ ଚୈବ ଧ୍ୟାନ ଯୋଗେଶ୍ଚତୁ ର୍ବିଧଃ
ସପ୍ତଭିର୍ଲକ୍ଷଣୈର୍ଯୁକ୍ତ ମାଗମଂ ତଦ୍ ବିଦୁର୍ବୁଧାଃ ।

ତନ୍ତ୍ରମାନଙ୍କର ବିଶେଷତା ହେଉଛି 'କ୍ରିୟା' । ବେଦରେ ଅନ୍ତର୍ନିହିତ ଥିବା ଜ୍ଞାନର କ୍ରିୟାତ୍ମକ ରୂପ ବା ବିଧାନାତ୍ମକ ଆଚାର ହିଁ ଆଗମମାନଙ୍କର ମୁଖ୍ୟ ବିଷୟ । ତାନ୍ତ୍ରିକ ଧାରାରେ ମନ୍ତ୍ରର ବିଧିବଦ୍ ପ୍ରୟୋଗ ଦ୍ୱାରା ମନ୍ତ୍ରସିଦ୍ଧି ପ୍ରାପ୍ତ ହୋଇଥାଏ ତଥା ମନ୍ତ୍ରର ଦେବତା ମାନ୍ତ୍ରିକ ପ୍ରତି କୃପା କରନ୍ତି । ଦେବତାଙ୍କ କୃପା ମିଳିଲେ ସକଳ ଅନିଷ୍ଟ ଦୂରୀଭୂତ ହୋଇ ଐଶ୍ୱର୍ଯ୍ୟ ଓ ମୋକ୍ଷ ପ୍ରାପ୍ତି ହୋଇଥାଏ । ଶାସ୍ତ୍ରରେ କୁହାଯାଇଛି–

ଦୈବାଧୀନଂ ଜଗତ୍ ସର୍ବଂ ମନ୍ତ୍ରଧୀନାସ୍ତ ଦେବତାଃ,
ମନ୍ତ୍ରାଣାଂ ଉପହୋମାଦୈଃ ସ୍ତୂୟମାନାହି ଦେବତାଃ ।
ପ୍ରସନ୍ନା ନିଖିଳାନ୍ ଭୋଗାନ୍ ପୁରୁଷାର୍ଥଂଶ୍ଚ ଯଚ୍ଛତି ।

ଗୁରୁତ୍ୱପୂର୍ଣ୍ଣ ହେଉଛି, ମନ୍ତ୍ରର ପ୍ରତ୍ୟେକ ଅକ୍ଷରର ଶକ୍ତି ରହିଛି ଏବଂ କେଉଁ କେଉଁ ଅକ୍ଷରର ମିଳନରେ ଦେବତାଙ୍କ ମନ୍ତ୍ର ଗଠନ ହୋଇଥାଏ, ତାହା ଜାଣିବା ପ୍ରଥମ କର୍ତ୍ତବ୍ୟ । ସିଦ୍ଧଗୁରୁଙ୍କ ଉପଦେଶ ବିନା ନିର୍ଦ୍ଦିଷ୍ଟ ମନ୍ତ୍ରପ୍ରାପ୍ତି ହୁଏନାହିଁ । ଏହି କାରଣରୁ ତନ୍ତ୍ରରେ ଗୁରୁ ଓ ଦୀକ୍ଷା ଉଭୟକୁ ମହତ୍ତ୍ୱ ପ୍ରଦାନ କରାଯାଇଛି । ଯଥାର୍ଥ ଗୁରୁ ଗ୍ରହଣ ନକରି ମନ୍ତ୍ରର ପ୍ରୟୋଗ ଦ୍ୱାରା କେହି ସିଦ୍ଧିଲାଭ କରିପାରିବେ ନାହିଁ । ସେଥିନିମିତ୍ତ ସାଂଖ୍ୟାୟନ ତନ୍ତ୍ରରେ କୁହାଯାଇଛି, କୌଣସି ସାଧକ ସ୍ୱଇଚ୍ଛାରେ ଶାସ୍ତ୍ରାନୁଯାୟୀ ମନ୍ତ୍ର ଜପ କଲେ ମଧ୍ୟ ସିଦ୍ଧିଲାଭ କରିପାରେ ନାହିଁ । ସିଦ୍ଧ ଗୁରୁଙ୍କଠାରୁ ମନ୍ତ୍ର ଦୀକ୍ଷା ନେବା ପରେ ସାଧନା କରିବା ବିଧେୟ । ଏ ସମ୍ପର୍କରେ ଶାସ୍ତ୍ରୀୟବଚନ ହେଉଛି–

କଳ୍ପେ ଦୃଷ୍ଟାତୁ ଯୋ ମନ୍ତ୍ରଂ ସ୍ୱେଚ୍ଛାୟା ଜପତେ ନରଃ,
ନତସ୍ୟ ଜୀୟତେ ସିଦ୍ଧିଃ କଳ୍ପକୋଟିଶତୈରପି ।
ତସ୍ମାଦ୍ ସର୍ବ ପ୍ରଯତ୍ନେନ ଦୀକ୍ଷାଂ କୁଳଗୁରୋର୍ମୁଖାଦ୍ ।

ଶାସ୍ତ୍ରରେ ମଧ୍ୟ ଗୁରୁଙ୍କ ଲକ୍ଷଣ ସମ୍ପର୍କରେ କୁହାଯାଇଛି ଯେ, ସିଦ୍ଧଗୁରୁ ବେଦ ବେଦାନ୍ତ ଓ ଦର୍ଶନ ଶାସ୍ତ୍ର ବିଶାରଦ ହୋଇଥିବେ ତଥା ଆଚରଣ ଶୁଦ୍ଧ ମହାତ୍ମା ହୋଇଥିବେ ।

ବେଦବେଦାଙ୍ଗ ପରିଣଂ ବେଦାନ୍ତାର୍ଥ ବିଶାରଦମ୍,
ବୈଦିକାଚାର ସଂଯୁକ୍ତଂ କୁର୍ଯ୍ୟଦ୍ ଗୁରୁମତନ୍ଦ୍ରିତମ୍ ।

'ଶାରଦା ତିଳକ' ତନ୍ତ୍ରରେ ଦୀକ୍ଷା ଶବ୍ଦର ଉତ୍କୃଷ୍ଟ ବାଖ୍ୟା କରାଯାଇ ଉଲ୍ଲେଖ ଅଛି ଯେ 'ଦୀକ୍ଷା ହିଁ ସକଳ କର୍ମବାସନାକୁ କ୍ଷୀଣ କରିଦେଇ ଦିବ୍ୟଭାବ ସଂଚାର କରିଥାଏ ।

ଦୀୟତେ ଦିବ୍ୟ ସଦ୍‌ଭାବଂ କ୍ଷୀୟତେ କର୍ମବାସନାଃ,
ଅତୋ ଦୀକ୍ଷେତି ସଂପ୍ରୋକ୍ତା ମୁନିଭିସ୍ତତ୍ତ୍ୱ ଦର୍ଶିଭିଃ ।

ତନ୍ତ୍ରର ଭେଦ ଅନୁଯାୟୀ ଦୀକ୍ଷା ପ୍ରଦାନ କରାଯାଏ । 'ବୃହଦ୍ ତନ୍ତ୍ରସାର'ରେ ଆଣବୀ, ଶାକ୍ତୀ ଓ ଶାମ୍ଭବୀ ନାମରେ ଦୀକ୍ଷା ତିନି ପ୍ରକାରର ।

ତ୍ରିବିଧା ସା ଭବେଦ୍ ଦୀକ୍ଷା ପ୍ରଥମା ଆଣବୀ ମତା,
ଶାକ୍ତୟୀ ଶାମ୍ଭବୀ ଚାନ୍ୟା ସଦ୍ୟୋମୁକ୍ତି ବିଧାୟିନୀ ।

ଦୀକ୍ଷା ପ୍ରସଙ୍ଗ ଯୋଗିନୀ, ହୃଦୟ ଦୀକ୍ଷାରତ୍ନ, ଦୀକ୍ଷା କଳ୍ପଦ୍ରୁମ, ଦୀକ୍ଷା କୌମୁଦୀ ଓ ଦୀକ୍ଷାଦର୍ଶ ଗ୍ରନ୍ଥସମୂହରେ ବର୍ଣ୍ଣିତ । ରୁଦ୍ରଯାମଳ ତନ୍ତ୍ରରେ ସଦ୍‌ଗୁରୁ ଓ ଦୀକ୍ଷା ସମ୍ପର୍କରେ କୁହାଯାଇଛି ।

ଗୁରୁମୂଳଂ ଜଗତସର୍ବଂ ଗୁରୁମୂଳଂ ପରଂତପଃ,
ଗୁରୋଃ ପ୍ରସାଦ ମାତ୍ରେଣ ମୋକ୍ଷମାପ୍ନୋତି ସଦ୍‌ବଶୀ ।
ଗୁରୁଂବିନା ଯସ୍ତୁମୂଢ଼ଃ ପୁସ୍ତକାଦି ବିଲୋକନାତ୍,
ଜପବନ୍ଧଂ ସମାପ୍ନୋତି କିଲ୍‌ବିଷଂ ପରମେଶ୍ୱରୀ ।

ଭାରତୀୟ ତାନ୍ତ୍ରିକ ବିଚାରବୋଧରେ ଭାବର ମହତ୍ତ୍ୱ ସର୍ବାଧିକ । ସାଧକ ଆପଣାର ଈଷ୍ଟଙ୍କ ସହିତ ତଦାତ୍ମ୍ୟ ସ୍ଥାପନ ନିମିତ୍ତ ଭାବର ପ୍ରୟୋଜନୀୟତା ରହିଛି । ଭାବ ହେଉଛି ମନର ଧର୍ମ। 'ରୁଦ୍ରଯାମଳ' ତନ୍ତ୍ରରେ ଉଲ୍ଲେଖ ଅଛି ।

ଭାବେନ ଲଭତେ ସର୍ବଂ ଭାବେନ ଦେବ ଦର୍ଶନମ୍ ।
ଭାବେନ ପରମଂ ଜ୍ଞାନଂ ତସ୍ମାଦ୍ ଭାବାବଲମ୍ବନମ୍ ।

ଭାବରେ ସକଳ ପ୍ରାପ୍ତି ହୋଇଥାଏ । ଜପ, ହୋମ, ତର୍ପଣ, ଦେବତା ଦର୍ଶନ ଓ ପରମ ଜ୍ଞାନପ୍ରାପ୍ତି ଭାବ ଦ୍ୱାରା ହିଁ ପରିପୂର୍ଣ୍ଣତା ଲାଭ କରିଥାଏ । ତନ୍ତ୍ରଶାସ୍ତ୍ରରେ ଦିବ୍ୟ, ବୀର ଓ ପଶୁ ଏହି ତିନି ଭାବର କଥା କୁହାଯାଇଛି । ଯେଉଁମାନେ ହିତାହିତଜ୍ଞାନ ବିବର୍ଜିତ ଅଥବା କୁଳ, ଶୀଳ, ଜାତି, ଭୟ, ଲଜ୍ଜା, ଶଙ୍କା, ଘୃଣା ଓ ଜୁଗୁପ୍ସା ପ୍ରଭୃତି ଅଷ୍ଟପ୍ରକାର ଭାବଠାରୁ ଦୂରରେ, ସେହିମାନେ ମନୁଷ୍ୟ ରୂପ ଧାରଣ କରିଥିଲେ ହେଁ ପଶୁ ପଦବାଚ୍ୟ ତଥା ସେମାନଙ୍କର ଭାବ ହେଉଛି ପଶୁଭାବ । ସାଧକ ପ୍ରାଥମିକ ସାଧନା କାଳରେ ପଶୁଭାବ ଧାରଣ କରିଥାଏ । ଏହି ଭାବରେ ତମ ଗୁଣର ପ୍ରାଧାନ୍ୟ ଥାଏ । କ୍ରମେ ଅସଦ୍‌ଗୁଣ ଦୂରୀଭୂତ ହୋଇ ରଜୋଗୁଣ ପ୍ରଭାବରୁ ବୀରଭାବ ଜାଗ୍ରତ ହୋଇଥାଏ । ଶେଷରେ ସତ୍ତ୍ୱଗୁଣ ପ୍ରଭାବରୁ ଦିବ୍ୟଭାବ ଜାଗ୍ରତ ହୁଏ । ଦିବ୍ୟଭାବାପନ୍ନ ତନ୍ତ୍ରସାଧକ ହିଁ ଉଚ୍ଚକୋଟୀର ସାଧକ । ଭାବ ସହିତ ଆଚାରର ମଧ୍ୟ ସୂକ୍ଷ୍ମାତି ସୂକ୍ଷ୍ମ ସମ୍ପର୍କ ରହିଛି । ସାଧକର ମାନସିକ ଅବସ୍ଥାର ନାମ ଭାବ ଏବଂ ବାହ୍ୟ ଆଚରଣର ନାମ ଆଚାର । ତନ୍ତ୍ର ସାଧନାରେ ସାତପ୍ରକାର ଆଚାରକୁ ପ୍ରାଧାନ୍ୟ ଦିଆଯାଇଛି । ସେଗୁଡିକ ହେଉଛି ବେଦାଚାର, ବୈଷ୍ଣବାଚାର, ଶୈବାଚାର, ଦକ୍ଷିଣାଚାର, ବାମାଚାର, ସିଦ୍ଧାନ୍ତାଚାର ଓ କୌଳାଚାର । ବେଦାଚାର ଦ୍ୱାରା ବାହ୍ୟ ଶୁଦ୍ଧି, ବୈଷ୍ଣବାଚାରରେ ଭକ୍ତି ପ୍ରାପ୍ତି, ଶୈବାଚାରରେ ବିଚାରଜ୍ଞାନ ପ୍ରାପ୍ତି, ଦକ୍ଷିଣାଚାରରେ ଆଚରଣ ପ୍ରାପ୍ତି, ବାମାଚାରର ପ୍ରତିକୂଳ ଆଚରଣ ଦ୍ୱାରା ପଞ୍ଚତତ୍ତ୍ୱ ପ୍ରାପ୍ତି, ସିଦ୍ଧାନ୍ତାଚାରରେ ବ୍ରହ୍ମାନନ୍ଦ ପ୍ରାପ୍ତି ଏବଂ କୌଳାଚାରରେ ପରିପୂର୍ଣ୍ଣ ବ୍ରହ୍ମଜ୍ଞାନ ପ୍ରାପ୍ତି ହୋଇଥାଏ । ପଶୁଭାବ ସହିତ ବେଦାଚାର, ବୈଷ୍ଣବାଚାର, ଶୈବାଚାର ଓ ଦକ୍ଷିଣାଚାରର ସମ୍ପର୍କ ରହିଛି । ମାୟାଛନ୍ନ ଜୀବ ପଶୁତୁଲ୍ୟ ଅଜ୍ଞାନ ରଜ୍ଜୁ ଦ୍ୱାରା ସଂସାର ସହିତ ବନ୍ଧା ହୋଇଥାନ୍ତି । ବେଦାଚାର ଦ୍ୱାରା ଶୁଦ୍ଧତା, ବୈଷ୍ଣବାଚାର ଦ୍ୱାରା ଭକ୍ତି, ଶୈବାଚାର ଦ୍ୱାରା ଜ୍ଞାନ ଏବଂ ଦକ୍ଷିଣାଚାର ଦ୍ୱାରା ଆଚରଣ ଲାଭ କଲାପରେ ଜୀବ ଅଜ୍ଞାନ ରଜ୍ଜୁକୁ ଛିନ୍ନ କରିପାରେ । ତତ୍ପରେ ସେ ବୀରଭାବାପନ୍ନ ହୋଇ ବାମାଚାରରେ ପ୍ରବୃତ୍ତ ହୋଇଥାଏ । ବାମାଚାରର ଗୋପନୀୟ ସାଧନା ଦ୍ୱାରା ସେ ଦ୍ୱୈତବାଦରୁ ଊର୍ଦ୍ଧ୍ୱରେ ସ୍ଥିତ ହୋଇ ଅଦ୍ୱୈତାନନ୍ଦ ଆସ୍ୱାଦନ ନିମିତ୍ତ ଯୋଗ୍ୟ ହୋଇଥାଏ । ବୀରଭାବର ଏହି ଉଚାଙ୍ଗ ସ୍ଥିତିରେ ସାଧକ ସିଦ୍ଧାନ୍ତାଚାରରେ ପ୍ରବୃତ୍ତ ହୋଇ ବ୍ରହ୍ମାନନ୍ଦ ସୁଖ ଅନୁଭବ କରେ । ପରିଶେଷରେ ସେ ଦିବ୍ୟଭାବରେ କୌଳାଚାରରେ ପ୍ରବେଶ କରେ ତଥା ପୂର୍ଣ୍ଣ ବ୍ରହ୍ମଜ୍ଞାନର ଅଧିକାରୀ ହୋଇଥାଏ । ଏତାଦୃଶ ଦିବ୍ୟ ସାଧକଙ୍କ ଲକ୍ଷଣ ସମ୍ପର୍କରେ 'ବିଶ୍ୱସାର' ତନ୍ତ୍ରରେ କୁହାଯାଇଛି ।

କର୍ଦ୍ଦମେ ଚନ୍ଦନେ ଦେବି ପୁତ୍ରେ ଶତ୍ରୌ ପ୍ରିୟାପ୍ରିୟେ,
ଶ୍ମଶାନେ ଭବନେ ଦେବୀ ତଥୈବ ତୃଣକାଞ୍ଚନେ ।
ନ ଭେଦୋ ଯସ୍ୟ ଦେବେଶି ସ ଏବ କୌଳିକୋତ୍ତମଃ,
ଚିନ୍ତୟେଦ ତୁନା[illegible]ନଂ ସର୍ବତ୍ର ସମଦୃଷ୍ଟିମାନ୍ ।

ଅର୍ଥାତ୍ କର୍ଦ୍ଦମ ଓ ଚନ୍ଦନ, ପୁତ୍ର ଓ ଶତ୍ରୁ, ପ୍ରିୟ ଓ ଅପ୍ରିୟ, ଶ୍ମଶାନ ଓ ଭବନ, ତୃଣ ଓ କାଞ୍ଚନ ମଧ୍ୟରେ ଯେ ଭେଦ ରଖନ୍ତି ନାହିଁ, ସେ ହିଁ ଶ୍ରେଷ୍ଠ ଓ ଉତ୍ତମ କୌଳସାଧକ । ଏତାଦୃଶ ଦିବ୍ୟତନ୍ତ୍ର ସାଧକ ସମଗ୍ର ଜଗତକୁ ଆପଣା ଭିତରେ ଏବଂ ଆପଣାକୁ ସମସ୍ତ ଜଗତ ଜ୍ଞାନରେ ସାଧାରଣ ମାନବ ରୂପେ ଜଗତରେ ରହିଥାନ୍ତି । ସେ କୌଣସି ପରିସ୍ଥିତିରେ ଆପଣାର ସ୍ୱରୂପ, ସାଧନା ତଥା ପ୍ରାପ୍ତି ପ୍ରଦର୍ଶନ କରିବାକୁ ଚାହାନ୍ତି ନାହିଁ । ବିଶ୍ୱ କଲ୍ୟାଣ କାମନାରେ ଏମାନେ ନାନାରୂପ ଧାରଣ କରି ଜୀବନ ଧାରଣ କରିଥାନ୍ତି । ସେମାନଙ୍କ ଅନ୍ତଃକରଣ ଶାକ୍ତଭାବାପନ୍ନ, ବାହ୍ୟ ଶୈବଭାବାପନ୍ନ ଏବଂ ସର୍ବସାଧାରଣରେ ସେମାନେ ବୈଷ୍ଣବଭାବାପନ୍ନ । ଏହିପରି ନାନାରୂପ ଧାରଣପୂର୍ବକ ସେମାନେ ପୃଥିବୀରେ ନିବାସ କରିଥାନ୍ତି । ସେଥିନିମିତ୍ତ କୁହାଯାଇଛି ।

ଅନ୍ତଃ ଶାକ୍ତା ବିହିଃ ଶୈବାଃ ସଭା ମଧ୍ୟେ ଚ ବୈଷ୍ଣବାଃ
ନାନାରୂପଧରାଃ କୌଳା ବିଚରନ୍ତି ମହୀତଳେ ।

ବିଜ୍ଞ, ପ୍ରାଜ୍ଞ ଓ ଶାସ୍ତ୍ରାକାରମାନେ ତନ୍ତ୍ରକୁ ବେଦ ସହିତ ତୁଳନା କରିଛନ୍ତି । ବେଦରେ ଯେପରି ଜ୍ଞାନକାଣ୍ଡ ଓ କର୍ମକାଣ୍ଡ ରହିଛି, ତନ୍ତ୍ରରେ ସେହିପରି ଜ୍ଞାନ ଓ କର୍ମକାଣ୍ଡ ରହିଛି । ଯେଉଁମାନେ ତନ୍ତ୍ରଶାସ୍ତ୍ରରେ ଅନଭିଜ୍ଞ ସେମାନେ ବେଦ ଓ ତନ୍ତ୍ରକୁ ଭିନ୍ନ ଭିନ୍ନ ଜ୍ଞାନ କରିଥାନ୍ତି । କେତେକ ବ୍ୟକ୍ତି ତନ୍ତ୍ରରେ ବାମାଚାର ପ୍ରୟୋଗକୁ ନାପସନ୍ଦ କରି ଏହାକୁ ଅବୈଦିକ ବୋଲି କହିଥାନ୍ତି । ଅନୁଧ୍ୟାନ କଲେ ଜଣାଯାଏ, ବେଦରେ 'ବାମ' ଶବ୍ଦ ପ୍ରୟୋଗ କରାଯାଇଛି । ଏପରିକି 'ବାମ' ସୂକ୍ତ ଜପ ଦ୍ୱାରା ବ୍ରହ୍ମହତ୍ୟାଦି ପାପ ଦୂରୀଭୂତ ହୁଏ ବୋଲି ଋଗ୍‌ବେଦରେ କୁହାଯାଇଛି । ନିରୁକ୍ତାକାରଙ୍କ ମତରେ 'ବାମ' ଶବ୍ଦର ଅର୍ଥ 'ପ୍ରଜ୍ଞା' । ତନ୍ତ୍ରର ଉଦ୍‌ଗାତା ଶିବଙ୍କ ମତରେ, ବାମମାର୍ଗ ହେଉଛି ଅତ୍ୟନ୍ତ ଗହନ ତଥା ଯୋଗୀମାନଙ୍କ ପକ୍ଷରେ ଅଗମ୍ୟ ।

'ବାମୋ ମାର୍ଗଃ ପରମଗହନୋ ଯୋଗୀନାମପ୍ୟଗମ୍ୟଃ'

ତନ୍ତ୍ରଶାସ୍ତ୍ରରେ ଉଲ୍ଲେଖ ରହିଛି, ଯେଉଁ ବ୍ୟକ୍ତି ପର ଦ୍ରବ୍ୟ ଦେଖି ଅନ୍ଧ ହୋଇଯାଏ, ପର ସ୍ତ୍ରୀ ଦର୍ଶନରେ ନଂପୁସକ ପାଲଟିଯାଏ ଓ ପର ଅପବାଦରେ ମୂଢ ହୋଇଥାଏ, ସେହି ଜିତେନ୍ଦ୍ରିୟ ବ୍ୟକ୍ତି ହିଁ ବାମାଚାରର ଅଧିକାରୀ ହୋଇଥାଏ ।

ପରଦ୍ରବ୍ୟେଷୁ ଯୋହ୍ୟନ୍ଧଃ ପରସ୍ତ୍ରୀଷୁ ନପୁଂସକଃ,<br>
ପରାପବାଦେ ଯୋ ମୂଢଃ ସର୍ବଦା ବିଜିତେନ୍ଦ୍ରୟଃ ।<br>
ତସ୍ୟୈବ ବ୍ରାହ୍ମଣସ୍ୟାତ୍ର ବାମେସ୍ୟାଦଧିକାରିତା ।

କୈଳାଚାରୀ ତନ୍ତ୍ରସାଧକ ବୃନ୍ଦ ହିଁ ବାମାଚାରୀ ବିବେଚିତ ହୋଇଥାନ୍ତି । କୌଳ ଏକ ବ୍ୟାପକ ଶବ୍ଦ, ଯାହାର ସାଧାରଣ ଅର୍ଥ ହେଉଛି ଶିବଙ୍କ ସହିତ ଶକ୍ତିଙ୍କୁ ମିଳନ କରାଇବାର ସାମର୍ଥ୍ୟ । 'କୁଳ'ର ଅର୍ଥ ଶକ୍ତି ବା କୁଣ୍ଡଳିନୀ ତଥା 'ଅକୁଳ'ର ଅର୍ଥ ଶିବ । ଏହି ଦିବ୍ୟଦୃଷ୍ଟିରେ ସିଦ୍ଧାନ୍ତ ନିଆଯାଇଛି, ଯେଉଁ ଯୋଗକ୍ରିୟା କୁଣ୍ଡଳିନୀର ଅଭ୍ୟୁତ୍‌ଥାନ କରି ସହସ୍ରାରରେ ସ୍ଥିତ ଶିବଙ୍କ ସହିତ ସମ୍ମେଳନ କରାଏ, ତାହାହିଁ କୌଳ । ସ୍ୱଚ୍ଛଳ ତନ୍ତ୍ରାନୁସାରେ–

କୁଳଂ ଶକ୍ତିରିତ ପ୍ରୋକ୍ତମକୁଳଂ ଶିବ ଉଚ୍ୟତେ,<br>
କୁଳ କୁଳସ୍ୟ ସମ୍ବନ୍ଧଃ କୌଳମିତ୍ୟଭିଧୀୟତେ ।

କୁଳ ବା କୁଣ୍ଡଳିନୀ ଶକ୍ତି ହିଁ କୁଳାଚାରର ମୂଳ ଅବଲମ୍ବନ । କୁଳାଚାର ହିଁ କୌଳାଚାର ବା ବାମାଚାର ନାମରେ ପ୍ରସିଦ୍ଧ । ଏହି ଆଚାର ମଦ୍ୟ, ମାଂସ, ମତ୍ସ୍ୟ, ମୁଦ୍ରା ଓ ମୈଥୁନ ଏହି ପଞ୍ଚମକାର ବା ପଞ୍ଚତତ୍ତ୍ୱ ବା ପଞ୍ଚମୁଦ୍ରାର ସହଯୋଗରେ କାର୍ଯ୍ୟକାରୀ ହୋଇଥାଏ । ଏହି ଦୃଷ୍ଟିକୋଣରେ ତନ୍ତ୍ରରେ ପଞ୍ଚମକାର ପୂଜା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

ମଦ୍ୟ ମାଂସ, ଚ ମୀନଂ ଚ ମୁଦ୍ରା ମୈଥୁନ ମେବଚ<br>
ମକାର ପଞ୍ଚକଂ ପ୍ରାହୁର୍ଯୋଗୀନାଂ ମୁକ୍ତି ଦାୟକମ୍ ।

ପଞ୍ଚମକାରର ଗୂଢ ଅର୍ଥ ନଜାଣି ସାଧାରଣ ଲୋକେ ଭିନ୍ନ ଅର୍ଥ କରିଥାନ୍ତି । ପଞ୍ଚମକାର ମଧ୍ୟରୁ ପ୍ରଥମ ମ'କାର ହେଉଛି ମଦ୍ୟ । ଏହାର ଅର୍ଥ ପାନୀୟ ନୁହେଁ । ବ୍ରହ୍ମରନ୍ଧ୍ର ବା ସହସ୍ରାର ପଦ୍ମରୁ ଝରିପଡୁଥିବା ମଧୁକୁ ଖେଚରୀ ମୁଦ୍ରା ପ୍ରୟୋଗରେ ଯୋଗ ବଳରେ ପାନ କରିବା ହିଁ ତନ୍ତ୍ର ସଂବୋଧିରେ ମଦ୍ୟ ପାନ । ଯେଉଁ ସାଧକ ପୁଣ୍ୟ ଓ ପାପରୂପୀ ପଶୁମାନଙ୍କୁ ଜ୍ଞାନରୂପୀ ଖଡ୍ଗ ଦ୍ୱାରା ନିହତ କରି ମନକୁ ବ୍ରହ୍ମରେ ଲୀନ କରିବା ହିଁ ତନ୍ତ୍ରବିଧିରେ ମାଂସାହାର । ଇଡା ଓ ପିଙ୍ଗଳା ନାଡିଦ୍ୱୟରେ ପ୍ରବାହିତ ଶ୍ୱାସ ଓ ପ୍ରଶ୍ୱାସ ଦୁଇଟି ହେଉଛି ମତ୍ସ୍ୟ । ସାଧକ ପ୍ରାଣାୟମ ଦ୍ୱାରା ଶ୍ୱାସ ପ୍ରଶ୍ୱାସ ବନ୍ଦ କରି କୁମ୍ଭକ ବଳରେ ପ୍ରାଣବାୟୁକୁ ସୁଷୁମ୍ନା ଭିତରେ ସଂଚାଳନ କରାଇ ମତ୍ସ୍ୟସାଧନ କରିଥାନ୍ତି । ସାଧକ ଜ୍ଞାନ ବଳରେ ଅସତ୍‌ସଙ୍ଗ ପରିହାର କରି ସତ୍‌ସଙ୍ଗ ଦ୍ୱାରା ମୁକ୍ତି ଲାଭ କରିବାକୁ ତନ୍ତ୍ରଧାରାରେ ମୁଦ୍ରା କୁହାଯାଏ । ସାଧକ ନିରନ୍ତର ସୁଷୁମ୍ନାରେ ପ୍ରାଣବାୟୁ ସଂଚାର କରାଇ ସହବାସଠାରୁ କୋଟି କୋଟି ଗୁଣର ଦିବ୍ୟାନନ୍ଦ ପ୍ରାପ୍ତି ହୋଇଥାଏ । ଏହାକୁ ତନ୍ତ୍ର ପରମ୍ପରାର ସର୍ବୋତ୍ତମ ଉପଲବ୍ଧି ମୈଥୁନ କୁହାଯାଇଛି । ଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ ସୌନ୍ଦର୍ଯ୍ୟ ଲହରୀରେ ଶିବଶକ୍ତିଙ୍କ ମିଳନକୁ ପରମାନନ୍ଦମୟ ବ୍ୟକ୍ତ କରିଛନ୍ତି । ଏହି ପରମଗ୍ରନ୍ଥରେ ସେ ନିରତିଶୟ ସୌନ୍ଦର୍ଯ୍ୟ ମୂର୍ତ୍ତିଙ୍କୁ ମାତୃ ରୂପରେ କଳ୍ପନା କରି ତାହାର ଦାର୍ଶନିକ ମାଧୁର୍ଯ୍ୟର କବିତ୍ୱମୟ ଚମତ୍କାର ବର୍ଣ୍ଣନା କରିଛନ୍ତି, ଯାହାକି ପରବର୍ତ୍ତୀକାଳୀନ ଦାର୍ଶନିକଙ୍କୁ ବିଶେଷ ପ୍ରଭାବିତ କରିଛନ୍ତି । ଏପରିକି ପରବର୍ତ୍ତୀକାଳୀନ ସାଧକବୃନ୍ଦ ଆପଣାର ତନ୍ତ୍ରସଂବୋଧିରେ ସୌନ୍ଦର୍ଯ୍ୟ ଲହରୀର ସରଳ ସୁବୋଧ୍ୟ ଭାଷ୍ୟ ରଚନା କରି ତନ୍ତ୍ର ଦର୍ଶନକୁ ପୁଷ୍କଳ କରିଯାଇଛନ୍ତି ।

ତନ୍ତ୍ରଦର୍ଶନର ଆଧ୍ୟାତ୍ମିକ ସିଦ୍ଧାନ୍ତ ହେଉଛି, ପରଂବ୍ରହ୍ମ ନିଷ୍କଳଙ୍କ, ଶିବ, ସର୍ବଜ୍ଞ, ସ୍ୱୟଂଜ୍ୟୋତିଃ, ଆଦ୍ୟନ୍ତ ରହିତ, ନିର୍ବିକାର ତଥା ସଚ୍ଚିଦାନନ୍ଦ ସ୍ୱରୂପ । ତାନ୍ତ୍ରିକମାନେ ପରମତତ୍ତ୍ୱକୁ ପରଂବ୍ରହ୍ମ ପରିବର୍ତ୍ତେ ମାତୃରୂପରେ ସ୍ୱୀକାର କରନ୍ତି । ତନ୍ତ୍ରର ଶକ୍ତିସିଦ୍ଧାନ୍ତ ବୈଦିକ ସିଦ୍ଧାନ୍ତ ଉପରେ ପ୍ରତିଷ୍ଠିତ । ଦାର୍ଶନିକମାନଙ୍କ ମତରେ, ଋଗ୍‌ବେଦର ବାଗାମ୍ଭୃଣୀ ସୂକ୍ତ ତନ୍ତ୍ର ସଂବୋଧିରେ 'ଶାକ୍ତତନ୍ତ୍ର' ସ୍ୱରୂପରେ ପ୍ରତିଭାତ ତଥା ସକଳ ତନ୍ତ୍ରଶାସ୍ତ୍ର ଏହି ସୂକ୍ତର ତାନ୍ତ୍ରିକ ଭାଷ୍ୟ । ମହନୀୟତା ହେଉଛି, ବେଦରେ ସିଦ୍ଧାନ୍ତ, ସଂଯୋଗ, ସମ୍ଭାବନା ଓ ସଂବୋଧି କତିପୟ ନିର୍ଦ୍ଦିଷ୍ଟ ଗୋଷ୍ଠୀ ନିମିତ୍ତ ଉଦ୍ଦିଷ୍ଟ

ଥିଲେ ହେଁ ତନ୍ତ୍ରରେ ଏହା ସାର୍ବଜନୀନ । ଏପରିକି ସ୍ତ୍ରୀ, ଶୁଦ୍ର ଓ ପତିତଙ୍କ ନିମିତ୍ତ ତନ୍ତ୍ର ଦ୍ୱାରା ଚିର ଉନ୍ମୁକ୍ତ । ଭାରତୀୟ ଦାର୍ଶନିକ ବିଚାରବୋଧରେ ତନ୍ତ୍ରଧାରା ବିଭିନ୍ନ ବିଭାଗରେ ପ୍ରତିଭାତ ହୋଇ ତନ୍ତ୍ରଭେଦର ଉତ୍ତରଣରେ ପଲ୍ଲବିତ, ପୁଷ୍ପିତ ଓ ସୁରଭିତ । ଉଲ୍ଲେଖଯୋଗ୍ୟ ଯେ, ଭାରତ ମାଟିରେ ଜନ୍ମନେଇଥିବା ନୀରୀଶ୍ୱରବାଦୀ ଜୈନ ଓ ବୌଦ୍ଧ ଦର୍ଶନରେ ମଧ୍ୟ ତନ୍ତ୍ରଧାରାର ଉନ୍ମେଷ ଓ ବିକାଶ ସାଧିତ ହୋଇଅଛି । ସଂକ୍ଷେପରେ ଉଲ୍ଲେଖ କଲେ, ମାୟାଲୋକର ଉର୍ଦ୍ଧ୍ୱରେ ସଂସ୍ଥିତ ମହାମାୟା ସାମ୍ରାଜ୍ୟର ତାତ୍ତ୍ୱିକ ବିବେଚନ ତନ୍ତ୍ରଦର୍ଶନରେ ସରଳ, ସୁବୋଧ୍ୟ ଓ ସୁଭାଷ୍ୟ ହୋଇ ଅଦ୍ୱୈତବାଦ ସହିତ ଭକ୍ତିର ସମନ୍ୱୟ ସଂଘଟିତ ହୋଇପାରିଛି ତଥା ତନ୍ତ୍ର ସଂବୋଧିରେ ଭୋଗ ଓ ମୋକ୍ଷ ସହଜଲଭ୍ୟ ହୋଇପାରିଛି । ଏହି ଦିବ୍ୟଦୃଷ୍ଟିରେ 'କୁଳାର୍ଣ୍ଣବ ତନ୍ତ୍ର'ରେ ତନ୍ତ୍ର ସାଧନାର ସତ୍‌ଫଳ ସମ୍ପର୍କରେ ଉଦ୍‌ଘୋଷଣା କରାଯାଇଛି ।

ଭୋଗୋ ଯୋଗାୟତେ ସମ୍ୟକ୍ ପାତକଂ ସୁକୃତାତତେ,
ମୋକ୍ଷାୟତେ ଚ ସଂସାରଃ କୁଳଧର୍ମେ କୁଳେଶ୍ୱରି ।

ଓରିଏଣ୍ଟାଲ୍ ଇନ୍‌ସ୍ୟୁରାନ୍ସ ବିଲ୍‌ଡିଂ
ଦକ୍ଷିଣକାଳୀ ମାର୍ଗ
ଢେଙ୍କାନାଳ-୭୫୯୦୦୧

# ଦୁର୍ଗେ ଦେବୀ ନମୋସ୍ତୁତେ

ପରୀକ୍ଷିତ ମିଶ୍ର

ଜଗତ ଜନନୀ ଦୁର୍ଗତି ହାରିଣୀ
ମଙ୍ଗଳକାରିଣୀ ମାତା
ଦୁଃଖ ବିନାଶିନୀ ଶକ୍ତି ପ୍ରଦାୟିନୀ
ବିଷ୍ଣୁମାୟେତି ସଂସ୍ଥିତା ।
ଭଗବତୀ ଦୁର୍ଗେ ଦେବୀ ହୈମବତୀ
କାଳରାତ୍ରୀ ମହାକାଳୀ
ଚଣ୍ଡିକା କରାଳୀ କୁମାରୀ ଅନନ୍ତ
ମହାସୌମ୍ୟା ମହାବଳୀ ।
ଅଦ୍ଭୁତ ଉଦ୍ଭବ ଜନ୍ମଗାଥା ତବ
କେ ପଣ୍ଡିତ ପାରେ ଭଣି ?
ଜ୍ୟୋତି ସ୍ୱରୂପା ତୁ ଅନନ୍ତ ଅସୀମା
ତୁଚ୍ଛ ସୈନ୍ୟ ଅକ୍ଷୌହିଣୀ ।
ପାର୍ବତୀ ଚାମୁଣ୍ଡା ପ୍ରୌଢ଼ା ମୁକ୍ତକେଶୀ
ଅବତରୁ ଧରାଧାମେ
ମହତ୍ ଉଦ୍ଦେଶ୍ୟ ଦୈତ୍ୟ ବିଦାରଣେ
ଛନ୍ତି ଭକ୍ତ ବ୍ୟଥା ମର୍ମେ ।
ପରମେଶ୍ୱରୀ ମା' ପରିପୂର୍ଣ୍ଣା ତେଜେ
ରୂପକାନ୍ତି ସମୁଜ୍ଜ୍ୱଳ
ସତ୍ତ୍ୱ ରଜ ତମ ତ୍ରିଗୁଣାତ୍ମ ଉର୍ଦ୍ଧ୍ୱେ
ଅପାର ଶକତି ବଳ ।



ତପ୍ତ ସ୍ୱର୍ଣ୍ଣ ସମ ନବ ସୂର୍ଯ୍ୟ ଦୀପ୍ତି
ଚକ୍ଷୁ ମୁଖ ଦନ୍ତ ପଙ୍‌କ୍ତି
ଗଦାପଦ୍ମ ଖଡ୍‌ଗ ବୀଣା ଅକ୍ଷମାଳା
ଧାରୀ ରୂପାନ୍ତରେ ଶକ୍ତି ।
ମହା ସରସ୍ୱତୀ ମହା ଲକ୍ଷ୍ମୀଧୃତି
ମହାସତୀ ମହାମାତା
ଏକ ଓ ଅଭିନ୍ନ ଧରିତ୍ରୀ ରକ୍ଷଣେ
ଧରାପୃଷ୍ଠେ ଆବିର୍ଭୂତା ।
କରୁଣାର ଉତ୍ସ ଜୟ କ୍ଷମାମୟୀ
ବିରଜା ସୁଶୀଳା ଜୟ
ଜୟ ଚତୁର୍ଭୁଜା ଜୟ ଅଷ୍ଟଭୁଜା
କ୍ଷୀରାର୍ଣ୍ଣବ ସୁତା ଜୟ ।
ଅପରାଧ କ୍ଷମା ଆଉ କେ ଅଛିଟି
ତୋ ପରିକା ପାରେ କରି
ମୁଁ ଅଧମ ମାଗେ ଜଗତ କଲ୍ୟାଣେ
ହସ୍ତେ ଭିକ୍ଷା ଥାଳି ଧରି ।



ରାଜେନ୍ଦ୍ର ନଗର,
ମଧୁପାଟଣା, କଟକ-୧୦

# ଶାରଦୀୟ ଦୁର୍ଗାପୂଜା ଓ ଦଶହରା

**ସୁପ୍ରଭା ମିଶ୍ର**

ଶୀତୁଆ ସକାଳର ଘାସ ଉପରେ ମୁକ୍ତାପରି ଟୋପାଟୋପା କାକର ବିନ୍ଦୁ, ନୀଳ ଆକାଶର ଚାନ୍ଦୁଆ ତଳେ ଧଳାଧଳା ବଉଦଙ୍କ ମେଳା, ପଠାରେ କାଶତଣ୍ଡୀର ମହୋତ୍ସବ, ନଇ, ପୋଖରୀର ସ୍ୱଚ୍ଛ ଜଳରାଶି, ତା'ଉପରେ ରଙ୍ଗବେରଙ୍ଗ ଫୁଲମାନଙ୍କର ଖିଲିଖିଲି ବାରିରେ ବାଡରେ ଜହ୍ନିଫୁଲର ସଭା ଅଗଣାରେ ଗଙ୍ଗଶିଉଳୀର ନୀରବତା ଭଳି ଏକ ପ୍ରାକୃତିକ ପ୍ରାଚୁର୍ଯ୍ୟ ଓ ସୌନ୍ଦର୍ଯ୍ୟ ଭରା ପରିବେଶ ମଧ୍ୟରେ ଶରତ ଓହ୍ଲେଇ ଆସେ ଧରାପୃଷ୍ଠକୁ । ସକାଳର ସକଳ ସୁରଭି ତାକୁ ସତେକି ଆଭୂମି ପ୍ରଣାମ ଜଣାନ୍ତି । ଏହି ଋତୁକୁ ଅଧିକ ମଧୁମୟ, ତତୋଧିକ ସ୍ମରଣୀୟ ଏବଂ ସର୍ବାପେକ୍ଷା ସୁଖମୟ କରିବାକୁ ସମ୍ମୁଖରେ ଉଭା ହୁଏ ସାର୍ବଜନୀନ ଶାରଦୀୟ ଉତ୍ସବ । ମାତୃପୂଜା ନିମିତ୍ତ ପାଗଳ ମଣିଷ ଜଗତ୍‌ଜନନୀ ଅଭୟଦାୟିନୀ ମହିଷମର୍ଦ୍ଦିନୀଙ୍କ ପୂଜା ଆବାହନରେ ନିଜକୁ ଏକେବାରେ ହଜେଇ ଦିଏ । ଉଦାତ୍ତ କଣ୍ଠରେ ଗାଇଉଠେ– ''ଆସ ଦେବୀ ମହାମାୟା, ସକଳ ଦୁର୍ଗତିରୁ ଏ ଜାତିକୁ ରକ୍ଷା କର, ସକଳ ପ୍ରାଣରେ ଭରିଦିଅ ଅପୂର୍ବ ପୁଲକ ଓ ମହାନନ୍ଦ'' । ଶୁଭ୍ର-ଶରତର ମାଧୁର୍ଯ୍ୟ, ମାତୃ ପୂଜାର ଆକର୍ଷଣ ଜାତିଧର୍ମ, ଶ୍ରେଣୀ ସମ୍ପ୍ରଦାୟ, ଧନୀ ଦରିଦ୍ର ନିର୍ବିଶେଷରେ ପ୍ରତିଟି ହୃଦୟରେ ଐକ୍ୟ ଭାବ ଜାଗ୍ରତ କରେ । ପରସ୍ପରକୁ ଏକତା ସୂତ୍ରରେ ଆବଦ୍ଧ କରି ରଖେ । କୋଟି କୋଟି ପ୍ରାଣ ଫୁଲକୁ ଗୋଟିଏ ସୂତାରେ ବାନ୍ଧିବା ହେଉଛି ମହାପାର୍ବଣ । ଏହା ମନ ଭିତରୁ ସମସ୍ତ ଦାନବ ପ୍ରକୃତିକୁ ବଳିଦାନ ଦେଇ ଦୃଢ ସାତ୍ତ୍ୱିକ ଭାବନା ଆଣେ । ବ୍ୟକ୍ତିଗତ ଅଭ୍ୟନ୍ତର ଉଜ୍ଜ୍ୱଳି ଉଠେ ।

ଅଙ୍ଗ-ବଙ୍ଗ-କଳିଙ୍ଗ ଏହି ତିନି ପ୍ରାନ୍ତରେ ନିଷ୍ଠାର ସହ ଦୁର୍ଗାପୂଜା ପାଳିତ ହୁଏ । ବୈଦିକ ଯୁଗରୁ ଆର୍ଯ୍ୟପୁତ୍ରମାନେ ଏହି ପୂଜା କରି ଆସୁଛନ୍ତି । ମହାଭାରତ କହେ– 'ସକଳ ଦୁର୍ଗତିରୁ ପରିତ୍ରାଣ କର ବୋଲି ହେ ଦେବୀ ! ତୁମେ ଦୁର୍ଗା ନାମରେ ପୂଜିତ'' । ଶବ୍ଦ କଳ୍ପଦ୍ରୁମରେ ବର୍ଣ୍ଣିତ ଅଛି– 'ଦ' ଶବ୍ଦର ଅର୍ଥ ଦୈତ୍ୟ ନାଶିନୀ, 'ଉ' କାରର ଅର୍ଥ ସର୍ବ ବିଘ୍ନ ବିନାଶିନୀ, 'ରେଫ୍' ବୁଝାଏ ସର୍ବ ରୋଗ ବିନାଶିନୀ, 'ଗ' ଅକ୍ଷରର ଅର୍ଥ ପାପ ବିନାଶିନୀ ଏବଂ 'ଆ'କାରର ଅର୍ଥ ହୁଏତ ସ୍ନେହ ଓ ବାତ୍ସଲ୍ୟ ମମତା ପ୍ରଦାୟିନୀ । ଦେବୀ ପୁରାଣ ଅନୁସାରେ ସେ 'ଦୁର୍ଗର ରକ୍ଷାକାରୀ' । 'ମାର୍କଣ୍ଡେୟ ପୁରାଣ ମତରେ ସେ ଏହି ଭବସାଗର ନିମିତ୍ତ ଏକମାତ୍ର ନୌକା ସ୍ୱରୂପା । ଦେବୀ ଭାଗବତ କହେ ' ସେ ସଙ୍କଟତାରିଣୀ' । ଦୁର୍ଗା ମନ୍ତ୍ରରେ ସେ ସକଳ ଭୂତରେ ପରିବ୍ୟାପ୍ତ, ମଙ୍ଗଳକାରିଣୀ, ଶତ୍ରୁବିନାଶିନୀ, ସମସ୍ତ ଶକ୍ତି ଓ ବୁଦ୍ଧିର ଅଧିକାରିଣୀ । ତାଙ୍କୁ ଶାକମ୍ଭରୀ ମଧ୍ୟ କୁହାଯାଏ । କାରଣ ଅନାବୃଷ୍ଟି ସମୟରେ ସେ ଶରୀରରୁ ପ୍ରାଣ ସଞ୍ଜିବନୀ ଶସ୍ୟ ସମୂହ ଦ୍ୱାରା ଜଗତବାସୀଙ୍କୁ ଭରଣପୋଷଣ କରିଥାନ୍ତି । ଯେତେବେଳେ ସେ ରାକ୍ଷସମାନଙ୍କ ପ୍ରାଦୁର୍ଭାବ ଦୂର କରିବାକୁ ଆବିର୍ଭାବ ହୋଇଥାନ୍ତି, ସେତେବେଳେ ସେ ଚଣ୍ଡୀ ନାମ ଧାରଣ କରନ୍ତି । ଦେବୀଙ୍କର ଏଭଳି କଳ୍ପନା ବାସ୍ତବିକ ଅନନ୍ୟ ଏବଂ ଏହି ଶକ୍ତି ଦେବୀଙ୍କର ପୂଜନ, ମନନ ସମସ୍ତ ଜୀବଙ୍କର କାମ୍ୟ ଓ ସ୍ମରଣୀୟ ।

ମାଆ ନିକଟରେ ସନ୍ତାନର ମନକଥାର ବିନମ୍ର ନିବେଦନ ମୂଳରେ ହିଁ ମାତୃପୂଜା ପାର୍ବଣର ସୃଷ୍ଟି । ଏହି ଶାରଦୀୟ ମହାପୂଜା ଶରତ ଋତୁରେ ମୂଳାଷ୍ଟମୀଠାରୁ ଦୁର୍ଗା ନବମୀ ପର୍ଯ୍ୟନ୍ତ ଅନୁଷ୍ଠିତ ହୁଏ । ଉଦ୍‌ଯାପନ ଦିବସ ଅର୍ଥାତ୍ ଆଶ୍ୱିନ ଶୁକ୍ଳ ଦଶମୀ 'ଦଶହରା' ବା 'ବିଜୟା' ନାମରେ ପାଳିତ ହୋଇଥାଏ ।

ଏହି ଶାରଦୀୟ ଉତ୍ସବ ନିମିତ୍ତ ଦେବୀଙ୍କର ମୃଣ୍ମୟ ମୂର୍ତ୍ତି ନିର୍ମାଣର କାର୍ଯ୍ୟ ଏକ ଶୁଭଦିନ ଦେଖି ଆରମ୍ଭ କରାଯାଏ । ପ୍ରାୟତଃ ଏହା ନନ୍ଦୋତ୍ସବ ଦିନ ନିକଟସ୍ଥ ଏକ ବିଲ୍ୱ କିମ୍ବା ଅଶ୍ୱତ୍ଥ

ବୃକ୍ଷମୂଳେ ଏକ ବିଶେଷ ପୂଜା କରିବା ପରେ ସେଠାରୁ ମାଟି ଆଣି ମୂର୍ତ୍ତିଗଢା କାର୍ଯ୍ୟ ଆରମ୍ଭ କରାଯାଇଥାଏ । ଖଡିଚଢା ଅମାବାସ୍ୟା ଦିନ ବିଧିମୁତାବକ ରଙ୍ଗଦେବା କାର୍ଯ୍ୟ ସମ୍ପନ୍ନ କରାଯାଏ । ମୂଳାଷ୍ଟମୀ ଦିନ ମା'ଙ୍କୁ ଆବାହନ କରି ପୀଠକୁ ଅଣାଯାଏ । ଏହାକୁ ଷୋଳପୂଜା ଘଟ କୁହାଯାଏ ।

ମହାଷଷ୍ଠୀ ସନ୍ଧ୍ୟାରେ ନିକଟସ୍ଥ ସେହି ବିଲ୍ୱବୃକ୍ଷ ମୂଳେ କଳ୍ପାରମ୍ଭ ଓ ବୋଧନ କରାଯାଏ । ବୋଧନ ଶବ୍ଦର ଅର୍ଥ ଜାଗରଣ । ସୂର୍ଯ୍ୟଙ୍କର ଦକ୍ଷିଣାୟନ ଗତିରେ ଦେବତାମାନେ ନିଦ୍ରିତ ଥାଆନ୍ତି । ତେଣୁ ଉତ୍ତରାୟଣ ଆରମ୍ଭରେ ପୂଜାପାର୍ବଣ ନିମନ୍ତେ ସେମାନଙ୍କୁ ଜାଗ୍ରତ କରିବାକୁ ପଡେ । ଏହି ବିଧିକୁ ଅଧିବାସ କୁହାଯାଏ । ଅଧିବାସ ପରେ ଦେବୀଙ୍କୁ ଆମନ୍ତ୍ରଣ କରି ଜଣାଇ ଦିଆଯାଏ ଯେ– କାଲି ମହାସପ୍ତମୀ ତିଥିରେ ଦେବୀଙ୍କର ମହାପୂଜା ଆରମ୍ଭ ହେବ । ଏଣୁ କୃପାକରି ପୂଜାରମ୍ଭ ସମୟରେ ସେ ଯେପରି ଅନୁଗ୍ରହ କରି ପୂଜା ଗ୍ରହଣ କରିବେ ।

ମହାସପ୍ତମୀ ଦିନ ପ୍ରାତଃକାଳରୁ ନବପତ୍ରିକାର ପ୍ରବେଶ, ସ୍ନାନ ଓ ସ୍ଥାପନା କରାଯାଇଥାଏ । ନବପତ୍ରିକାକୁ କଦଳୀବୋହୁ ବୋଲି ମଧ୍ୟ କୁହାଯାଏ । କାରଣ– ଏଥିରେ ଗୋଟିଏ କଦଳୀଗଛ, ଯୋଡାଏ ବେଲ ଓ ନଅଟି ଡାଳ ଯଥା: ସାରୁଗଛ (କାଳିକା), ହଳଦୀଗଛ (ଦୁର୍ଗା), ଜୟନ୍ତୀ ଡାଳ (କାର୍ତ୍ତିକ), ବେଲଡାଳ (ଶିବ), ଡାଳିମ୍ବଡାଳ (ରକ୍ତଦନ୍ତିକା), ଅଶୋକ ଡାଳ (ଶୋକରହିତ), ମାଣଡାଳ (ଚାମୁଣ୍ଡା), ଧାନଗଛ (ମହାଲକ୍ଷ୍ମୀ), ଅଁଳା ଡାଳ (ଧାତ୍ରୀ)କୁ ଏକାଠି ଗୁଡାଇ ରଖାଯାଏ । ପରେ ପରେ ବିଲ୍ୱଶାଖା ସହ ନବପତ୍ରିକାକୁ ନିକଟସ୍ଥ ନଈ ବା ପୋଖରୀରେ ସ୍ନାନ କରାଇ ସର୍ବାଙ୍ଗରେ ଶ୍ୱେତ ଅପରାଜିତା ଲଟା ଗୁଡାଇ ତାଙ୍କୁ ବାସନ୍ତୀ ରଙ୍ଗର ଲୁଗା ପିନ୍ଧାଇ ଦିଆଯାଏ । ମୁଣ୍ଡରେ ସିନ୍ଦୂର, ବେକରେ ମାଳି ପିନ୍ଧାଇ ଏହି ନବପତ୍ରିକାଙ୍କୁ ବେଲକାଠର ଆସନରେ ଦେବୀଙ୍କର ଦକ୍ଷିଣପାର୍ଶ୍ୱକୁ ସ୍ଥାପନା କରାଯାଏ । ତାହାପରେ ଆସମୁଦ୍ର–ହିମାଚଳରୁ ସଂଗୃହୀତ ନାନାପ୍ରକାର ଜଳ ଓ ମାଟି, ନାନା ସୁଗନ୍ଧ ଯୁକ୍ତ ଦ୍ରବ୍ୟ, ପଞ୍ଚଗବ୍ୟ ଓ ପଞ୍ଚାମୃତ ଦେଇ ବିଭିନ୍ନ ବାଦ୍ୟରୋଳ ମଧ୍ୟରେ ପ୍ରାୟ ୯୧ଟି ମନ୍ତ୍ରରେ ଦେବୀଙ୍କର ମହାସ୍ନାନ କରାଯାଇଥାଏ । ତତ୍ପରେ ମହାପୂଜାର ସଙ୍କଳ୍ପ, ଘଟସ୍ଥାପନା, ପ୍ରାଣପ୍ରତିଷ୍ଠା ଓ ଚକ୍ଷୁଦାନ କରି ଭକ୍ତି ସହକାରେ ଷୋଡଶ ଉପଚାର ଘେନି ଅନ୍ୟାନ୍ୟ ଦେବାଦେବୀଙ୍କ ସହ ଦୁର୍ଗାଙ୍କର ମହାପୂଜା କରାଯାଇଥାଏ । ପୁଷ୍ପାଞ୍ଜଳି, ସ୍ତବ ସ୍ତୋତ୍ର ପାଠ, ଭୋଗନୈବେଦ୍ୟ ନିବେଦନ କରି ଶଙ୍ଖ–ଘଣ୍ଟା ଆଦି ନାନାବାଦ୍ୟ ସହକାରେ ମହାସପ୍ତମୀ ପାଳିତ ହୁଏ ।

ମହାଷ୍ଟମୀରେ କେବଳ ପ୍ରାଣପ୍ରତିଷ୍ଠା, ଚକ୍ଷୁଦାନ ଓ ଆବାହନକୁ ଛାଡି ଅନ୍ୟ ସମସ୍ତ ପୂଜା ମହାସପ୍ତମୀ ପୂଜା ପରି ହୋଇଥାଏ । ଏହି ପୂଜାରେ ସର୍ବୋତଭାବ ମଣ୍ଡଳରେ ୯ଟି ଘଟ ସ୍ଥାପନ କରି ପ୍ରତ୍ୟେକ ଘଟ ନିକଟରେ ଗୋଟିଏ ଲେଖାଏଁ ଭିନ୍ନ ରଙ୍ଗର ପତାକା ଆରୋପଣ କରି ନବଘଟରେ ନବଶକ୍ତିଙ୍କର ଆବାହନ ଓ ପୂଜା କରାଯାଇଥାଏ । ଏହାପରେ ଚଉଷଠି ଯୋଗିନୀ ଓ ପରେ କୋଟି ଯୋଗିନୀ ପୂଜା ସମାପନ କରି ନବଘଟରେ ନବଦୁର୍ଗାଙ୍କର ପୂଜା କରାଯାଇଥାଏ । ସେମାନେ ହେଲେ ହଂସଚୂଡା, ଚତୁର୍ମୁଖୀ ବ୍ରହ୍ମାଣୀ, ବୃସାଚୂଡା, ତ୍ରିନୟନା ଶିବା, କୌମାରୀ, ବୈଷ୍ଣବୀ, ବାରାହୀ, ନରସିଂହୀ, ଇନ୍ଦ୍ରାଣୀ, ଚାମୁଣ୍ଡା ଏବଂ କାତ୍ୟାୟନୀ । ଏତଦ୍‌ବ୍ୟତୀତ ନବଘଟରେ ଜୟନ୍ତୀ, ମଙ୍ଗଳା, କାଳୀ, ଭଦ୍ରକାଳୀ, କପାଳିନୀ, ଦୁର୍ଗା, ଶିବା କ୍ଷମା, ଧାତ୍ରୀ, ସ୍ୱାହା ଓ ସ୍ୱଧା ଦେବୀଙ୍କର ପୂଜା କରାଯାଇଥାଏ । ତା'ପରେ ଦେବୀଙ୍କର ବିଭିନ୍ନ ଅସ୍ତ୍ର, ଭୂଷଣ, ସିଂହାସନ, ପଞ୍ଚବଟୁକ, କ୍ଷେତ୍ରପାଳ, ଭୈରବ ତଥା ଲୋକପାଳ ଗଣଙ୍କର ପୂଜା ବିଧିପୂର୍ବକ କରାଯାଇଥାଏ । କେତେକ ସ୍ଥାନରେ ଏହି ଅଷ୍ଟମୀ ପୂଜାରେ କୁମାରୀ ପୂଜା କରିବାର ବିଧାନ ମଧ୍ୟ ରହିଅଛି । ବଳିଦାନରେ ଏହି ପୂଜାର ସମାପ୍ତି ଘଟେ ।

ଅଷ୍ଟମୀ ତିଥିର ଶେଷ ୨୪ମିନିଟ୍ ଏବଂ ନବମୀ ତିଥିର ପ୍ରଥମ ୨୪ମିନିଟ୍, ଏହିପରି ମୋଟ ୪୮ମିନିଟ୍‌କୁ ନେଇ ସନ୍ଧିପୂଜାର ସମୟ ସ୍ଥିର କରାଯାଇଥାଏ । ଏହି ସମୟରେ ଚାମୁଣ୍ଡା ରୂପିଣୀ ଦୁର୍ଗାଙ୍କର ପୂଜା ହୁଏ । ନବମୀ ତିଥିରେ ବଳିଦାନର ବ୍ୟବସ୍ଥା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ନବମୀ ଦିନର ପୂଜା ପୂର୍ବରୀତିରେ କରାଯାଇଥାଏ । ପୂଜାପରେ ଜପ, ତପ ଏବଂ ହୋମ ଅନୁଷ୍ଠିତ ହୁଏ । ସର୍ବଶେଷରେ ଦକ୍ଷିଣା । ଏହି ଦକ୍ଷିଣା ବିଷୟରେ କୁହାଯାଇଛି ଯେ ପୁରୋହିତ–ପୂଜକଙ୍କୁ ଦକ୍ଷିଣା ପ୍ରଦାନରେ ଐଶ୍ୱର୍ଯ୍ୟ ପ୍ରାପ୍ତି ହୋଇଥାଏ । ତତ୍‌ପରେ ଅଚ୍ଛିଦ୍ରାବ ଧାରଣ, ଶାନ୍ତିକାରୀ ଗ୍ରହଣ ଏବଂ ଆୟୁବୃଦ୍ଧି କାମନାର ସୂତ୍ରବନ୍ଧନ ଓ ତିଳକଧାରଣ କରାଯାଇଥାଏ ।

ଦଶମୀରେ ଏକମାତ୍ର କାର୍ଯ୍ୟ ବିସର୍ଜନ । ଏହା ଦୀର୍ଘ ତିନିଦିନ ଧରି ପୂଜା ଆରାଧନାର ଉଦ୍‌ଯାପନୀ ଦିବସ । ଭବିଷ୍ୟପୁରାଣରେ ବର୍ଣ୍ଣନା କରାଯାଇଛି ଯେ ଏହି ବିସର୍ଜନ ପ୍ରାତଃକାଳରେ ସମାପିତ ହେବା ବିଧେୟ । ମାତ୍ର ପ୍ରାୟତଃ ପୂର୍ବାହ୍ନରେ ସଂକ୍ଷେପରେ ପୂଜା, ଶୀତଳଭୋଗ ଆଦି ନିବେଦନ କରି ଆରତୀ କରାଯାଏ । ଦେବୀ ବିସର୍ଜନ ପରେ ଶ୍ୱେତ ଅପରାଜିତା ଲତା ଦ୍ୱାରା ରକ୍ଷାବନ୍ଧନ ମଧ୍ୟ କରାଯାଇଥାଏ,

ତା'ପରେ ମୃଣ୍ମୟ ମୂର୍ତ୍ତିକୁ ଜଳସ୍ରୋତରେ ବିସର୍ଜନ ଦେଇ ଶାନ୍ତିଜଳ ଗ୍ରହଣ କରାଯାଏ ।

ସର୍ବଶେଷ ଉତ୍ସବଟି ହେଲା ବିଜୟା ଉତ୍ସବ ବା ଦଶହରା । ଆଶ୍ୱିନ ଶୁକ୍ଳ ଦଶମୀ ଦିନଟି ବିଜୟାଦଶମୀ ନାମରେ ଖ୍ୟାତ । ଏହି ଉତ୍ସବ ଏକ ମିଳନ ଉତ୍ସବ । ଆକୁମାରୀ ହିମାଚଳ କୋଟି ଜନ ପ୍ରାଣରେ ଏହି ଶବ୍ଦଟି ଏକ ପ୍ରକାର ହୃତ୍‌ସ୍ପନ୍ଦନ ତୋଳିଧରେ । ବାହାର ତଥା ଭିତରର ଶତ୍ରୁର ବିନାଶ କାମନା ନେଇ ପ୍ରତ୍ୟେକ ମନୁଷ୍ୟ ଏହି ଉତ୍ସବ ପାଳନ କରିବାକୁ ଆନ୍ତରିକ ଭାବେ ତତ୍ପର ହୋଇଉଠେ । କାମ୍ୟପୂଜାର ଅନୁଷ୍ଠାନ କରେ । ସବୁରି ମନରେ ଗୋଟିଏ ସ୍ମୃତି ପରିସ୍ଫୁଟ ହୋଇଉଠେ– 'ଯାଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା....' । ଏହି ଚିତ୍ର ସବୁରି ହୃଦୟକୁ ଭକ୍ତିରସାପ୍ଲୁତ କରେ । ଏହି ପୁଣ୍ୟତିଥିରେ ମହାପ୍ରଭୁ ଶ୍ରୀରାମଚନ୍ଦ୍ର ମହାପ୍ରତାପୀ ରାବଣକୁ ବିନାଶ କରି ଲଙ୍କା ବିଜୟୀ ହୋଇଥିଲେ । ଶ୍ରୀରାମଚନ୍ଦ୍ରଙ୍କର ଏହି ବିଜୟ ଉତ୍ସବ ହୋଇଥିବାରୁ ଏହାକୁ ବିଜୟା କୁହାଯାଏ ଏବଂ ଏହାକୁ ମହାପାର୍ବଣର ଦିବସ ରୂପେ ବିଚାର କରାଯାଏ । କ୍ଷତ୍ରିୟ ଧର୍ମର ଗୌରବର ପ୍ରତୀକ ହୋଇଥିବାରୁ ଏହି ଦଶହରା ଜନମାନସରେ ବୀରତ୍ୱର ପ୍ରେରଣା ତଥା ଶାଶ୍ୱତ ସ୍ଫୂର୍ତ୍ତିର ପ୍ରବାହ ଖେଳାଏ । ତେଣୁ ଏ ଦେଶର ବୀରବୃନ୍ଦ ଖଣ୍ଡାୟତ ସମ୍ପ୍ରଦାୟ ନିଜନିଜର ଅସ୍ତ୍ରଶସ୍ତ୍ର ପୂଜାକରି ଏହି ଦିନରେ ମାଆଙ୍କ ଠାରୁ ବରାଭୟ ଗ୍ରହଣ କରିଥାନ୍ତି । ଶତ୍ରୁ ଆକ୍ରମଣକୁ ପ୍ରତିହତ କରିବାର ଅକ୍ଷୟ କବଚ ଗ୍ରହଣ କରି ସେମାନେ ମହା ଉଲ୍ଲାସରେ ମାତି ଉଠନ୍ତି । କ୍ଷାଣୁତ୍ୱର ବିନାଶ ଘଟାଇ ଜାଗୃତି ମନ୍ତ୍ରରେ ଅସ୍ତ୍ରଶସ୍ତ୍ରର ଝଣଝଣ ଶବ୍ଦ ସହିତ ଏକାକାର ହୋଇ ମାତୃ ପୂଜା ଜନିତ ସିନ୍ଦୂର ଟିକା କପାଳରେ ଆଙ୍କି ଆପଣାକୁ ପୁଣ୍ୟଘେରରେ ସୁରକ୍ଷିତ ରଖିବାର ଗର୍ବରେ ସେମାନେ ନିଜକୁ ଗର୍ବିତ ମନେ କରନ୍ତି । ଆଜି ମଧ୍ୟ ଭାରତର ବହୁ ପ୍ରାନ୍ତରେ ରଙ୍ଗ-ସ୍ମୃତିର ପ୍ରତୀକ ରୂପେ ନବରାତ୍ର ପୂଜା ଅବସରରେ ରାମଲୀଳା ଅନୁଷ୍ଠିତ ହୁଏ । ଦଶହରାଦିନ ରାମଙ୍କର ଏକ ସୁସଜ୍ଜିତ ପ୍ରତିମୂର୍ତ୍ତି ବାହାର କରି ରାବଣର କୁଶ ପୁତ୍ତଳିକା ଦାହ କରାଯାଏ ।

ଶତ୍ରୁକୁ ପରାସ୍ତ କରିବାର ଏହି ମୁହୂର୍ତ୍ତ ଜ୍ୟୋତିଷମାନଙ୍କ ଜୁଣ୍ଡିରେ ଏକ ପୁଣ୍ୟତିଥି । ଏହି ତିଥିକୁ ବିଜୟର ପ୍ରତୀକ ରୂପେ ଗ୍ରହଣ କରିବାର ତାତ୍ପର୍ଯ୍ୟ ହେଉଛି– ଏହିଦିନ ଶ୍ରବଣା ନାମକ ନକ୍ଷତ୍ରରୁ ବିଜୟ ନାମକ କାଳ ଜନ୍ମନିଏ । ଏହି କାଳ ଅତି ପବିତ୍ର ଓ ସର୍ବସିଦ୍ଧିଯୁକ୍ତ ।

ଭଦଭଦଳିଆ ପକ୍ଷୀ ଏହି ବିଜୟା ଦଶମୀ ଦିବସରେ ଅତି ଶୁଭ । ଏହି ଦିନ ଶମୀବୃକ୍ଷର ପୂଜା ମଧ୍ୟ ଅଭୟ ଦାୟକ । ପାଣ୍ଡବମାନଙ୍କ ଅଜ୍ଞାତବାସ କାଳରେ ସେମାନେ ତାଙ୍କର ଅସ୍ତ୍ରଶସ୍ତ୍ର, ଅର୍ଜ୍ଜୁନଙ୍କ ଧନୁ ଶମୀ ବୃକ୍ଷର କୋଟରରେ ରଖିଥିଲେ । ଶମୀବୃକ୍ଷ ଦେବତାଙ୍କ ଭଳି ସେସବୁକୁ ସୁରକ୍ଷା ଦେଇପାରିଥିଲା । ପାଣ୍ଡବମାନେ ଏହି ଦଶହରା ତିଥିରେ ଶମୀବୃକ୍ଷର ପୂଜାର୍ଚ୍ଚନା କରି ନିଜର ଅସ୍ତ୍ରଶସ୍ତ୍ର ପୁନରୁଦ୍ଧାର କରିଥିଲେ । ସେହିଦିନଠାରୁ ମନୁଷ୍ୟ ଶମୀବୃକ୍ଷକୁ ଆମ ସଂସ୍କୃତି ଓ ପରମ୍ପରାର ପ୍ରତୀକ ରୂପେ ଗ୍ରହଣ କରି ଆସିଛି । ଜୀବନ ସଂଗ୍ରାମରେ ବିଜୟ ଲାଭ ନିମିତ୍ତ ଶମୀପତ୍ର ଦ୍ୱାରା ହୋମ ଓ ପୂଜା ଇତ୍ୟାଦିର ବ୍ୟବସ୍ଥା ମଧ୍ୟ ପ୍ରଚଳିତ ଅଛି । ଶମୀପୂଜା କରୁଥିବା ବ୍ୟକ୍ତିମାନେ ଶମୀବୃକ୍ଷ ପାଖରେ ପୂର୍ବଦିଗକୁ ମୁହଁ କରି ଧ୍ୟାନରତ ରହନ୍ତି । ଏହି ଧ୍ୟାନର ଉଦ୍ଦେଶ୍ୟ ହେଲା– 'ହେ ଶମୀ! ତୁମେ ସର୍ବ ପାପ ବିନାଶକ । ସର୍ବଶତ୍ରୁ ବିନାଶକ ତୁମେ ହିଁ ଭଗବାନ ରାମଚନ୍ଦ୍ରଙ୍କୁ ବିଜୟୀ ହେବାର ଭବିଷ୍ୟତବାଣୀ ଶୁଣାଇଥିଲ ଏବଂ ତୁମେ ହିଁ ପାଣ୍ଡବମାନଙ୍କର ଧନୁର ଆଦି ସକଳ ଅସ୍ତ୍ରଶସ୍ତ୍ର ଯତ୍ନରେ ସାଇତି ରଖିଥିଲ । ତୁମଠାରେ ଆମେ କୃତଜ୍ଞ । ତୁମେ ଆମର ରକ୍ଷା କବଚ ହୁଅ'' ।

ତିନି ଦିନର ପୂଜାପରେ ଏହି ପବିତ୍ର ଦଶମୀ ତିଥିରେ 'ଗଚ୍ଛଂ ଦେବୀ ମମାନ୍ତରମ୍...' କହି ନିଜ ନିଜ ଅନ୍ତର ମଧ୍ୟରେ ମହାଦେବୀଙ୍କୁ ଆହ୍ୱାନ କରି ଭକ୍ତଗଣ ପରମ ତୃପ୍ତି ଲାଭ କରିଥାନ୍ତି । ଏହି ଆନନ୍ଦର ବହିଃ ପ୍ରକାଶ ରୂପେ ତାଙ୍କ ଚତୁଃପାର୍ଶ୍ୱସ୍ଥ ଅନ୍ୟ ସମସ୍ତଙ୍କୁ ସେହି ଜଗନ୍ନାଥଙ୍କର ସନ୍ତାନ ରୂପେ ଆଲିଙ୍ଗନ କରିଥାନ୍ତି ଓ ଗୁରୁଜନଙ୍କ ଠାରୁ ଆଶୀର୍ବାଦ ଭିକ୍ଷା କରନ୍ତି ।

ଏହି ଶାରଦୀୟ ଦୁର୍ଗୋତ୍ସବ ଓ ଦଶହରା ବାସ୍ତବିକ ଭାଇଚାରାର ବନ୍ଧନ, ଏକତାର ପ୍ରତୀକ, ସଂହତିର ସମାବେଶ ମିଳନର ପର୍ବ ଏବଂ ମହାନନ୍ଦର ମହୋତ୍ସବ । ଯୁଗେ ଯୁଗେ ଏହି ଉତ୍ସବ ପ୍ରତ୍ୟେକ ମନୁଷ୍ୟକୁ ଆଗକୁ ଅଗ୍ରସର ହେବାକୁ ପ୍ରେରଣା ଦେଉ । ସମସ୍ତଙ୍କ ଉପରେ ମା'ର ଆଶୀଷ ଓ କରୁଣାର ବାରି ଝରଝର ଝରୁଥାଉ ।

ପ୍ରାଧ୍ୟାପିକା,
ବିଜେବି (ସ୍ୱୟଂଶାସିତ) ମହାବିଦ୍ୟାଳୟ
ଭୁବନେଶ୍ୱର



# ଗଣଜୀବନର ଭାଷ୍ୟକାର- ବୈଷ୍ଣବ ପାଣି

ବିଶ୍ୱେଶ୍ୱର ମହାନ୍ତି

ଗୀତିନାଟ୍ୟ, ଗୀତାଭିନୟ ଓ 'ଯାତ୍ରା' ଜଗତର ପଥିକୃତ ସ୍ରଷ୍ଟା ଥିଲେ ଗଣକବି ବୈଷ୍ଣବ ପାଣି । ୧୮୮୨ ମସିହା ପବିତ୍ର କୁମାର ପୂର୍ଣ୍ଣିମା ଦିନ କଟକ ଜିଲ୍ଲାର ମାହାଙ୍ଗା ଥାନା ଅନ୍ତର୍ଗତ ସ୍ୱରୂପା ବିରୂପାର ତଟଦେଶ 'କୋଠପଦା' ଗ୍ରାମରେ ଜନ୍ମ ହୋଇଥିବା ଏହି କାଳଜୟୀ ପ୍ରତିଭା ଯେ ଦିନେ ସ୍ୱକୀୟ ପ୍ରତିଭାର ଆଭା ଓ ବିଭାରେ ସାହିତ୍ୟ କାନନକୁ ସୁରଭିତ କରିବ- ଏକଥା କିଏ ଜାଣିଥିଲା ? ଦାରିଦ୍ର୍ୟ ନୀପିଡିତ ଜୀବନରେ କୋଠପଦା ମଠ ମହନ୍ତଙ୍କ ରଘୁନାଥ ମଠରେ ଫୁଲତୋଳା, ଗାଈ ଜଗୁଆଳ, ନିକଟସ୍ଥ ମାଇନର ସ୍କୁଲରେ ରୋଷେୟା ଭାବେ କାମ କରି ଜୀବନ ବଞ୍ଚୁଥିବା ବୈଷ୍ଣବଙ୍କ ସଂଗୀତ, ନୃତ୍ୟ ପ୍ରତି ଅସରନ୍ତି ସରାଗ ଦେଖି ତତ୍କାଳୀନ ମଠ ମହନ୍ତ ରଘୁନାଥପୁରୀ ଗୋସ୍ୱାମୀ ତାଙ୍କ ଯାତ୍ରା ଦଳରେ 'ଗୋଟିପୁଅ' ନାଚରେ ପ୍ରବେଶ କରାଇଥିଲେ । ଏହିଠାରୁ ବୈଷ୍ଣବ ପାଣିଙ୍କ ନୃତ୍ୟସଙ୍ଗୀତ ଜୀବନର ମୂଳଦୁଆ ପଡିଲା । ବିନା ଗୁରୁରେ ସେ ପାଲା ଗାୟକ ହୋଇଥିଲେ ।



ମା' ସାରଳାଙ୍କ କୃପାରୁ କବି ସାରଳା ଦାସ, ରାମତାରକ ମନ୍ତ୍ର ପରସାଦରୁ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ କବିତ୍ୱପ୍ରାପ୍ତ ହେବାପରି ମାହାଙ୍ଗା ନିକଟସ୍ଥ ଶ୍ରୀ ଶ୍ରୀ ବିନୋଦ ବିହାରୀଙ୍କ କୃପାରୁ ବୈଷ୍ଣବ ପାଣି କବିତ୍ୱ ପ୍ରାପ୍ତ ହୋଇ ୨୧ ବର୍ଷ ବୟସରେ 'ମାଳିହତା' ଶ୍ମଶାନର କଦମ୍ବ ବୃକ୍ଷମୂଳେ ସୃଷ୍ଟିକଲେ ନିଜସ୍ୱ ସୃଷ୍ଟିର ପ୍ରଥମ କଦମ୍ବ ଫୁଲ 'ମେଘନାଦ ବଧ' । ସେହିଦିନଠାରୁ ତାଙ୍କ ଲେଖନୀ ସୃଷ୍ଟିକରି ଚାଲିଲା ଶତାଧିକ ଗୀତିନାଟ୍ୟ, ଫାର୍ସ, କାବ୍ୟ, ଉପନ୍ୟାସ, କାହାଣୀ, ସଙ୍ଗୀତ, ଭଜନ, ଜଣାଣ, ଚଉତିଶା ପ୍ରଭୃତି । ଏସବୁ ମଧ୍ୟରେ ଦୁଃଖିନୀ ଗୋବର ଗୋଟେଇ, ସ୍ୱାମୀ ସ୍ତ୍ରୀ, ଶ୍ରୀମନ୍ଦିରରେ ହରିଜନ ପ୍ରବେଶ, ଜାତୀୟ ଗୀତିକା ପ୍ରଭୃତି ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ । ତାଙ୍କର ଆମ୍ବ କାହାଣୀ ଅନନ୍ୟତା ଦାବି କରେ । ଅତି ନିଛକ, ପ୍ରାଣ ଖୋଲା ଭାଷାରେ, ଅକପଟ ଭାବରେ ଏହାକୁ ସେ ସମର୍ପଣ କରିଯାଇଛନ୍ତି । ନିଜ କଳାକାର ଜୀବନର ଅନ୍ଧକାର ଦିଗକୁ ଉନ୍ମୋଚିତ କରି ସେ ଆମ ପାଇଁ ଉଦାହରଣ ପାଲଟି ଯାଇଛନ୍ତି । ରକ୍ଷଣଶୀଳତାର ଯୁଗରେ ସେ ନାରୀ ଶିକ୍ଷା ପାଇଁ ସ୍ୱର ଉତ୍ତୋଳନ କରିଛନ୍ତି । ଗାନ୍ଧୀବାଦୀ ଦୃଷ୍ଟିକୋଣ ତଥା ମହାତ୍ମା ଗାନ୍ଧୀଙ୍କ ବ୍ୟକ୍ତିତ୍ୱ ପ୍ରତି ତାଙ୍କର ଆକର୍ଷଣ ଗୀତିନାଟ୍ୟରେ ଫୁଟାଇଛନ୍ତି । ଅନ୍ଧବିଶ୍ୱାସ, କୁସଂସ୍କାର ଲୋପ କରିବା ପାଇଁ ସେ ସଂସ୍କାରକର ଭୂମିକା ନିଭାଇଛନ୍ତି । ସାମାଜିକ ବିଷମତା ବିରୋଧରେ ସେ ସ୍ୱର ଉତ୍ତୋଳନ କରିବାକୁ ପଛେଇ ଯାଇନାହାଁନ୍ତି । ସ୍ୱଦେଶ ପ୍ରୀତି ସତ୍ୟାଗ୍ରହ, ସ୍ୱାବଲମ୍ବନ ତଥା ସାମାଜିକ ସମତା ପାଇଁ ତାଙ୍କ ଲେଖନୀ ବେଶ୍ ଶକ୍ତିଶାଳୀ ହୋଇଉଠିଛି ।

ବୈଷ୍ଣବ ପାଣି କେବଳ ରାମାୟଣ, ମହାଭାରତ, ହରିବଂଶ, ଭାଗବତର ବିଷୟକୁ ନେଇ ଗୀତିନାଟ୍ୟମାନ ରଚନା କରିନାହାଁନ୍ତି, ଐତିହାସିକ ଘଟଣାବଳୀ, କାଳ୍ପନିକ କାହାଣୀ ତଥା ସାମାଜିକ ଘଟଣାବଳୀକୁ ଆଧାର କରି ତାଙ୍କ ଗୀତିନାଟ୍ୟ ମଧ୍ୟ ପରିପୁଷ୍ଟ ହୋଇଛି । ତାଙ୍କ ଗୀତିନାଟ୍ୟର ଭାଷା, ଶୈଳୀ, ଭାବାନୁସାରୀ ଛନ୍ଦ ତଥା ରାଗରାଗିଣୀ ପ୍ରତ୍ୟେକଟି ବିଭାଗ ବେଶ୍ ମନଛୁଆଁ ହୋଇଥିବାରୁ ତାହା ପ୍ରତ୍ୟେକ ଶ୍ରେଣୀର ଦର୍ଶକ ଓ ଶ୍ରୋତାଙ୍କୁ

ଆକର୍ଷିତ କରି ରଖିଥିଲା । ଗ୍ରାମୀଣ ଭାଷା ଓ ସାଧୁଭାଷାର ସଂଯୋଜନା କରି ସେ ଗୀତିନାଟ୍ୟର ଦ୍ରୋଣାଚାର୍ଯ୍ୟ ହୋଇପାରିଛନ୍ତି । ସେ ଥିଲେ ସାମାଜିକ ଜୀବନର ଅଦୃଶ୍ୟ ଭାଷ୍ୟକାର ।

ତାଙ୍କ ଗୀତିନାଟ୍ୟରେ ସଂଗୀତକୁ ସେ ଯଥେଷ୍ଟ ଗୁରୁତ୍ୱ ଦେଇଥିଲେ । ପାତ୍ରପାତ୍ରୀମାନଙ୍କ ମୁଖରେ ଭାବାନୁସାରୀ ସ୍ୱର ତାଳ ଲୟ ସମ୍ବଳିତ ସଂଗୀତ ପ୍ରଦାନ କରି ନିଜର ସିଦ୍ଧହସ୍ତତାର ପରିଚୟ ସେ ଦେଇଛନ୍ତି । ସାମାନ୍ୟ କେଇଖଣ୍ଡ ବାଦ୍ୟଯନ୍ତ୍ରକୁ ସମ୍ବଳକରି ସେ ଶହ ଶହ ରସପିପାସୁ ଦର୍ଶକଙ୍କ ମନର ରସକଦମ୍ବରେ ଶିହରଣ ସୃଷ୍ଟି କରିପାରିଥିଲେ । ନବରସର ପରିବେଷଣରେ ତାଙ୍କ ଗୀତିନାଟ୍ୟ ରସାଣିତ । କରୁଣ, ହାସ୍ୟ, ବୀରରସର ପ୍ରାବଲ୍ୟରେ ଗୀତିନାଟ୍ୟ ବେଶ୍ ରସସିକ୍ତ ହୋଇପାରିଛି । ଯେମିତି– 'ଦୁଃଖୀ ଧନ ନୀଳମଣିରେ', ବାଃ ବାଃ ବାଃରେ କାଞ୍ଜି', 'କାନ୍ଦିଲେ କି ହେବ କରୀନ୍ଦ୍ର ଗମନା ଇନ୍ଦ୍ରକି ସହଜେ ଛାଡିବ' ଇତ୍ୟାଦି । ହାସ୍ୟରସର ପରିବେଷଣରେ ମଧ୍ୟ ପାଣିକବି ହସେଇ ହସେଇ ବେଦମ୍ କରି ଦେଇପାରିଛନ୍ତି ଦର୍ଶକ ସମାଜକୁ । ସଂସ୍କାରକର ଭୂମିକା ନେଇ ସେ ତାଙ୍କ ଗୀତିନାଟ୍ୟମାନଙ୍କରେ ନଟନଟୀ, ବିଦୂଷକ, ଦୂତ, ଡଗର ମାଧ୍ୟମରେ ସଫଳ ଚେତାବନୀମୂଳକ ସଂଗୀତ ଦେଇଛନ୍ତି । ସୂତ୍ରଧର ଭୂମିକା ନେଇଛନ୍ତି କବି । ଯାହା ସାଧାରଣ ଚରିତ୍ରଟିଏ ମୁହଁ ଖୋଲି କହିବାକୁ ଅକ୍ଷମ, ସେଠାରେ ଏଇ ନିୟତିସୁଲଭ ଚରିତ୍ରମାନେ ବାବଦୂକ ହୋଇଉଠନ୍ତି ଓ ବ୍ୟଙ୍ଗବିଦ୍ରୁପ ମାଧ୍ୟମରେ ସମାଜକୁ ଅଙ୍ଗୁଳି ନିର୍ଦ୍ଦେଶ କରିଥାନ୍ତି ।

ବୈଷ୍ଣବ ପାଣିଙ୍କ ସାରସ୍ୱତ ଦିଗନ୍ତର ଅନ୍ୟ ଏକ ଉଜ୍ଜ୍ୱଳ ସାରଣୀ ହେଉଛି ତାଙ୍କ ଭଜନ, ଜଣାଣ ଓ ଚଉତିଶା ରଚନା । ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଥିବା ଆବେଗାତ୍ମକ ସମ୍ପର୍କ ତାଙ୍କ ରଚିତ ଶତାଧିକ ଭଜନ ଜଣାଣରେ ସରଳ, ସାବଲୀଳ ତଥା ଛନ୍ଦାୟିତ ଶବ୍ଦକେଳୀରେ କଲ୍ଲୋଳିତ । ଏବେ ବି ତାଙ୍କ ରଚିତ ଭଜନ ଜଣାଣଗୁଡିକ ବେଶ୍ ଚର୍ଚ୍ଚିତ । 'ତୋତେ ଡାକିବି କହ କେଉଁନାମରେ', ଛାଡ ମାଡଖିଆ ବୁଦ୍ଧି ହେ', 'ଜୟ ଜାନକୀ ଜୀବନ ହେ', 'ଭାତବିକା ଜଗନ୍ନାଥ ଚାତର ସରିବ ହେ', 'ଅଘାତାଳୁ ଭଙ୍ଗା ଗାଇଜମା ଦହିଚୋର ହେ' ଇତ୍ୟାଦି ଭଜନଗୁଡିକରେ ଆତ୍ମସମର୍ପଣ ଭାବ ବେଶ୍ ବାରି ହୋଇପଡେ । ଭଜନ ଜଣାଣ ଭିତରେ ସେ ଜଗନ୍ନାଥଙ୍କୁ କେଉଁଠି ଗାଳି ତ କେଉଁଠି ପରିହାସ, ଦାସ୍ୟଲ୍ୟ, ଅଭିମାନ, ଦୈନ୍ୟଭାବରେ ସମ୍ବୋଧନ କରିବାକୁ ପଛେଇ ଯାଇନାହାନ୍ତି । ଏସବୁର ଊର୍ଦ୍ଧ୍ୱରେ ସେ ଥିଲେ ଜଗନ୍ନାଥଙ୍କର ଜଣେ ବିନୀତ ଭକ୍ତ, ବିଭିନ୍ନ ଯମକ, ଛନ୍ଦ ଓ ସରଳ ସୁଲଳିତ ଶବ୍ଦ ଯୋଜନା ବିଶେଷକରି ପ୍ରାଚୀନ ରାଗରାଗିଣୀର ମନଜିଣା ଓ ମନକିଣା ସ୍ୱରରେ ତାଙ୍କ ଭଜନ, ଜଣାଣ ତଥା ସୃଷ୍ଟି ସମ୍ଭାରଗୁଡିକ କାଳଜୟୀ ତଥା କଳାଜୟୀ ହୋଇପାରିଛି ।

ସାହିତ୍ୟ ସେତିକିବେଳେ ଉନ୍ନତ ବୋଲି ବିବେଚିତ ହୁଏ, ଯେତେବେଳେ ସେ ଯୁଗ ଚେତନା ସହିତ ଗଣମାନସକୁ ନିବିଡ ଭାବରେ ଧରି ରଖିବାର ସାମର୍ଥ୍ୟ ରଖେ । ସେହି ଦୃଷ୍ଟିରୁ ବିଚାର କଲେ ବାଣୀସେବି ପାଣିକବି ନିଜ ସମୟର ପ୍ରତିଭୂ । ସରଳ ତରଳ ମନଛୁଆଁ ଭାଷା ଓ ଭାବକୁ ନେଇ ସେ ଯେଉଁ ଗୀତିନାଟ୍ୟ, ସୁଆଙ୍ଗ ଗୀତାଭିନୟମାନ ରଚନା କରିଛନ୍ତି, ସେଥିରେ ସାମାଜିକ ମୂଲ୍ୟବୋଧର ସ୍ୱର ସୁସ୍ପଷ୍ଟ । ଜୀବନର ଘାତ ପ୍ରତିଘାତ ତାଙ୍କ ଲେଖନୀକୁ ଶାଣିତ କରିଛି । ଦୁଃଖ ଦାରିଦ୍ର୍ୟର ବହ୍ନି–ବଳୟ ଭିତରେ ସତତ ଦଗ୍ଧିଭୂତ ହୋଇ ସେ ଓଡ଼ିଶାର ଯାତ୍ରା ପରମ୍ପରାକୁ ନିଜ ପ୍ରତିଭା ବଳରେ ପ୍ରତିଷ୍ଠା ଦେଇଛନ୍ତି । ଯଥାର୍ଥରେ ସେ ଥିଲେ ଗଣଜୀବନର ଭାଷ୍ୟକାର ।

ସାହାପୁର, କୁମୁଡା ଜୟପୁର
ମାହାଙ୍ଗା, କଟକ



# ଓଡ଼ିଶା- ଉପାସିତା-ସପ୍ତମାତୃକା

**ସନ୍ଧ୍ୟା ମହାନ୍ତି**

ତନ୍ତ୍ର-ମନ୍ତ୍ରର ରାଜ୍ୟ କହିଲେ ପୂର୍ବେ ଓଡ଼ିଶାକୁ ହିଁ ବୁଝାଉଥିଲା । ଏଠାରେ ଥିବା ତନ୍ତ୍ରପୀଠ ତଥା ମନ୍ଦିରଗୁଡ଼ିକୁ ଦେଖି କୁହାଯାଏ ଅଷ୍ଟମ ଶତାବ୍ଦୀ ତନ୍ତ୍ରର ସ୍ୱର୍ଣ୍ଣ ଯୁଗ ଥିଲା । ମାତ୍ର ପରବର୍ତ୍ତୀ କାଳରେ ନାନା ପ୍ରକାର ଭ୍ରଷ୍ଟାଚାର ପ୍ରବେଶରେ ଏ ସ୍ଥାନରୁ ତନ୍ତ୍ର ଉପାସନା ଲୋପ ପାଇଗଲା ।

କିନ୍ତୁ ମହାନିର୍ବାଣ ତନ୍ତ୍ରରୁ ସ୍ପଷ୍ଟ ହୁଏ- କଳି ଯୁଗରେ ତାନ୍ତ୍ରିକ ଉପାସନାରେ ଯେଉଁ ଫଳ ମିଳିଥାଏ, ତାହା ବୈଦିକ ଉପାସନାରେ ମିଳିବା ଦୂରୁହ । ଏହି ମହାନିର୍ବାଣ ତନ୍ତ୍ରରେ ସ୍ୱୟଂ ଶିବ କହନ୍ତି- କଲୌ ତନ୍ତୋଦିତା ମନ୍ତ୍ରାଃ ସିଦ୍ଧାସ୍ତୁର୍ଣ୍ଣ ଫଳପ୍ରଦା.... ତେଣୁ କଳି ଯୁଗରେ ତନ୍ତ୍ରୋକ୍ତ ମନ୍ତ୍ର ସମୂହ ସିଦ୍ଧ, ନିତ୍ୟ ଫଳପ୍ରଦ- ଜପ, ଯଜ୍ଞ, ସମସ୍ତ କ୍ରିୟାନୁଷ୍ଠାନ ପକ୍ଷେ ପ୍ରଶସ୍ତ । କଳିଯୁଗରେ ବୈଦିକ ମନ୍ତ୍ର ସବୁ ବିଷହୀନ ସର୍ପଭଳି ନିବୀର୍ଯ୍ୟ । ସତ୍ୟ ଯୁଗ, ତ୍ରେତୟା ଯୁଗ ଏବଂ ଦ୍ୱାପର ଯୁଗରେ ଯେଉଁ ସବୁ ବୈଦିକ ମନ୍ତ୍ର ସଫଳ ହେଉଥିଲା, ତାହା ବର୍ତ୍ତମାନ ସଂପୂର୍ଣ୍ଣ କ୍ରିୟାହୀନ ।

କୁମାରୀ, ମାତୃକା, ଯୋଗିନୀ ପ୍ରଭୃତି ଦେବୀଙ୍କର ଉପାସନା କରି ଉତ୍କଳୀୟ ସମସ୍ତ କାର୍ଯ୍ୟରେ ଅଗ୍ରଣୀ ଥିଲେ ।

ସପ୍ତମାତୃକା ହେଲେ ବ୍ରାହ୍ମୀ, ମାହେଶ୍ୱରୀ, କୌମାରୀ, ବୈଷ୍ଣବୀ, ବାରାହୀ, ଐନ୍ଦ୍ରୀକା ବା ଇନ୍ଦ୍ରାଣୀ ଏବଂ ସର୍ବଶେଷରେ ଚାମୁଣ୍ଡାଙ୍କୁ କୁହାଯାଏ ।

ଅମରକୋଷରେ ଲିଖିତ-

ବ୍ରାହ୍ମୀ ଚ ବୈଷ୍ଣବୀ ଚୈନ୍ଦ୍ରୀ ରୋଦ୍ରୀ ଚ ବରାହୀ ତଥା
କୌବରୀ ଚୈବ କୌମାରୀ ମାତରଃ ସପ୍ତକୀର୍ତ୍ତିତାଃ ।।

ଅବଶ୍ୟ ଓଡ଼ିଶାରେ ଆରାଧିତା ସପ୍ତମାତୃକାଙ୍କର ସାମାନ୍ୟ ପାର୍ଥକ୍ୟ ରହିଛି, ଅମରକୋଷରେ ଲିଖିତ ସପ୍ତମାତୃକା ନାମଠାରୁ । ଓଡ଼ିଶାରେ ଆରାଧିତା ସପ୍ତମାତୃକାଙ୍କ ମଧ୍ୟରେ କୌବେରୀ କେଉଁଠାରେ ପରିଦୃଷ୍ଟ ହୁଅନ୍ତିନାହିଁ ।

ଅଦ୍ୟାବଧି ଓଡ଼ିଶାର ପୁରୀ, ଯାଜପୁର, ଖିଚିଂ, ଶେରଗଡ଼, ବେଲଖଣ୍ଡି, ଭଦ୍ରକ, ଭୁବନେଶ୍ୱର ଆଦି ସ୍ଥାନରେ ସପ୍ତମାତୃକା କିମ୍ବା କେତୋଟି ମାତୃକା ରହି ପୂଜା ପାଉଛନ୍ତି ।

**ପ୍ରଥମତଃ ବ୍ରାହ୍ମୀ**

ସପ୍ତଶତୀ ଚଣ୍ଡୀରେ ବ୍ରାହ୍ମୀଙ୍କ ରୂପ ଏହିପରି ବର୍ଣ୍ଣିତ-

ହଂସ ଯୁକ୍ତ ବିମାନାଗ୍ରେ ସାକ୍ଷ ସୂତ୍ର କମଣ୍ଡଳୁଃ
ଆୟଣ ବ୍ରହ୍ମଣଃ ଶକ୍ତିଃ ବ୍ରହ୍ମାଣୀଚାଭିଧୀୟତେ

ହଂସ ଯୁକ୍ତ ବିମାନ ଆରୋହଣ କରି ଜପାମାଳୀ ହସ୍ତରେ ଧାରଣ କରି ବ୍ରହ୍ମାଙ୍କ ଶକ୍ତି ବ୍ରହ୍ମାଣୀ ଆଗମନ କଲେ । ଅଂଶୁମଦ୍‌ଭେଦାଗମ୍ ଶାସ୍ତ୍ରରେ ବ୍ରହ୍ମାଣୀଙ୍କର ଚାରିଗୋଟି ମସ୍ତକ, ଚାରିଗୋଟି ହସ୍ତ ଏବଂ ସେ ରକ୍ତପଦ୍ମ ଉପରେ ଉପବେଶନ କରିଛନ୍ତି । ଏହି ଦେବୀଙ୍କର ବାହନ ହଂସ ଦେବୀ ପୀତାମ୍ବର ପରିହିତା ହୋଇ ଜଟା, ମୁକୁଟ ମଣ୍ଡିତା ହୋଇଛନ୍ତି । ତାଙ୍କର ଦକ୍ଷିଣ କର ଦ୍ୱୟରେ ଶୂଳ ଓ ଅଭୟ ମୁଦ୍ରା ଏବଂ ବାମ କର ଦ୍ୱୟରେ ଅକ୍ଷମାଳା ଓ ବରମୁଦ୍ରା ଶୋଭିତା ହୋଇଛନ୍ତି ।

ପୁରୀର ସପ୍ତମାତୃକାଙ୍କ ମଧ୍ୟରେ ବ୍ରହ୍ମାଣୀଙ୍କର ତିନୋଟି ମସ୍ତକ ଥିବା ଦେଖାଯାଏ । ଯଦି ଚତୁର୍ବେଦ ନ ହୋଇ ବେଦ ତ୍ରୟୀ ବୋଲି ଧରାଯାଏ, ତେବେ ବ୍ରହ୍ମାଙ୍କର ତିନୋଟି ମସ୍ତକ ରହିବା ମଧ୍ୟ ଯଥାର୍ଥ । ସେଥିପାଇଁ ସମ୍ଭବତଃ ପୁରୀର ବ୍ରାହ୍ମୀ ତିନୋଟି ମସ୍ତକ ବିଶିଷ୍ଟା ।

ଏହି ବ୍ରାହ୍ମୀ, ବ୍ରହ୍ମାଙ୍କର ମୂଳ ଶକ୍ତି ହୋଇଥିବାରୁ ସେ ନାଦ ଓ ଶବ୍ଦ ରୂପିଣୀ । ବ୍ରାହ୍ମୀ ହଂସ ସମାରୂଢ଼ା । ହଂସ ହିଁ ଅହଂସ:

ସୋଽହଂ । ଏହା ବ୍ରହ୍ମୈକାତ୍ମକ ଜ୍ଞାନ ସ୍ୱରୂପ । ଏହି ଜ୍ଞାନ ଶିଖରରେ କାଳବ୍ରହ୍ମ ବିରାଜମାନ । ବ୍ରାହ୍ମୀଙ୍କ ହସ୍ତରେ ଅକ୍ଷମାଳା, କମଣ୍ଡଳୁ ଅକ୍ଷମାଳା, ମନ୍ତ୍ରଶକ୍ତିର ପ୍ରକାଶ ଏବଂ କମଣ୍ଡଳୁ ଅମୃତବାରିରେ ପରିପୂର୍ଣ୍ଣ । ମନ୍ତ୍ରଶକ୍ତି ଓ ଅମୃତ ପ୍ରଭାବରେ ସେ ଯେଉଁ ଭଳି ଭକ୍ତଙ୍କୁ ରକ୍ଷା କରିଥାନ୍ତି ଠିକ୍ ସେହିଭଳି ଭକ୍ତିହୀନ ବା ନାସ୍ତିକଙ୍କ ଚିତ୍ତରେ ଅମୃତ ବାରି ସିଞ୍ଚନ କରି ଭକ୍ତିଭାବ ହୃଦୟରେ ଜାଗ୍ରତ କରାଇଥାନ୍ତି ।

### ଦ୍ୱିତୀୟରେ ମାହେଶ୍ୱରୀ

ମାହେଶ୍ୱରୀ ହିଁ ମହେଶ୍ୱର ବା ରୁଦ୍ରଙ୍କର ଶକ୍ତି । ଚଣ୍ଡୀରେ ଉଲ୍ଲିଖିତ- ମାହେଶ୍ୱରୀ ବୃଷାରୂଢ଼ା ତ୍ରିଶୂଳ ବରଧାରିଣୀ ।

ମହାବଳୟପ୍ରାପ୍ତା ଚନ୍ଦ୍ରରେଖା ବିଭୂଷଣା । (ଚଣ୍ଡୀ- ୮/୧୭) ମାହେଶ୍ୱରୀ ବୃଷଭ ଉପରେ ଆରୋହଣ କରି ତ୍ରିଶୂଳ ବରମୁଦ୍ରା ହସ୍ତରେ ବିରାଜମାନ କଲେ । ତାଙ୍କର ହସ୍ତରେ ବଳୟରୂପେ ମହାନାଗ ମସ୍ତକରେ ଅର୍ଦ୍ଧଚନ୍ଦ୍ର ଶୋଭିତ ଥାଏ । ମାତ୍ର ଅନ୍ୟତମ ଆଗମ ଶାସ୍ତ୍ର 'ଅଂଶୁମଦ୍‌ଭେଦାଗମ୍'ରେ ମାହେଶ୍ୱରୀ ଚତୁର୍ଭୁଜା, ତ୍ରିନେତ୍ରା ଏବଂ ତାଙ୍କର ଚାରିଗୋଟି ହସ୍ତରେ ଯଥାକ୍ରମେ ଶୂଳ, ଜପମାଳା, ବରମୁଦ୍ରା ଓ ଅଭୟମୁଦ୍ରା ରହିଛି । ମସ୍ତକରେ ଜଟାମୁକୁଟ । ଅଂଶୁମଦ୍‌ଭେଦାଗମ୍‌ରେ ଏହିପରି ବର୍ଣ୍ଣିତ-

ଚତୁର୍ଭୁଜା ତ୍ରିନେତ୍ରାଚ ଅତିରିକ୍ତ ସମପ୍ରଭା
ଶୂଳା ଭୟଙ୍କର ସର୍ବୋ ବାମେ ବରଦ ସଂଯୁତା
ଜପାମାଳା ସମାଯୁକ୍ତା ଜଟା ମୁକୁଟ ସଂଯୁତା
ଈଶ୍ୱରେଣୋପମା ହ୍ୟେଷା ଶିବା ମାହେଶ୍ୱରୀ ସ୍ମୃତା ।

ଯାଜପୁରର ଦଶାଶ୍ୱମେଧ ଘାଟରେ ସପ୍ତମାତୃକାଙ୍କ ମଧ୍ୟରେ ମାହେଶ୍ୱରୀ ପ୍ରଥମ ମାତୃକା । ତାଙ୍କର ବାହନ ବୃଷଭ ଏବଂ ବାମ ଊର୍ଦ୍ଧ୍ୱହସ୍ତରେ ତ୍ରିଶୂଳ ଓ ନିମ୍ନରେ ତାଙ୍କର ସନ୍ତାନ ଅଛି । ଦକ୍ଷିଣ କର ଊର୍ଦ୍ଧ୍ୱହସ୍ତରେ ଜପାମାଳା ଏବଂ ଅଧଃହସ୍ତରେ ଅଭୟମୁଦ୍ରା । ଏହି ମୂର୍ତ୍ତି ସହିତ ଅଂଶୁମଦ୍‌ଭଦାଗମର ଧ୍ୟାନର ପ୍ରାୟ ମେଳ ରହୁଛି । ମାତ୍ର ବିଷ୍ଣୁଧର୍ମୋତ୍ତର ଅନୁଯାୟୀ ମାହେଶ୍ୱରୀ ପଞ୍ଚବକ୍ତ୍ରା । ସେହିଭଳି ଷଡ଼ଭୁଜା । ସେ ତ୍ରିଲୋଚନା ଏବଂ ଶୁକ୍ଳବର୍ଣ୍ଣା । ତାଙ୍କର ଷଡ଼ଭୁଜରେ ବରଦ, ଅକ୍ଷମାଳା, ଡମ୍ବରୁ ତ୍ରିଶୂଳ, ଘଣ୍ଟା ଓ ଅଭୟମୁଦ୍ରା । ଶାସ୍ତ୍ରରେ ଉଲ୍ଲେଖ ହୋଇଛି-

ମାହେଶ୍ୱରୀ ବୃଷାରୂଢା ପଞ୍ଚବକ୍ତ୍ରା ତ୍ରିଲୋଚନା
ଶୁକ୍ଳେନ୍ଦ୍ର ଭୃଜଟୀଜୁଟା ଶୁକ୍ଳା ସର୍ବଂ ସୁଖପ୍ରଦା
ଷଡ଼ଭୁଜା ବରଦାଦକ୍ଷେ ସୂତ୍ରଂ ଡମରୁକଂ ତଥା
ଶୂଳ ଘଣ୍ଟାଭୟଂବାମେ ସୈବ ଧତ୍ତେ ମହାଭୁଜା ।

ଋକ୍‌ବେଦ୍‌ରେ ରୁଦ୍ର ବୃଷଭ ନାମରେ ନାମିତ । ବୃଷଭ ଶବ୍ଦର ଅର୍ଥ ବର୍ଷଣକାରୀ । ବେଦରେ ଇନ୍ଦ୍ର, ଅଗ୍ନି ଓ ସୂର୍ଯ୍ୟଙ୍କୁ ବୃଷଭ ବୋଲି କୁହାଯାଏ । ଶାରଦା ତିଳକ ତନ୍ତ୍ରରେ ଶିବଙ୍କ ବାହନ ବୃଷଭର ବର୍ଣ୍ଣନା ଅନୁଯାୟୀ ମେଘ ରୂପେ ପ୍ରତୀତ ହୁଏ ।

ହିମାଳୟାଭଂ ତୀକ୍ଷ୍ଣଶୃଙ୍ଗ ତ୍ରିଲୋଚନମ୍
ସର୍ବାଭଣଣ ସନ୍ଦୀପ୍ତଂ ସାକ୍ଷାଚ୍ଛନ୍ଦଃ ସ୍ୱରୂପିନମ୍
କପାଳ ଶୂଳ ବିଲସଦ୍ କରଂକାଳ ଘନ ପ୍ରଭମ୍

(ଶାରଦାତିଳକ ୧୮/୪୦)

ହିମାଳୟ ସଦୃଶ ବର୍ଣ୍ଣ ତୀକ୍ଷ୍ଣ ଶୃଙ୍ଗ, ତ୍ରିଲୋଚନ, ସମସ୍ତ ପ୍ରକାର ଅଳଙ୍କାରରେ ଜାଜ୍ଜ୍ୱଲ୍ୟମାନ ସାକ୍ଷାତ ବେଦ ରୂପୀ ନରକପାଳ ଓ ଶୂଳ ହସ୍ତେ ଧାରଣକାରୀ ପ୍ରଳୟ ମେଘ ସଦୃଶ ବୃଷଭଙ୍କୁ ଚିନ୍ତା କରିବ ।

### ବାମନ ପୁରାଣନୁଯାୟୀ

ଶିବ ଜୀମୂତ ବାହନ ଅର୍ଥାତ୍ ମେଘ ବାହନ । ତେଣୁ ମାହେଶ୍ୱରୀ ମେଘ ରୂପା । ମାହେଶ୍ୱରୀଙ୍କର ହସ୍ତର ତ୍ରିଶୂଳ ହେଉଛି ତ୍ରିଗୁଣ ନାଶକାରୀ ନିର୍ଗୁଣ ତତ୍ତ୍ୱର ନିଦର୍ଶନ । ମସ୍ତକରେ ଚନ୍ଦ୍ରକଳା କରୁଣାସିକ୍ତ ସିଗ୍ଧତାର ସଂକେତ । ସାମରିକ ନିଷ୍ଠୁରତା ମଧ୍ୟରେ କରୁଣା ଭରା ସିଗ୍ଧତାର ଏକ ଅପରୂପ ଅପୂର୍ବ ସମାବେଶ । ତାଙ୍କର ହସ୍ତରେ ବଳୟ ରୂପେ ସର୍ପ ଅନନ୍ତ ଓ ବାସୁକୀ- ଆକର୍ଷଣ ଓ ବିକର୍ଷଣ ଶକ୍ତି ଦ୍ୱୟ ସୃଷ୍ଟି ଏବଂ ଧ୍ୱଂସର ପ୍ରତୀକ ରୂପେ ତାଙ୍କର ହସ୍ତର ଡମ୍ବରୁ ଦୁଇଟି ତ୍ରିଭୁଜର ସମାବେଶ ।

### ତୃତୀୟରେ କୌମାରୀ

କୌମାରୀ ହିଁ କୁମାର କାର୍ତ୍ତିକଙ୍କର ଶକ୍ତି, ଯାହାକି ଚଣ୍ଡୀରେ ଲିଖିତ- କୌମାରୀ ଶକ୍ତି ହସ୍ତାଚ ମୟୂର ବର ବାହନ । ଯୋଦ୍ଧୁମଭ୍ୟାଯଯୌ ଦୈତ୍ୟାନମ୍ବିକାଗୁହ ରୂପିଣୀ (ଚଣ୍ଡୀ ୮/୧୭) କୌମାରୀ ଉତ୍ତମ ମୟୂର ଆରୋହଣ ପୂର୍ବକ ଶକ୍ତି ଧାରଣ କରି ଦୈତ୍ୟମାନଙ୍କ ସହ ଯୁଦ୍ଧ କରିବାକୁ ଅବତୀର୍ଣ୍ଣ ହେଲେ । ପୁଣି ନାରାୟଣୀ ସ୍ତୁତିରେ ଲେଖାଅଛି- ସେ ମୟୂର କୁକ୍କୁଟ

ବେଷ୍ଟିତ ହୋଇ ମହାଶକ୍ତି ଧାରଣ କରିଛନ୍ତି । ମୟୂର କୁକ୍କୁଟ ବୃତ୍ତେ- ମହାଶକ୍ତି ଧରେ ନିଘେ (ଚଣ୍ଡୀ ୧୧-୧୫)

ତନ୍ତ୍ରଶାସ୍ତ୍ରାନୁଯାୟୀ କୌମାରୀ ତୃତୀୟ ମାତୃକା ହେଲେ ମଧ୍ୟ ସେ ଯାଜପୁରର ସପ୍ତମାତୃକାଙ୍କ ମଧ୍ୟରେ ଦ୍ୱିତୀୟ ମାତୃକା । ଯାଜପୁରର କୌମାରୀ ପୁରୀ ଭଳି ମୟୂର ବାହିନୀ । ପୁରୀର ସପ୍ତମାତୃକାଙ୍କ ମଧ୍ୟରେ କୌମାରୀ ତୃତୀୟ ମାତୃକା । ଯାଜପୁରର କୌମାରୀ ଚତୁର୍ଭୁଜା । ତାଙ୍କର ବାମ କରର ଉର୍ଦ୍ଧ୍ୱରେ ତ୍ରିଶୂଳ ଏବଂ ଅଧଃରେ ସନ୍ତାନ ଥିବା ବେଳେ ଦକ୍ଷିଣ ଭାଗର ଉର୍ଦ୍ଧ୍ୱ ହସ୍ତରେ ଶୂଳ ଓ ନିମ୍ନରେ ଅଭୟମୁଦ୍ରା ରହିଛି । ଅଂଶୁମଦଭେଦାଗମ୍ ଶାସ୍ତ୍ରରେ କୌମାରୀ ଚତୁର୍ଭୁଜା ଓ ତାଙ୍କର ହସ୍ତ ଚତୁଷ୍ଟୟରେ ଶକ୍ତି କୁକୁଟ, ଅଭୟ ଓ ବରମୁଦ୍ରା ରହିଛି । ଦେବୀ ଉଦୁମ୍ବର ବୃକ୍ଷକୁ ଆଶ୍ରୟ କରି ରହିଛନ୍ତି ଏବଂ ତାଙ୍କର ବାହନ ମୟୂର ରହିଛି । ସେ ତ୍ରିନେତ୍ରା ଓ ଆଭରଣ ମଣ୍ଡିତା । ବିଷ୍ଣୁଧର୍ମୋତ୍ତରରେ ଲେଖାଅଛି- କୌମାରୀ ଦେବୀ ରକ୍ତବର୍ଣ୍ଣା । ତାଙ୍କର ଛଅଗୋଟି ମସ୍ତକ, ବାରଗୋଟି ଚକ୍ଷୁ ଏବଂ ଦ୍ୱାଦଶ ଭୁଜ । ସେହି ଭୁଜଗୁଡ଼ିକରେ ଶକ୍ତି, ପତାକା, ଦଣ୍ଡ, ପାତ୍ର, ବାଣ, ବରଦ ଓ ଚାପ ଘଣ୍ଟି, କମଳ, କୁକୁଟ, ପରଶୁ ଏବଂ ଅଭୟ ମୁଦ୍ରା ଶୋଭାପାଉଛି- ଦେବୀ ମୟୂର ବାହନା ରୂପ ମଣ୍ଡନଶାସ୍ତ୍ରରେ ଉଲ୍ଲେଖ ଅଛି-

କୁମାର ରୂପାକୌମାରୀ ମୟୁର ବର ବାହନା
ରକ୍ତବସ୍ତ୍ରଧରା ତଦ୍‌ବଚ୍ଛୁଳ ଶକ୍ତି ଗଦାଧରା

ବେଦ ସେନାପତି କୁମାରି ହିଁ ସମଗ୍ର ଶକ୍ତିର ପ୍ରତୀକ । କୌମାରୀ କୁମାରଙ୍କର ଶକ୍ତିରୂପା । ତେଣୁ ତାଙ୍କର ହସ୍ତରେ ଗଦା ଅଛି । କ୍ଷେତ୍ରଶକ୍ତିର ମୂର୍ତ୍ତିମନ୍ତ ବିଗ୍ରହ ହେଲେ କୌମାରୀ । ସେ ମୟୂର ବାହନା-ମୟୂର କାମ ଭୋଗଠାରୁ ଦୂରରେ ଥାଏ । ତେଣୁ ସେ ରପୁଜୟୀ, ତାର ଆହାର କାଳସର୍ପ । ତେଣୁ ସେ କାଳଜୟୀ, କୌମାରୀ ଚିର କୁମାରୀ । ତେଣୁ ତାଙ୍କୁ ବାର୍ଦ୍ଧକ୍ୟ ସ୍ପର୍ଶ କରିପାରେ ନାହିଁ । ମାତ୍ର ସେ ସନ୍ତାନ ବତ୍ସଳା । ଏ ସାରା ସଂସାରରେ ସମସ୍ତେ ତାଙ୍କର ସନ୍ତାନ । ସେଥିପାଇଁ ମାତୃକାଙ୍କ ମଧ୍ୟରେ ସେ ଅନ୍ୟତମା ବା ଅନନ୍ୟା ।

### ଚତୁର୍ଥରେ ବୈଷ୍ଣବୀ

ଓଡ଼ିଶାର ସପ୍ତମାତୃକାଙ୍କ ମଧ୍ୟରେ ବୈଷ୍ଣବୀ ହିଁ ଚତୁର୍ଥ ମାତୃକା । ଯାଜପୁରର ସପ୍ତମାତୃକାଙ୍କ ମଧ୍ୟରେ ତୃତୀୟ ମାତୃକା ହେଉଛନ୍ତି ଶିବଦୂତୀ । ଶିବଦୂତି ବସ୍ତ୍ରାବୃତ୍ତା ହୋଇ ବସିଛନ୍ତି । ମାତୃକା ବୈଷ୍ଣବୀ ଯେଉଁଭଳି ସଂଖ୍ୟାରେ ଚତୁର୍ଥ, ସେହିଭଳି ସେ ଚତୁର୍ଭୁଜା, ତାଙ୍କର ବାମଭାଗର ଉର୍ଦ୍ଧ୍ୱ ହସ୍ତରେ ଶଙ୍ଖ ଓ ନିମ୍ନ ହସ୍ତରେ ସନ୍ତାନ ଥିବା ବେଳେ ଦକ୍ଷିଣ ଭାଗର ଉର୍ଦ୍ଧ୍ୱରେ ଚକ୍ର ଓ ନିମ୍ନରେ ଅଭୟମୁଦ୍ରା ରହିଛି । କଣ୍ଠରେ ତାଙ୍କର ରୁଦ୍ରାକ୍ଷର ମାଳା, ଶାସ୍ତ୍ରାନୁଯାୟୀ ବୈଷ୍ଣବୀ ଗରୁଡାସନା । ଏଠାରେ ମଧ୍ୟ ଦେବୀଙ୍କର ନିମ୍ନରେ ଗରୁଡ଼ ରହିଛି । ଏହା ଚଣ୍ଡୀରେ ଲେଖାଅଛି-

ତଥୈବ ବୈଷ୍ଣବୀ ଶକ୍ତି ଗରୁଡ଼ୋ ପରିସଂସ୍ଥିତା
ଶଙ୍ଖ ଚକ୍ର ଗଦା ଶାର୍ଙ୍ଗ ଖଡଗ ହସ୍ତାଭ୍ୟୁ ପାପଯୌ

(ଚଣ୍ଡୀ ୮/୧୮)

ସେହିଭଳି ଗରୁଡ଼ ବାହନା ବୈଷ୍ଣବୀ ଦେବୀ ଶଙ୍ଖ, ଚକ୍ର, ଗଦା ଶାଙ୍ଗ ଓ ଖଡ଼ଗ ହସ୍ତରେ ଦୈତ୍ୟଗଣଙ୍କ ସହ ଯୁଦ୍ଧ କରିବାକୁ ଆସିଲେ । ଚଣ୍ଡୀରେ ମଧ୍ୟ ଏପରି ଉଲ୍ଲେଖ ଅଛି-

ଶଙ୍ଖ ଚକ୍ର ଗଦା ଶାର୍ଙ୍ଗ ଗୃହୀଣେ ପରମାୟୁଧେ
ପ୍ରସିଦ୍‌ ବୈଷ୍ଣବୀ ରୂପେ ନାରାୟଣୀ ! ନମସ୍ତୁତେ ।

(ଚଣ୍ଡୀ ୧୧-୧୬)

ଶାସ୍ତ୍ରାନୁଯାୟୀ ମାତୃକା ମଧ୍ୟରେ ବୈଷ୍ଣବୀ ଶଙ୍ଖ, ଚକ୍ର, ଧାରିଣୀ । ମାତ୍ର ଶାସ୍ତ୍ରାନୁସାରେ ଓଡ଼ିଶାର ମାତୃକା ଅନ୍ୟାନ୍ୟ ଆୟୁଧ ଧାରଣ କରିନାହାନ୍ତି । ଅଂଶୁମଦଭେଦାଗମ ଶାସ୍ତ୍ରରେ ଲିଖିତ- ବୈଷ୍ଣବୀ ଚତୁର୍ଭୁଜା, ଚାରୁବନ୍ଦନା, ସୁଲୋଚନା, ପୀତାମ୍ବରୀ, କିରୀଟ ମୁକୁଟ ଯୁକ୍ତା, ତାଙ୍କର ହସ୍ତ ଦୁଇଟିରେ ଶଙ୍ଖ, ଚକ୍ର ଆୟୁଧ ରୂପରେ ଥିବାବେଳେ ଅନ୍ୟ ଦୁଇ ହସ୍ତରେ ଅଭୟ ଓ ବରମୁଦ୍ରାରେ ସୁଶୋଭିତା । ସେ ରାଜବୃକ୍ଷକୁ ଆଶ୍ରାକରି ଗରୁଡ଼ଧ୍ୱଜ ବାହିନୀ ଏବଂ ବିଷ୍ଣୁଙ୍କ ଭୂଷଣରେ ଭୂଷିତା ।

ଶଙ୍ଖ ଚକ୍ରଧରା ଦେବୀ ବରଦାଭୟପାଣିନୀ
ସୁସ୍ତନା, ଚାରୁବଦନା, ଶ୍ୟାମାଭାଚ ସୁଲୋଚନା
ପୀତାମ୍ବର ଧରାଦେବୀ କିରୀଟ ମୁକୁଟାନ୍ୱିତା
ରାଜବୃକ୍ଷ ସମାଶ୍ରିତ୍ୟ ଗରୁଡ଼ଧ୍ୱଜ ବାହିନୀ
ବୈଷ୍ଣବୀପୀଠ ଗା ଦେବୀ ବିଷ୍ଣୁ ଭୂଷଣ ଭୂଷିତା ।

ବିଷ୍ଣୁଧର୍ମୋତ୍ତରରେ ତାଙ୍କୁ ଷଡ଼ଭୁଜା ବୋଲି କୁହାଯାଇଛି । ତାଙ୍କର ଗ୍ରୀବା ବନମାଳାରେ ଭୂଷିତା ଏବଂ ସେ ନିଜ ହସ୍ତଗୁଡ଼ିକରେ ଶଙ୍ଖ, ଚକ୍ର, ଗଦା ପୁଷ୍ପମାଳାଧାରଣ କରିଛନ୍ତି । ତାଙ୍କର ଅନ୍ୟ ଦୁଇଟି ହସ୍ତରେ ବରଦ ଓ ଅଭୟମୁଦ୍ରା । ସେ ଗରୁଡ଼ବାହନା ଓ ଶ୍ୟାମବର୍ଣ୍ଣା ।

◆◆◆

ବୈଷ୍ଣବୀଙ୍କର ରୂପଧ୍ୟାନ ଭଳି ଦୁର୍ଗା ଦେବୀଙ୍କର ରୂପଧ୍ୟାନରେ ଶଙ୍ଖ, ଚକ୍ର, ଧନୁ ଧରିଥିବା ଦେବୀ ବର୍ଣ୍ଣିତ ହୋଇଛି । ଦେବୀ ଦୁର୍ଗା ସମସ୍ତ ଦେବତାଙ୍କ ଏକୀଭୂତ ରୂପ, ତାଙ୍କୁ ମଧ୍ୟ ନାରାୟଣୀ ସମ୍ବୋଧନ କରି ପ୍ରଣାମ କରାଯାଇଛି । ନାରାୟଣୀ, ନାରାୟଣଙ୍କର ଶକ୍ତି । ତେଣୁ ଦେବୀ ଦୁର୍ଗା, ବୈଷ୍ଣବୀ, ଦୁର୍ଗାଙ୍କ ଧ୍ୟାନରେ– ବର୍ଣ୍ଣନାନୁଯାୟୀ–ସିଂହାରୂଢ଼ା, ଶଶି ଶେଖରା, ମରକତ ମଣି ସଦୃଶ ପ୍ରଭାମୟୀ ଏବଂ ଚାରିଟି ହସ୍ତରେ ଶଙ୍ଖ, ଚକ୍ର ଓ ଧନୁର୍ବାଣ ଧାରଣ କରିଛନ୍ତି । ତ୍ରିନୟନା, କେୟୁରହାର, ବଳୟ ଏବଂ ମୃଦୁ ମଧୁର ଧ୍ୱନିଯୁକ୍ତ ଚନ୍ଦ୍ରହାର ଓ ନୁପୂର ପରିହିତା, ରତ୍ନୋଜ୍ୱଳ କୁଣ୍ଡଳ ଭୂଷିତା ଦେବୀଦୁର୍ଗା ଆମ୍ଭମାନଙ୍କର ଦୁର୍ଗତି ନାଶ କରନ୍ତୁ । ବୈଷ୍ଣବୀ ଗରୁଡ଼ ବାହନା ଶଙ୍ଖରେ ପ୍ରଣବ ନାଦ ଚକ୍ରରେ କର୍ମ ପ୍ରବାହ– ଗଦା ନ୍ୟାୟଦଣ୍ଡ ଓ ଖଡ଼ଗ ତତ୍ତ୍ୱଜ୍ଞାନର ପ୍ରତୀକ । ଏହି ଅସ୍ତ୍ରଗୁଡ଼ିକ ଦ୍ୱାରା ବିଶ୍ୱରକ୍ଷା ପାଇଥାଏ । ସତ୍ତ୍ୱଗୁଣର ଆଶ୍ରୟରେ ମନ୍ତ୍ରଶକ୍ତିର ଉଦ୍‌ବୋଧନ, ଜ୍ଞାନାମି ଦ୍ୱାରା ଦ୍ୱନ୍ଦ୍ୱ ଓ ଅନୃତ ଛେଦନ ହେବା ବୈଷ୍ଣବୀ ମହାଶକ୍ତିଙ୍କର କାର୍ଯ୍ୟ ।

### ପଞ୍ଚମରେ ବାରାହୀ

ପଞ୍ଚମ ମାତୃକା ଭାବେ ବରାହୀ ପୁରୀର ସପ୍ତମାତୃକାଙ୍କ ମଧ୍ୟରେ ଅବସ୍ଥିତା । ଚଣ୍ଡୀ ଗ୍ରନ୍ଥରେ ମଧ୍ୟ ବାରାହୀ ପଞ୍ଚମ ଶକ୍ତି ରୂପେ ଆଗମନ କରିଛନ୍ତି । ମାତ୍ର ଦଶାଶ୍ୱମେଦ ଘାଟରେ ବାରାହୀ ଷଷ୍ଠ ମାତୃକା ରୂପେ ଅବସ୍ଥିତା । ଶାସ୍ତ୍ରମାନଙ୍କରେ ବାରାହୀଙ୍କର ଯେଉଁ ଧ୍ୟାନ ଦେଖିବାକୁ ମିଳେ, ସେଥି ସହିତ ଓଡ଼ିଶାରେ ଉପାସିତା ବାରାହୀଙ୍କ ରୂପର ସଂପୂର୍ଣ୍ଣ ମେଳକ ଅବଶ୍ୟ ନାହିଁ । ତାଙ୍କର ହସ୍ତରେ ଧରିଥିବା ଆୟୁଧ ସହିତ ଗ୍ରନ୍ଥମାନଙ୍କରେ ଥିବା ବାରାହୀଙ୍କର ଆୟୁଧ ସମାନ ନୁହେଁ । ତନ୍ତ୍ରଗ୍ରନ୍ଥ ଅନୁଯାୟୀ ବାରାହୀ ମହିଷସନା, ଏପରିକି ସମସ୍ତ ସପ୍ତମାତୃକାଙ୍କ ମଧ୍ୟରେ ବାରାହୀ ମହିଷ ବାହନା । ଯାଜପୁରରେ ଦୁଇଟି ବାରାହୀ ମାତୃକା ଦୃଷ୍ଟି ଗୋଚର ହୋଇଥାନ୍ତି । ଗୋଟିଏ ଦଶାଶ୍ୱମେଧ ଘାଟରେ ଅନ୍ୟଟି ଯାଜପୁର ସବକଲେକ୍ଟରଙ୍କର କୋଠି ହତାରେ । ବାରାହୀଙ୍କ ବ୍ୟତୀତ ଇନ୍ଦ୍ରାଣୀ ଓ ଚାମୁଣ୍ଡାଙ୍କର ମୂର୍ତ୍ତି ରହିଛି– ଦଶାଶ୍ୱମେଧର ବାରାହୀ ଚତୁର୍ଭୁଜା । ତାଙ୍କର ବାମ ଉର୍ଦ୍ଧ୍ୱହସ୍ତରେ ମତ୍ସ ଏବଂ ନିମ୍ନ ହସ୍ତରେ ସନ୍ତାନ ଥିବାବେଳେ ଦକ୍ଷିଣଭାଗର ଉର୍ଦ୍ଧ୍ୱହସ୍ତରେ ପାନପାତ୍ର ଓ ନିମ୍ନହସ୍ତରେ ବରମୁଦ୍ରା ରହିଛି । ମାତ୍ର ଧର୍ମଶାଳାରେ ଆରାଧିତା ହେଉଥିବା ସପ୍ତମାତୃକା ଯାହାକୁ ପରେ ଅଣାଯାଇ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ରଖାଯାଇଛି । ତାଙ୍କର ବାମଉର୍ଦ୍ଧ୍ୱହସ୍ତରେ ପାନପାତ୍ର । ନିମ୍ନ ହସ୍ତରେ ସନ୍ତାନ, ଦକ୍ଷିଣଭାଗର ଉର୍ଦ୍ଧ୍ୱହସ୍ତରେ ମତ୍ସ୍ୟ ଓ ନିମ୍ନ ହସ୍ତରେ ଅଭୟମୁଦ୍ରା ଦେଖାଯାଏ । ପୁରୀର ବାରାହୀ ମାତୃକା ପ୍ରାୟ ଏହିପରି । ତାଙ୍କର ବାମ ଉର୍ଦ୍ଧ୍ୱ ହସ୍ତରେ ପାନପାତ୍ର, ନିମ୍ନ ହସ୍ତରେ ସନ୍ତାନ ଥିବା ଦେଖାଯାଏ । ଅନ୍ୟ ଦୁଇହସ୍ତ କିନ୍ତୁ ଭଗ୍ନ ଅବସ୍ଥାରେ । ତନ୍ତ୍ର ପୋଥିରେ ଥିବା ଧ୍ୟାନ ଏହିପରି–

ତପ୍ତ କାଞ୍ଚନ ଗୌରାଙ୍ଗୀ ପଙ୍କଜୋ ପରିସଂସ୍ଥିତା
ଶଙ୍ଖ, ଚକ୍ର ଭୟବରୋଦଧାନା କରପଙ୍କଜୈଃ

ନନ୍ଦୀକେଶ୍ୱର ପୁରାଣରେ ବାରାହୀଙ୍କର ଯେଉଁ ନମସ୍କାର ମନ୍ତ୍ର ଅଛି ସେଥିରୁ ସୂଚିତ ବାରାହୀଙ୍କର ରୂପ ସହିତ ଓଡ଼ିଶାର କୌଣସି ବାରାହୀଙ୍କର ରୂପ ମିଶେ ନାହିଁ । ସେହିପରି ଦେବୀ ପୁରାଣରେ ବର୍ଣ୍ଣିତ ବାରାହୀଙ୍କ ସହିତ ଓଡ଼ିଶାରେ ଥିବା ବାରାହୀଙ୍କର କୌଣସି ମେଳ ନାହିଁ ।

ବାରାହୀ ରୂପଧାରୀଚ ବରାହୋପମଉଚ୍ୟତେ
ବାରାହୀ ଜନନୀ ଚାଥ ବାରାହୀ ବରବାହନା ।

(ଦେବୀ ପୁରାଣ)

ଭୁବନେଶ୍ୱର ବୈତାଳ ମନ୍ଦିର ମଧ୍ୟରେ ଯେଉଁ ସପ୍ତମାତୃକା ପୂଜା ପାଉଛନ୍ତି, ସେ ଭିତରେ ଥିବା ବାରାହୀ ଚତୁର୍ଭୁଜା । ତାଙ୍କର ଦକ୍ଷିଣ ହସ୍ତଦ୍ୱୟରେ ମତ୍ସ୍ୟ ଓ ଜପାମାଳା ଅଛି ଏବଂ ବାମହସ୍ତ ଦ୍ୱୟରେ ପରଶୁ ଓ ପାନ ପାତ୍ର ଅଛି, ଦେବୀ ବୀରାସନରେ ବାମପାଦ ଟେକି ବସିଛନ୍ତି ଓ ତାଙ୍କର ତଳେ ମହିଷ ମୁହଁରେ ଗୋଟିଏ ମଣିଷ ନିଜର ଦୁଇପାଦକୁ ଦୁଇହାତରେ ଧରିବସିଛି । ଅନ୍ୟ ସପ୍ତମାତୃକାଙ୍କ ଭଳି ଏହି ସପ୍ତମାତୃକା କୋଳରେ ସନ୍ତାନ ନାହିଁ । ଚାମୁଣ୍ଡା ଏହି ମନ୍ଦିରର ଅଧିଷ୍ଠାତ୍ରୀ ଦେବୀ । ତାଙ୍କର ଦକ୍ଷିଣ ଭାଗରେ ଚାମୁଣ୍ଡାଙ୍କ ବ୍ୟତୀତ ଷଡ଼ଦେବୀ ଅଛନ୍ତି ଏବଂ ତାଙ୍କର ବାମରେ ସାତୋଟି ଦେବମୂର୍ତ୍ତି ରହିଛି । ଏହି ଦେବ ମୂର୍ତ୍ତିଙ୍କ ମଧ୍ୟରେ ବରାହ ରହିଛନ୍ତି ।

ଏହି ବରାହ ଦ୍ୱିଭୁଜ ଓ ତାଙ୍କର ଦକ୍ଷିଣ କରରେ ପରଶୁ ଓ ବାମରେ ପାନପାତ୍ର ରହିଛି । ବାରାହୀ ବାମପାଦ ଟେକି ବୀରାସନରେ ବସିଲା ବେଳେ ବରାହ ଦକ୍ଷିଣ ପାଦ ଟେକି ବିପରୀତ ବୀରାସନରେ ବସିଛନ୍ତି । ଅଂଶୁମଦ୍‌ଭେଦାଗମରେ ଯେଉଁ ବାରାହୀଙ୍କର ଧ୍ୟାନ ରହିଛି ସେଥିରୁ ଜଣାଯାଏ– ବାରାହୀ ପ୍ରଳୟକାଳୀନ ମେଘ ଭଳି ଅତ୍ୟନ୍ତ ଭୟଙ୍କର । ତାଙ୍କର ମୁହ ବରାହ ଭଳି ଏବଂ ସେ ବାରାହ ରୂପୀ ବିଷ୍ଣୁଙ୍କର ଶକ୍ତି ରୂପେ

ପରିଚିତା । ତାଙ୍କର ମସ୍ତକରେ ଶୈବାଳର ମୁକୁଟ । ତାଙ୍କର ଶରୀର ପୋହଳାମାଳାରେ ଶୋଭିତା ଏବଂ ତାଙ୍କର ଚାରୋଟି ହସ୍ତ । ସେ ଦୁଇଟି ହସ୍ତରେ ହଳ, ଲଙ୍ଗଳ ଶକ୍ତି ଆୟୁଧ ରୂପେ ଧାରଣ କରି ଅନ୍ୟ ଦୁଇ ହସ୍ତ ବରଦ ଓ ଅଭୟମୁଦ୍ରାରେ ଶୋଭିତ ହୋଇଛି । ରୂପମଣ୍ଡନ ଅନୁଯାୟୀ ବାରାହୀଙ୍କର ଚାରିଗୋଟି ହସ୍ତ । ସେହି ଚାରୋଟି ହସ୍ତରେ ଘଣ୍ଟା, ଚାମର, ଗଦା ଓ ଚକ୍ର ଅଛି । ତାଙ୍କର ମୁଖର ଆକୃତି ବରାହ ଭଳି ଓ ସେ ମଣିଷ ଉପରେ ଆରୋହଣ କରିଛନ୍ତି । ସେ ଜନ ଜଗତର ହିତ ସାଧନ କରି ସର୍ବବ୍ୟାଧି ଆରୋଗ୍ୟ କରିଥାନ୍ତି । ଯଜ୍ଞ ବରାହଙ୍କ ଶକ୍ତି ବାରାହୀ, ଯେତେବେଳେ ବିଶ୍ୱ ରସାତଳଗାମୀ ହେବାକୁ ବସେ, ସେତେବେଳେ ବାରାହୀ ଶକ୍ତିଙ୍କ ଦ୍ୱାରା ବରାହ ଶକ୍ତିବାନ ହୋଇ ଏ ବିଶ୍ୱକୁ ତାଙ୍କର ଦାନ୍ତରେ ଅଗ୍ର ଭାଗରେ ଧାରଣ କରନ୍ତି । ସେ ହରିଣାକ୍ଷ ରାକ୍ଷସକୁ ବଧ କରିଥିଲେ । ହିନ୍ଦୁଶାସ୍ତ୍ରାନୁସାରେ ଦେବୀଙ୍କର ଧ୍ୟାନରେ ଥିବା ଚକ୍ର କର୍ମଶକ୍ତିର ପ୍ରବାହ ଏବଂ ଗଦାଧର୍ମର ସହାୟ ମାତ୍ର ଓଡ଼ିଶାରେ ଆରାଧିତା ବାରାହୀ ତନ୍ତ୍ରର ମହାନଦେବୀ । ତାଙ୍କର ହସ୍ତରେ ଥିବା ମତ୍ସ୍ୟ ଏବଂ ପାନପାତ୍ର ବିକାରଠାରୁ ଦୂରରେ ରହିବାକୁ ସାଧକକୁ ନିର୍ଦ୍ଦେଶ କରନ୍ତି ।

### ଷଷ୍ଠରେ ଇନ୍ଦ୍ରାଣୀ

ଚଣ୍ଡୀ ଗ୍ରନ୍ଥରେ ବାରାହୀଙ୍କ ଉପରେ ନାରସିଂହୀ ଆସିବା ଉଲ୍ଲେଖ ଅଛି । ମାତ୍ର ଓଡ଼ିଶାର ସପ୍ତମାତୃକା ମଧ୍ୟରେ ନାରସିଂହୀ ନାହାଁନ୍ତି । ନାରସିଂହୀଙ୍କୁ ବାଦ୍ ଦେଲେ ଚଣ୍ଡୀଗ୍ରନ୍ଥର କ୍ରମାନୁଯାୟୀ ପୁରୀର ସପ୍ତମାତୃକା ଅଛନ୍ତି । ଯାଜପୁରର ସପ୍ତମାତୃକାଙ୍କ ମଧ୍ୟରେ ଇନ୍ଦ୍ରାଣୀ ପଞ୍ଚମ ମାତୃକା । ଭୁବନେଶ୍ୱରର ବୈତାଳ ମନ୍ଦିରରେ ଥିବା ସପ୍ତମାତୃକାଙ୍କ ମଧ୍ୟରେ ପୁରୀଭଳି ଷଷ୍ଠଦେବୀ ବା ଶକ୍ତି ରୂପେ ଇନ୍ଦ୍ରାଣୀ ଅବସ୍ଥାନ କରିଛନ୍ତି । ଚଣ୍ଡୀଗ୍ରନ୍ଥରେ ଲେଖାଅଛି–

ବଜ୍ରହସ୍ତା ତଥୈବେନ୍ଦ୍ରୀ ଗଜରାଜୋପରିସ୍ଥିତା
ପ୍ରାପ୍ତା ସହସ୍ରନୟନା ଯଥା ଶତ୍ରସ୍ତଥୈବ ସା

(ଚଣ୍ଡୀ ୮/୨୧)

ଯାଜପୁରର ଦଶାଶ୍ୱମେଧ ଘାଟରେ ଥିବା ଇନ୍ଦ୍ରାଣୀ ଚତୁର୍ଭୁଜା ଏବଂ ତାଙ୍କର ଦକ୍ଷିଣ ଓ ବାମ ଉର୍ଦ୍ଧ୍ୱହସ୍ତରେ ଦୁଇ ପ୍ରକାର ବଜ୍ର ଦେଖାଯାଏ । ସେ ବାମ ଭାଗର ତଳ ହସ୍ତରେ ସନ୍ତାନ ଧାରଣ କରିଛନ୍ତି । ଧର୍ମଶାଳାରେ ଥିବା ସପ୍ତମାତୃକା, ଯାହାଙ୍କୁ ଭୁବନେଶ୍ୱର ରାଜ୍ୟ ସଂଗ୍ରହାଳୟରେ ରଖାଯାଇଛି ତାଙ୍କର ରୂପ ପ୍ରାୟ ଦଶାଶ୍ୱମେଧ ଇନ୍ଦ୍ରାଣୀଙ୍କର ରୂପଭଳି । ତାଙ୍କର ଦକ୍ଷିଣ ଓ ବାମକର ଦ୍ୱୟରେ ଶକ୍ତି ଓ ବଜ୍ର ଦେଖାଯାଏ ଏବଂ ବାମ ଜଙ୍ଘରେ ସନ୍ତାନ ଅଛି । ମାତ୍ର ବୈତାଳ ମନ୍ଦିରର ଇନ୍ଦ୍ରାଣୀ ଦ୍ୱିଭୁଜା । ତାଙ୍କର ବାମ ହସ୍ତରେ ଅମୃତଭାଣ୍ଡ ଓ ଦକ୍ଷିଣ କରରେ ବଜ୍ର ଅଛି । ଅଂଶୁମଦ୍‌ଭେଦାଗମ୍ ତନ୍ତ୍ରଶାସ୍ତ୍ର ଅନୁଯାୟୀ ଇନ୍ଦ୍ରାଣୀ ଗଜାରୂଢ଼ା, ଚତୁର୍ଭୁଜା ଓ ତ୍ରିନେତ୍ରା । ତାଙ୍କର ଦୁଇଟି ହସ୍ତରେ ଶକ୍ତି ଓ ବଜ୍ରଆୟୁଧ ରୂପେ ଏବଂ ଅନ୍ୟ ଦୁଇ ହସ୍ତରେ ବରଦ ଅଭୟମୁଦ୍ରା ରହିଛି । ସେ କଳ୍ପବୃକ୍ଷକୁ ଆଶ୍ରୟ ରୂପେ ଏବଂ ଅନ୍ୟ ଦୁଇ ହସ୍ତରେ ବରଦ ଅଭୟ ମୁଦ୍ରା ରହିଛି । ସେ କଳ୍ପବୃକ୍ଷକୁ ଆଶ୍ରୟ କରି ଅଛନ୍ତି । ତାଙ୍କର ଶରୀର ରକ୍ତବର୍ଣ୍ଣା ଓ ସେ କିରୀଟ ସହିତ ବହୁ ଆଭରଣ ଯୁକ୍ତା ଅଂଶୁମଦ୍‌ଭେଦାଗମ୍ ତନ୍ତ୍ରର ଇନ୍ଦ୍ରାଣୀଙ୍କର ଧ୍ୟାନ ସହିତ ବିଷ୍ଣୁଧର୍ମୋତ୍ତରର ତନ୍ତ୍ରରେ ଥିବା ଇନ୍ଦ୍ରାଣୀଙ୍କର ଧ୍ୟାନର ମେଳକ ନାହିଁ । ବିଷ୍ଣୁଧର୍ମୋତ୍ତର ଗ୍ରନ୍ଥରେ ଇନ୍ଦ୍ରାଣୀଙ୍କର ଯେଉଁ ଧ୍ୟାନ ଅଛି ସେଥିରେ ସେ ଇନ୍ଦ୍ରଙ୍କ ପରି ସହସ୍ର ନୟନା । ତାଙ୍କର ଛଅଗୋଟି ହସ୍ତରେ ଅଛି ଅକ୍ଷୟ ସୂତ୍ର, ବଜ୍ର, କଳସ, ପାତ୍ର, ଅଭୟ ଓ ବରମୁଦ୍ରା । ସେ ସୁବର୍ଣ୍ଣ ବର୍ଣ୍ଣା ଓ ତାଙ୍କର ବାହନ ଗଜ ।

ଚଣ୍ଡୀଗ୍ରନ୍ଥରେ ରକ୍ତବୀଜ ସହିତ ଦେବୀମାନେ ଯୁଦ୍ଧ କରୁଥିବାବେଳେ ଇନ୍ଦ୍ରାଣୀ ରକ୍ତବୀଜକୁ ପ୍ରହାର କରିବା କଥା ଉଲ୍ଲେଖ ଅଛି । ଇନ୍ଦ୍ର ଯେପରି ସମସ୍ତ ଦେବ ଶକ୍ତିର ଅଧିପତି ସେହିପରି ଇନ୍ଦ୍ରାଣି ସମସ୍ତ ଶକ୍ତିର ନିୟନ୍ତ୍ରଣକାରିଣୀ । ତାଙ୍କର ହସ୍ତରେ ବଜ୍ର ଶୋଭାପାଇ ଥାଏ । ଅନେକଙ୍କ ମତରେ ଏ ଦେହରେ ଥିବା ସମସ୍ତ ଇନ୍ଦ୍ରିୟଙ୍କର ନିୟନ୍ତ୍ରଣକାରିଣୀ ହେଉଛନ୍ତି ଇନ୍ଦ୍ରାଣୀ । ଯଦିଓ ସର୍ବଶେଷ ମାତୃକା ଇନ୍ଦ୍ରାଣୀ ନୁହଁନ୍ତି ତେବେ ଅନ୍ୟମାନଙ୍କ ଅପେକ୍ଷା ଇନ୍ଦ୍ରାଣୀଙ୍କ ସ୍ଥାନ ଉଚ୍ଚରେ ।

### ସପ୍ତମରେ ଚାମୁଣ୍ଡା

କେବଳ ଓଡ଼ିଶା ନୁହେଁ ସମଗ୍ର ଦେଶ ଭାରତବର୍ଷରେ ସପ୍ତମାତୃକାଙ୍କ ମଧ୍ୟରେ ଶେଷ ମାତୃକା ରୂପେ ଚାମୁଣ୍ଡା ଅବସ୍ଥିତା । ସମଗ୍ର ତନ୍ତ୍ର ଜଗତରେ ଚାମୁଣ୍ଡା ମହାଦେବୀ ରୂପେ ବ୍ୟକ୍ତ ହୋଇଛନ୍ତି । ଅବଶ୍ୟ ଓଡ଼ିଶାର ସମସ୍ତ ତନ୍ତ୍ର ପୀଠରେ ଚାମୁଣ୍ଡାଙ୍କର ମୂର୍ତ୍ତି ପୂଜା ପାଉଥିଲା । କେବଳ ସପ୍ତମାତୃକାଙ୍କ ମଧ୍ୟରେ ନୁହଁନ୍ତି, ଓଡ଼ିଶାର ବହୁ ତନ୍ତ୍ରପୀଠରେ ଚାମୁଣ୍ଡା ପୀଠ ଦେବୀ ରୂପେ ଅଦ୍ୟାପି ପୂଜିତା । ବହୁ ସ୍ଥାନରେ ମଧ୍ୟ ସେ ପାର୍ଶ୍ୱଦେବୀ ରୂପେ ଅବସ୍ଥାନ କରିଛନ୍ତି । ଆଶ୍ୱିନ ଦୁର୍ଗା ପୂଜାବେଳେ ଦେବୀ ଦୁର୍ଗାଙ୍କୁ ମଧ୍ୟ ଚାମୁଣ୍ଡା ରୂପେ ପୂଜା କରାଯାଏ । କେତେକ ପୀଠରେ ଚାମୁଣ୍ଡା ଚତୁର୍ଭୁଜା ଆଉ କେତେକ ପୀଠରେ ଅଷ୍ଟ, ଦଶ ବା ତତୋଧିକ ହସ୍ତା ହୋଇ ଅବସ୍ଥାନ କରୁଛନ୍ତି । ତନ୍ତ୍ରପୀଠ ଯାଜପୁରରେ ଏକ ଚାମୁଣ୍ଡା

ଅଷ୍ଟାଦଶାଭୁଜା, କେଉଁ ଚାମୁଣ୍ଡା ଶବ ଉପରେ ଉପବେଶନ କରିଛନ୍ତି ତ କେଉଁଠି ତାଣ୍ଡବ ଭଙ୍ଗୀରେ ଦଣ୍ଡାୟମାନ ହୋଇଛନ୍ତି । ଚାମୁଣ୍ଡା ତନ୍ତ୍ରର ମହାନ ଦେବୀ ସେ ଯେଉଁଭଳି ଭୟଙ୍କର, ସେହିଭଳି ସର୍ବଜନ ଆଦୃତ । ଯାଜପୁରର ଦଶାଶ୍ୱମେଧ ଘାଟରେ ଯେଉଁ ଚାମୁଣ୍ଡାଙ୍କ ମୂର୍ତ୍ତି ଦେଖିବାକୁ ମିଳେ, ସେ ଚତୁର୍ଭୁଜା । ତାଙ୍କର ଦକ୍ଷିଣ ଊର୍ଦ୍ଧ୍ୱହସ୍ତରେ ଖଡ଼ଗ ନିମ୍ନ ହସ୍ତରେ ଖର୍ପର ବା ପାନପାତ୍ର ଏବଂ ବାମ ଊର୍ଦ୍ଧ୍ୱହସ୍ତରେ ତ୍ରିଶୂଳ । ନିମ୍ନ ହସ୍ତରେ ଛିନ୍ନ ଶିର ରହିଛି । ଦଶାଶ୍ୱମେଧ ଘାଟ ଭଳି ପୁରୀ ମାର୍କଣ୍ଡେଶ୍ୱର ମନ୍ଦିର ନିକଟରେ ଥିବା ସପ୍ତମାତୃକାଙ୍କ ମଧ୍ୟରେ ଚାମୁଣ୍ଡା ଚତୁର୍ଭୁଜା । ସେ ତାଙ୍କର ଦକ୍ଷିଣ କରରେ ଖଡ଼ଗ ଏବଂ ବାମରେ ତ୍ରିଶୂଳ ଧାରଣ କରିଛନ୍ତି । ଅନ୍ୟ ଦୁଇଟି ହସ୍ତ ତାଙ୍କର ଭଗ୍ନ । ସେ ଶବ ବାହାନା, ଧର୍ମଶାଳାରେ ଥିବା ସପ୍ତମାତୃକା ଯାହାଙ୍କୁ କି ରାଜ୍ୟ ସଂଗ୍ରହାଳୟ ଭୁବନେଶ୍ୱରରେ ଦେଖିବାକୁ ମିଳେ ସେ ମଧ୍ୟ ଚତୁର୍ଭୁଜା । ତାଙ୍କର ବାମ ଊର୍ଦ୍ଧ୍ୱହସ୍ତ ଭଗ୍ନ ଓ ନିମ୍ନ ହସ୍ତରେ ନର ମୁଣ୍ଡ ଅଛି । ତାଙ୍କର ଦକ୍ଷିଣ କରର ଊର୍ଦ୍ଧ୍ୱହସ୍ତରେ ପାନପାତ୍ର ଅଛି । ଦେବୀ ଶବ ବାହନା ଓ ସେହି ଶବ ଗୋଡ଼ପାଖରେ ଦୁଇଟି ବିଲୁଆ ଶବକୁ ଖାଉଛନ୍ତି । ବୈତାଳ ମନ୍ଦିରରେ ଯେଉଁ ସପ୍ତଶକ୍ତି ରହିଛନ୍ତି, ସେହି ଦେବୀଙ୍କ ମଧ୍ୟରେ ପୀଠ ଦେବୀ ହେଉଛନ୍ତି ଚାମୁଣ୍ଡା । ଏହି ଚାମୁଣ୍ଡା ଅଷ୍ଟଭୁଜା, ଭୁବନେଶ୍ୱରର ବିନ୍ଦୁସାଗର କୂଳର ମୋହିନୀ ଅଷ୍ଟଭୁଜା ଚାମୁଣ୍ଡା । ମୟୂରଭଞ୍ଜ ରାଜ ବଂଶର କୁଳଦେବୀ ଖିଚିଂର କୀଚକେଶ୍ୱରୀ । ବାଙ୍କୀର ଚର୍ଚ୍ଚିକା, ଅସୁରେଶ୍ୱରର ହରଚଣ୍ଡୀ, ଅଷ୍ଟଭୁଜା ଚାମୁଣ୍ଡା ପୀଠ ଦେବୀ ରୂପେ ପୂଜା ପାଉଛନ୍ତି । ତାଛଡ଼ା ଝଙ୍କଡ଼ର ଅରଡ଼ଙ୍ଗରେ ଚୌରାଶିରେ । ବାଣପୁରରେ, ନିମାପଡ଼ା ନିକଟରେ ଚାମୁଣ୍ଡା ଆରାଧିତା ଅଂଶୁମଦ୍‌ଭେଦଗମ୍‌ରେ ଯେଉଁ ଚାମୁଣ୍ଡାଙ୍କ ଧ୍ୟାନ ଦେଖିବାକୁ ମିଳେ, ତାହା ପ୍ରାୟ ଓଡ଼ିଶାର ଆରାଧିତା ସପ୍ତମାତୃକାଙ୍କାର ଚାମୁଣ୍ଡାଙ୍କ ସହିତ ମିଳିଯାଏ । ଏହି ଧ୍ୟାନରେ ଅଛି ଚାମୁଣ୍ଡା ଚତୁର୍ଭୁଜା, ତ୍ରିନେତ୍ରା, ରକ୍ତବର୍ଣ୍ଣା, ଊର୍ଦ୍ଧ୍ୱକେଶା ନରକପାଳ ଓ ଶୂଳ ହସ୍ତା । ସେ ବରଭୟଦାୟିନୀ ଓ ପଇତାଭଳି ଶିରୋମାଳା ଭୂଷିତା ଏବଂ ବ୍ୟାଘ୍ର ଚର୍ମାବୃତ୍ତା ।

ଓଡିଶାରେ ଯେତେ ଚାମୁଣ୍ଡା ମୂର୍ତ୍ତି ଦୃଷ୍ଟି ହୁଅନ୍ତି, ସେହି ମୂର୍ତ୍ତିମାନଙ୍କ ସହିତ ଏହି ଧ୍ୟାନ ଆଂଶିକ ଭାବେ ମିଳିଥାଏ । ସର୍ବତ୍ର ଚାମୁଣ୍ଡା ଶବ ବାହାନା ଥିବାବେଳେ ଅଂଶୁମଦ୍‌ଭେଦାଗମ ତନ୍ତ୍ର ତାଙ୍କୁ ବଟବୃକ୍ଷ ସମାସିତା ଓ ପଦ୍ମ ଉପରେ ବାମପାଦ ରଖି ଦକ୍ଷିଣ ପାଦ ତଳକୁ ଠିକ୍ ବୌଦ୍ଧ ତାରାଙ୍କ ଭଳି ଉଲ୍ଲେଖ କରିଛି । ହିନ୍ଦୁ ତନ୍ତ୍ରର ଏହିଭଳି ଚାମୁଣ୍ଡା ମୂର୍ତ୍ତି ଓଡ଼ିଶାରେ ଦେଖାଯାଏ ନାହିଁ । ଚତୁର୍ଭୁଜା ଚାମୁଣ୍ଡା ଖଡ଼ଗ, ଡମ୍ବରୁ, ନରମୁଣ୍ଡ, ଢ଼ାଲ ଧରିଥିବା ଦେଖାଯାଏ କିନ୍ତୁ ବସ୍ତୁ ଧର୍ମୋତ୍ତରର ଯେଉଁ ଚାମୁଣ୍ଡାଙ୍କର ଧ୍ୟାନ ରହିଛି, ତାହା ଦଶଭୁଜା ଚାମୁଣ୍ଡାଙ୍କ ଧ୍ୟାନ । ଏହି ଧ୍ୟାନର ଚାମୁଣ୍ଡା ଓ ଓଡ଼ିଶାରେ ଆରାଧିତା ଚାମୁଣ୍ଡାଙ୍କ ଭଳି ଶବାସନା ସେ କ୍ଷୀଣ ଦେହୀ ବା ଅସ୍ଥି କଂକାଳସାର ଶରୀରା । ଉତ୍କଳୀୟ ଚାମୁଣ୍ଡାଙ୍କ ଭଳି ତାଙ୍କର ଆଖି କୋଟରଗତା । ସେ ତାଙ୍କର ଦକ୍ଷିଣ କର ପଞ୍ଚକରେ ମୂଷଳ, କବଚ, ଶର ଅଙ୍କୁଶ ଏବଂ ବାମକର ପଞ୍ଚକରେ ଖେଟକ, ପାଶ, ଧନୁ, ଦଣ୍ଡ, କୁଠାର ଧାରଣ କରିଛନ୍ତି ।

ଦିନଥିଲା ଓଡ଼ିଶାର ବହୁସ୍ଥାନରେ ସପ୍ତମାତୃକାଙ୍କ ମନ୍ଦିର ଥିଲା । କାଳକ୍ରମେ ସେହି ମନ୍ଦିରଗୁଡ଼ିକ ନଷ୍ଟ ହୋଇଯାଇ ମାତ୍ର କେତୋଟି ଅବଶିଷ୍ଟ ଅଦ୍ୟାପି ରହିଛି । ବର୍ତ୍ତମାନ ଭଦ୍ରକ, ଯାଜପୁର, ପୁରୀ, ଖିଚିଂ, କୁଣ୍ଡେଶ୍ୱର, ବେଲଗଣ୍ଡି ଓ ଘୋଡ଼ାଇଠାରେ ସପ୍ତମାତୃକା ରହିଛନ୍ତି । ଭୁବନେଶ୍ୱରର ବୈତାଳ ମନ୍ଦିର ମଧ୍ୟରେ ଯେଉଁଭଳି ଅଂକିତ ସପ୍ତଦେବୀ ଦୃଷ୍ଟ ହୁଅନ୍ତି, ସେହିଭଳି ପରଶୁରାମେଶ୍ୱର ମନ୍ଦିରର ବହିର୍ଦ୍ଦେଶ ଗାତ୍ରରେ ସପ୍ତଦେଶଙ୍କର ଚିତ୍ର ଖୋଦିତ ହୋଇଛି । ସେହିଭଳି ବଲାଙ୍ଗୀର ଜିଲ୍ଲାର ଘୋଡ଼ାରଠାରେ ଏକ ପର୍ବତ ଗାତ୍ରରେ ଖୋଦିତ ହୋଇ ଉପାସିତା ହେଉଛନ୍ତି ।

ଆଜିର ଏ ଶାରଦୀୟ ଦୁର୍ଗାପୂଜାବସରରେ ସେହି ମହାଶକ୍ତି ମହାଦେବୀଙ୍କୁ ସ୍ମରଣ କରି ସମସ୍ତ ଜନ କଣ୍ଠ ଯୋଡ଼ ହସ୍ତରେ ମାଗୁଣି ମାଗୁ–

ଅୟିମାତଃ

ମହାଦେବୀ ! ମହାଶକ୍ତି ! ଅଭୟ ବରଦାୟିନୀ !
କୃପାକରି ଆପଣା ସୃଷ୍ଟିକୁ ଆପେ ରକ୍ଷା କର ମା ।

ସଂପାଦିକା 'ନବରବି'
ଏ/୩୧୮, ସହିଦ ନଗର,
ଭୁବନେଶ୍ୱର–୭



# ଶାକ୍ତ ସଂସ୍କୃତିର ଐତିହ୍ୟ ଓ ବୈଜ୍ଞାନିକ ବିଶ୍ଳେଷଣ

**ଡକ୍ଟର ରମାକାନ୍ତ କର**

ହିନ୍ଦୁ ସଂସ୍କୃତିର ମୂଳ ଧର୍ମଗ୍ରନ୍ଥ ହେଉଛି ବେଦ । ବେଦରେ ପ୍ରକୃତିର ସ୍ଥାନ ରହିଛି । ପ୍ରକୃତି ହେଉଛି ମାୟା ଓ ଶକ୍ତି । ତେଣୁ ବେଦରେ ଶକ୍ତିର ସ୍ଥାନ ଉଚ୍ଚରେ । ବ୍ରାହ୍ମଣମାନେ ଯେତେବେଳେ ବେଦୋକ୍ତ ରୀତିରେ ଯଜ୍ଞାନୁଷ୍ଠାନ କରନ୍ତି, ସେତେବେଳେ ସେମାନେ ଅଗ୍ନିକୁ ସନ୍ତୁଷ୍ଟ କରିବା ପାଇଁ ଯଜୁର୍ବେଦରୁ ଗାନ କରନ୍ତି– ''ବସୁଚ ମେ ବସତିଶ୍ଚ ମେ କର୍ମଶ୍ଚ ମେ ଶକ୍ତିଶ୍ଚ ମେ ।'' ତେଣୁ ବେଦରେ ହିଁ ଶକ୍ତିଙ୍କର ଉପାସନା ମଧ୍ୟ ପ୍ରମାଣିତ ।

ସଂସ୍କୃତିର ଯୋଗ ମଧ୍ୟ ଅନ୍ୟ ଏକ ଅଙ୍ଗ । ଭକ୍ତି ଯୋଗରେ ଶକ୍ତିର ସ୍ଥାନ ଉଚ୍ଚରେ । ଯୋଗରେ ଶକ୍ତିର ପ୍ରାଧାନ୍ୟ ଦେଖିଲେ ମନର ସଂଯମତା ଆପେ ଆପେ ଆସିଯାଏ । କୁଣ୍ଡଳିନୀ ଶକ୍ତିକୁ ଯୋଗରେ ମହାଶକ୍ତି ବୋଲି କୁହାଯାଏ । ତେଣୁ ହଠଯୋଗ ପ୍ରଦୀପିକାରେ–

'ବିବିଧୈରାସନୈଃ କୁମ୍ଭୈର୍ବିଚିତ୍ରୈଃ କରଣୈଃ ଅପି ।
ପ୍ରବୁଦ୍ଧାୟାଂ ମହାଶକ୍ତୌ ପ୍ରାଣଃ ଶୂନ୍ୟେ ପ୍ରଲୀୟତେ ।''

ଅର୍ଥାତ୍, ଯେ ଏହି କୁଣ୍ଡଳିନୀ ଶକ୍ତିକୁ ଜାଣେ ସେ ହେଉଛି ପ୍ରକୃତ ଯୋଗୀ । ତେଣୁ ଏହି ଶକ୍ତି ସମ୍ବନ୍ଧରେ ପୁନଃ କୁହାଯାଇଛି–

'ଯେନ ମାର୍ଗେଣ ଗନ୍ତବ୍ୟଂ ବ୍ରହ୍ମସ୍ଥାନଂ ନିରାମୟମ୍
ମୁଖେନାଚ୍ଛାଦ୍ୟ ତଦ୍ଦ୍ୱାରଂ ପ୍ରସୁପ୍ତା ପରମେଶ୍ୱରୀ ।''

(ହ.ଯୋ.ପ୍ର)

ଅର୍ଥାତ୍ ରୋଗରୁ ଉତ୍ପନ୍ନ ହୋଇଥିବା ଦୁଃଖ ରୂପକ ଆମୟ ଯେଉଁଥିରେ ନଥାଏ, ଏହିଭଳି ବ୍ରହ୍ମ ସ୍ଥାନକୁ ଯେଉଁ ମାର୍ଗରେ ଯିବା ପାଇଁ ଯୋଗ୍ୟ ହୁଏ ଅର୍ଥାତ୍ ଯେଉଁମାର୍ଗରେ ବ୍ରହ୍ମ ସ୍ଥାନକୁ ଗମନ କରାଯାଏ, ତାହାକୁ ସୁଷୁମ୍ନା ମାର୍ଗ କହନ୍ତି । ଏହି ସୁଷୁମ୍ନା ମାର୍ଗକୁ ଆଚ୍ଛାଦନ କରି କୁଣ୍ଡଳିନୀ(ପରମେଶ୍ୱରୀ) ଶୟନ କରିଥାନ୍ତି । ତେଣୁ ଏହି ଯୋଗରେ କୁଣ୍ଡଳିନୀକୁ ପରମେଶ୍ୱରୀ ଓ ମହାଶକ୍ତି ବୋଲି ପ୍ରମାଣିତ କରାଯାଇଛି । ଏହି ମହାଶକ୍ତିଙ୍କର ନାମ ମଧ୍ୟ ଭିନ୍ନ ଭିନ୍ନ ଅଟେ ।

'କୁଟିଳାଙ୍ଗୀ କୁଣ୍ଡଳିନୀ ଭୁଜଙ୍ଗୀ ଶକ୍ତିରୀଶ୍ୱରୀ ।
କୁଣ୍ଡଲ୍ୟରୁଂଧତା ଚୈତତ୍ ଶବ୍ଦାଃ ପର୍ଯ୍ୟାୟ ବାଚକାଃ ।''

(ହ.ଯୋ.ପ୍ର)

ଏହାର ନାମ କୁଟିଳାଙ୍ଗୀ, କୁଣ୍ଡଳିନୀ, ଭୁଜଙ୍ଗୀ, ଶକ୍ତି, ଈଶ୍ୱରୀ, କୁଣ୍ଡଳୀ, ଅରୁନ୍ଧତୀ ଏହିପରି ୭ଟି ଅଟେ । ତେଣୁ ଯୋଗରେ ଶକ୍ତିର ସ୍ଥାନ ଯଥେଷ୍ଟ ରହିଛି । ଏହି ଯୋଗ ମହାଶକ୍ତି ସମ୍ବନ୍ଧରେ ଯୋଗୀ ଶିବାନନ୍ଦ ଲେଖିଛନ୍ତି–

"The serpentine power is called Kundalinishakti on account of its spiral like working in the body of the yogi developing the power is himself. It is the Divine cosmic Energy in bodies."

ତେଣୁ ଏହି ମହାଶକ୍ତି ଜାଗ୍ରତ ହେଲେ ଯୋଗୀ ତା'ର ଯୋଗୀନାମ ସିଦ୍ଧ କରେ । ସେହିପରି ଶକ୍ତି କହିଲେ ସମସ୍ତଙ୍କ ମତରେ ଭଗବାନ ହିଁ ସର୍ବଶକ୍ତିମାନ୍ । ସଂସାରରେ ଅନ୍ୟ ଯେତେ କିଛି ମୂଲ୍ୟବାନ ପଦାର୍ଥ ହେଉନା କାହିଁକି, ତାହା ହେଉଛି ସର୍ବଶକ୍ତିମାନ ଭଗବାନଙ୍କର ଅଂଶ ସ୍ୱରୂପ ।

''ଯଦ୍ ଯଦ ବିଭୂତି ମତ୍ ସତ୍ତ୍ୱଂ ଶ୍ରୀ ମର୍ଜିତମେବବା
ତତ୍ତଦେବାବଗଚ୍ଛତ୍ୱଂ ମମ ତେଜୋଁଶ ସମ୍ଭବମ୍ ।''

ପ୍ରତ୍ୟେକ ଶାସ୍ତ୍ର ଅନୁଧାନ କଲେ ଶୈବଙ୍କ ମତରେ ଶିବ, ଶାକ୍ତଙ୍କ ମତରେ ଶକ୍ତି, ବୈଷ୍ଣବମାନଙ୍କ ମତରେ ବିଷ୍ଣୁ, ବୌଦ୍ଧଙ୍କ ମତରେ ବୁଦ୍ଧ, ଜୈନଙ୍କ ମତରେ ମହାବୀର, ଖ୍ରୀଷ୍ଟିଆନଙ୍କ ମତରେ ଯୀଶୁ, ମୁସଲମାନଙ୍କ ମତରେ ଆଲ୍ଲା ଆଦିଙ୍କୁ ଭଗବାନ ବୋଲି କହିଥାନ୍ତି । ତେଣୁ ବିଦେଶୀ ଦାର୍ଶନିକମାନଙ୍କ ମତରେ ସେହି ଭଗବାନ ହିଁ ଶକ୍ତି । ଏହି ଶକ୍ତି ସାଧାରଣତଃ ତିନୋଟି ମହାଶକ୍ତିରେ ବିଭକ୍ତ ହୋଇଛି । ୧– ଅତି ପ୍ରାକୃତିକ ଶକ୍ତି । ୨– ପ୍ରାକୃତିକ ଶକ୍ତି ଓ ୩– ସାଧାରଣ ଶକ୍ତି । ସାଧାରଣ ଶକ୍ତି ଓ ପ୍ରାକୃତିକ ଶକ୍ତି ଉଭୟକୁ ଅତି ପ୍ରାକୃତିକ ଶକ୍ତି ନିୟନ୍ତ୍ରଣ କରେ । ଅତି ପ୍ରାକୃତିକ ଶକ୍ତିକୁ ମଧ୍ୟ ତିନି ଭାଗରେ ବିଭକ୍ତ କରାଯାଇପାରେ । ୧– ଆତ୍ମଶକ୍ତି, ୨ –ଦୈବୀଶକ୍ତି, ୩– ମହାଶକ୍ତି (ଦୁର୍ଗାଶକ୍ତି) ।

ଆତ୍ମଶକ୍ତି ଶାରୀରିକ, ମାନସିକ ଓ ସଙ୍ଗଠନ ଶକ୍ତିକୁ ନେଇ ଗଠିତ । ଆତ୍ମଶକ୍ତି ଜାଗ୍ରତ ହେଲେ ଶରୀର, ମନ, ବୁଦ୍ଧି ଓ ହୃଦୟର ବିକାଶ ହୁଏ । ଏହି ଆତ୍ମଶକ୍ତି ହିଁ ଜୀବନ । ଆତ୍ମଶକ୍ତିର ଅନୁପସ୍ଥିତିରେ ମାନବ ଅନ୍ତରରେ ସ୍ୱାବଲମ୍ବନର ପ୍ରବୃତ୍ତି ଜାତ ହୁଏ ନାହିଁ କିମ୍ବା ସ୍ୱାବଲମ୍ବନର ଅନୁପସ୍ଥିତିରେ ମନୁଷ୍ୟ ନିଜର ଉନ୍ନତି ସାଧନ କରିପାରେ ନାହିଁ ।

ଦୈବୀଶକ୍ତି ମନୁଷ୍ୟକୁ ଆତ୍ମ ଶକ୍ତିର ଦୃଢତା ଆଣିଦିଏ । ଏହାକୁ ଐଶ୍ୱରୀକ ଶକ୍ତି କୁହାଯାଏ । ଏହା ମାନବର ଆତ୍ମ ଶକ୍ତିର ପ୍ରଭାବରେ ହୋଇଥିବା ଶରୀରରେ ତେଜ, ମନରେ ଦୃଢତା, ବୁଦ୍ଧିରେ ତୀକ୍ଷ୍ଣ ଓ ହୃଦୟରେ ସରଳତା ସୃଷ୍ଟି କରେ । ଏହା ଫଳରେ ମାନବ ମେଧାବୀ, ତେଜବାନ ଓ ଲକ୍ଷ୍ମୀବନ୍ତ ହୋଇପାରେ ।

ମହାଶକ୍ତି ହେଉଛି ଉପରୋକ୍ତ ଦ୍ୱୟଶକ୍ତିର ନିୟନ୍ତ୍ରଣକାରୀ । ଏହି ଶକ୍ତି ହେଉଛି ଦୁର୍ଗାଶକ୍ତି । ଏହି ଦୁର୍ଗାଶକ୍ତି ପରମାରାଧ୍ୟା ପରମେଶ୍ୱରୀ ନାମରେ ନାମିତ । ଏହି ଶକ୍ତିର ଉପାସନାରେ ମନୁଷ୍ୟର ଅନ୍ୟ ଶକ୍ତିଗୁଡିକ ଶୀଘ୍ର ହସ୍ତଗତ ହୋଇପାରନ୍ତି । ତେଣୁ ଦୁର୍ଗାଦେବୀଙ୍କୁ ମହାଶକ୍ତିମୟୀ ଭଗବତୀ ବୋଲି ଧ୍ୟାନ ଓ ଭାବନା କରାଯାଏ । ଏହି ଦୁର୍ଗାଶକ୍ତିର ମୂଳରେ ଭାବନାର ସ୍ଥାନ ଅତି ଉଚ୍ଚରେ । ମହାଶକ୍ତିମୟୀ ଭଗବତୀ ମନୁଷ୍ୟର ଭାବନା ଦ୍ୱାରା ସନ୍ତୁଷ୍ଟ ହୋଇ ଅଭୟ ପ୍ରଦାନ କରିଥାନ୍ତି ।

'' ନ କାଷ୍ଠେ ବିଦ୍ୟତେ ଦେବୀ ନ ପାଷାଣେ ନ ମୃଣ୍ମୟେ
ଭାବେ ହି ବିଦ୍ୟତେ ଦେବସ୍ତସ୍ମାଦ୍ ଭାବସ୍ତୁ କାରଣମ୍ ।''

ତେଣୁ ଭଗବତୀଙ୍କର ଧ୍ୟାନ (ରୂପ)କୁ ସ୍ୱାଚାର ହୃଦୟରେ ଗ୍ରହଣ କଲେ ଭଗବତ ଶକ୍ତି ପ୍ରାପ୍ତ ହୁଏ । ତେଣୁ ଶରତ କାଳରେ ଶରତ ପୂଜାରେ ଭକ୍ତଗଣ ସପ୍ତମୀ, ଅଷ୍ଟମୀ, ନବମୀ ଏହି ତିନିଦିନ ଉତ୍ତମ ଭାବରେ ପବିତ୍ର ଆତ୍ମାରେ ମହିଷାସୁରମର୍ଦ୍ଦିନୀ ଜଗତର ଅଧିଷ୍ଠାତ୍ରୀ ଶକ୍ତିରୂପା ଭଗବତୀ ଦୁର୍ଗାଙ୍କର ଚରଣାରବିନ୍ଦରେ ଧୂପ, ଦୀପ ଓ ନୈବେଦ୍ୟାର୍ପଣପୂର୍ବକ ଆରାଧନା କରିଥାନ୍ତି । ସମସ୍ତଙ୍କ ମୁଖରୁ ଶୁଣାଯାଏ–

''ଯା ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ।''

(ଶ୍ରୀ ଶ୍ରୀ ଚଣ୍ଡୀ)

ଏହି ଭଗବତୀ ଶକ୍ତି ବା ମହାଶକ୍ତିକୁ ପ୍ରୀତ କରି ହସ୍ତଗତ କରିବାକୁ ହେଲେ ମାନବକୁ ବହୁତ କଷ୍ଟ ସ୍ୱୀକାର କରିବାକୁ ପଡିଥାଏ । ସାଧନାର ଅର୍ଥ 'ମାନବସ୍ୟ ଜୀବନଲକ୍ଷ୍ୟଂ ସାଧନେତି କଥ୍ୟତେ ବୁଧୈଃ' । ମନୁଷ୍ୟର ଲକ୍ଷ୍ୟ ଯେଉଁ ମାର୍ଗରେ ପୂରଣ ହୁଏ, ତାହାକୁ ଜ୍ଞାନୀମାନେ ସାଧନା ବୋଲି କହନ୍ତି । ତେଣୁ ଶିବାନନ୍ଦ ମଧ୍ୟ କହିଛନ୍ତି–

" Sadhana is a means to attain the good of life."

ମନୁଷ୍ୟ ତା'ର ଜୀବନର ଗତିକୁ ଦୃଢୀଭୂତ କରିବାକୁ ହେଲେ ସେଥିପାଇଁ ଦୈବୀଶକ୍ତି ଆରାଧନା ନିତାନ୍ତ ଦରକାର ଏବଂ ଏହି ମହାଶକ୍ତିଙ୍କୁ ଆହରଣ କରିବାକୁ ହେଲେ ସାଧନା ମଧ୍ୟ ଆବଶ୍ୟକ ।

ଏହି ସାଧନା ଫଳରେ ଶକ୍ତି ଉପାସନା ଅଧିକରୁ ଅଧିକତର ହୋଇଥାଏ । ତେଣୁ ସାଧନା ମାନବ ଜୀବନର ପ୍ରଥମ ଓ ପ୍ରଧାନ ଉପାଦାନ । ଏହି ସାଧନା ସିଦ୍ଧି କରି ମାନବ ସମାଜରେ ଦୃଢ ଭାବରେ ଦଣ୍ଡାୟମାନ ହେବା ସଙ୍ଗେ ସଙ୍ଗେ ଭଗବତୀଙ୍କର ଚରଣାରବିନ୍ଦରେ ଭକ୍ତି ଢାଳି ସମାଜର ମଙ୍ଗଳ କାମନା କରିବା ଉଚିତ୍ ।

ଯୋଗ ନିକେତନ,
ଗୁଡିଆ ସାହି, ପୁରୀ–୧



# ଶ୍ରୀଜଗନ୍ନାଥ ସାଂସ୍କୃତିକ ଚେତନାରେ ମାତୃଶକ୍ତିର ଉପାସନା

**ରାମଚନ୍ଦ୍ର ଦାଶ**

ଭାରତରେ ଥିବା ଚାରିଗୋଟି ତନ୍ତ୍ରପୀଠ ମଧ୍ୟରୁ ପ୍ରଥମ ଏବଂ ପ୍ରଧାନ ତନ୍ତ୍ରପୀଠ ଓଡ଼ିଶାରେ ବିରାଜିତ ଥିବା ଶ୍ରୀଜଗନ୍ନାଥ ତନ୍ତ୍ର ଦେବତା ବୋଲି ଅନେକ ପ୍ରମାଣ କରନ୍ତି । ତେଣୁ ଜଗନ୍ନାଥ ଚେତନାରେ ମାତୃଶକ୍ତିର ଉପାସନା ଯେ ଅତ୍ୟନ୍ତ ପରିପୁଷ୍ଟ, ଏହା ନିଃସନ୍ଦେହରେ କୁହାଯାଇପାରେ । ଶକ୍ତି ପୂଜାର ମୂଳରେ ଦୁଇଟି ପରମ୍ପରା ଏବେ ମଧ୍ୟ ଅନୁସୃତ ହେଉଛି । ଗୋଟିଏ ଚୈତ୍ର ମାସରେ ବାସନ୍ତୀକ ଓ ଅନ୍ୟଟି ଆଶ୍ୱିନ ମାସରେ ଶରତକାଳୀନ ବା ଶାରଦୀୟ । ଏହି ଦୁଇ ପ୍ରକାରର ପୂଜାକୁ ଯଥାକ୍ରମେ ଆସୁରିକ ଓ ବେଦ ସମ୍ମତ ବୋଲି କୁହାଯାଏ । ବାସନ୍ତୀକ ଆରାଧନା ବଳରେ ରାବଣ ବଳିୟାନ ହୋଇ କାଳୀଙ୍କର ଅଭୟ ପାଇଥିବାରୁ ରାମଚନ୍ଦ୍ରଙ୍କର ସମସ୍ତ ବାଣ ପରାଭୂତ ହୋଇଥିଲା । ଅବଶେଷରେ ବିଭୀଷଣଙ୍କଠାରୁ ରାମଚନ୍ଦ୍ର ଏହି ଭେଦ ପ୍ରାପ୍ତ ହୋଇ କାଳୀକାଙ୍କ ପୂଜା ଆରାଧନା କରିଥିଲେ । ଦୈନିକ ସହସ୍ର ପଦ୍ମ ପୁଷ୍ପରେ ପୂଜା କରୁଥିଲେ ଏବଂ ଶେଷକୁ କାଳୀ ବା ଯୋଗମାୟାଙ୍କ ମାୟାବଳରେ ଗୋଟିଏ ପଦ୍ମ ଅପହୃତ ହୋଇଥିଲା । ଫଳରେ ରାମଚନ୍ଦ୍ର ସେହି ଅଭାବ ପୂରଣ କରିବାକୁ ନିଜର ଗୋଟିଏ ପଦ୍ମଲୋଚନ ଉତ୍ପାଟନ କରି ପୂଜାକୁ ନିର୍ବିଘ୍ନରେ ଶେଷ କରିବାକୁ ଉଦ୍ୟତ ହେବାରୁ କାଳୀ ସନ୍ତୁଷ୍ଟ ହୋଇ ବର ପ୍ରଦାନ କରିଥିଲେ । ଶେଷରେ ରାମଚନ୍ଦ୍ର ରାବଣକୁ ନିହତ କରିବାକୁ ସମର୍ଥ ହେଲେ ବୋଲି କିମ୍ବଦନ୍ତୀ ଅଛି । ଏହି ପୂଜାର ଶେଷ ଦିବସ ଚୈତ୍ର ଅଷ୍ଟମୀରେ ପଡୁଥିବାରୁ ଏବଂ ଏହି ଦିନ ବସ୍ତୁତଃ ରାମଚନ୍ଦ୍ରଙ୍କ ଶୋକ ନିବାରଣ ହୋଇଥିବାରୁ ଅଶୋକାଷ୍ଟମୀ ନାମରେ ପ୍ରଖ୍ୟାତ । ଅଶୋକାଷ୍ଟମୀରେ ଭୁବନେଶ୍ୱର-ଏକାମ୍ର କ୍ଷେତ୍ରରେ ଯେଉଁ ପ୍ରସିଦ୍ଧ ରଥଯାତ୍ରା ହୁଏ, ସେହି ଦେବୀ ରଥ ଶ୍ରୀକ୍ଷେତ୍ରର ଶକ୍ତି ସ୍ୱରୂପା ମା' ସୁଭଦ୍ରାଙ୍କ ଦେବଦଳନ ରଥର ଆଚ୍ଛାଦିତ ବସ୍ତ୍ରରେ ହୋଇଥାଏ । ଶ୍ରୀମନ୍ଦିରରେ ମଧ୍ୟ ଅଶୋକାଷ୍ଟମୀ ଉତ୍ସବ ଯଥାରୀତି ଅନୁଷ୍ଠିତ ହୁଏ ।

ଶକ୍ତି ବା ତନ୍ତ୍ର ତତ୍ତ୍ୱର ସାମଗ୍ରିକ ପ୍ରଭାବ ସାରା ଉତ୍କଳ ଦେଶରେ ପରିବ୍ୟାପ୍ତ ଏବଂ ଏହାର କେନ୍ଦ୍ରିକ ଆଧାର କାକଟପୁର ମଙ୍ଗଳାଙ୍କ ପାଖରେ ଚୈତ୍ର ମାସରେ ଝାମୁ ଯାତ୍ରାରେ ଅନୁଷ୍ଠିତ ହୁଏ । ପୁରୀର ବିଖ୍ୟାତ ଚଇତି ଘୋଡା ଓ ଚଢ଼େଇଆ ଚଢ଼େଇଆଣୀ ନୃତ୍ୟ ଏହି ସମୟରେ ପରିପୁଷ୍ଟ ହୁଏ । ନବକଳେବର ସମୟରେ କାକଟପୁର ମଙ୍ଗଳାଙ୍କ ପାଖରେ ଦାରୁ ଅନ୍ୱେଷଣ ପୂର୍ବରୁ ଶ୍ରୀମନ୍ଦିରରେ ସେବକମାନେ ଅଧିଆ ପଡିବା ଏବଂ ସେଠାରୁ ମାଆଙ୍କ ନିର୍ଦ୍ଦେଶରେ ଦାରୁ ଅନ୍ୱେଷଣରେ ବାହାରି ସଫଳ ହେବା ଏବେ ବି ଅନୁସୃତ ହେଉଛି । ରତ୍ନ ସିଂହାସନରେ ବିରାଜିତା ଦେବୀ ସୁଭଦ୍ରା ଶକ୍ତିତତ୍ତ୍ୱରେ ଭୁବନେଶ୍ୱରୀ ଓ ସୁଭଦ୍ରାଙ୍କ ରଥର ଆବରଣ ନେଇ ଏକାମ୍ର ଭୁବନେଶ୍ୱରରେ ରଥଯାତ୍ରା ହୁଏ, ତାହା ଚୈତ୍ର-ଗୁଣ୍ଡିଚା ନାମରେ ନାମିତ । ଶାକ୍ତମାନଙ୍କ ମତରେ ସ୍ୱୟଂ ଜଗନ୍ନାଥ ମଧ୍ୟ ଦକ୍ଷିଣ କାଳୀକା ।

ତାରା ଯନ୍ତ୍ରେ ପ୍ରଳଂଭଗ୍ନଂ ସୁଭଦ୍ରା ଭୁବନେଶ୍ୱରୀ
ଶ୍ୟାମ ଯନ୍ତ୍ରେ ଜଗନ୍ନାଥ ସେବେ ଦକ୍ଷିଣ କାଳୀକା ।

ସତକୁ ସତ ଜଗନ୍ନାଥ ଦେବୀଙ୍କ ଭଳି ନାକରେ ଫୁଲର ବସଣୀ ଲଗାନ୍ତି । ତନ୍ତ୍ର ବା ଶକ୍ତିପୀଠ ହୋଇଥିବାରୁ ଜଗନ୍ନାଥଙ୍କୁ ଅର୍ପିତ ପ୍ରସାଦ ମହାପ୍ରସାଦରେ ପରିଣତ ହୁଏ । କିନ୍ତୁ ଶ୍ରୀମନ୍ଦିରର ଭୈରବ ଶ୍ରୀଜଗନ୍ନାଥ ଓ ଭୈରବୀ 'ବିମଳା' ଏବଂ ମହାପ୍ରଭୁଙ୍କ ପାଖରେ ଧୂପ ସରିଲେ, ସେହି ପ୍ରସାଦ ମାଆଙ୍କ ପାଖରେ ସମର୍ପିତ ହୋଇଥାଏ । ମହାପ୍ରଭୁଙ୍କର ନୀତି ସବୁ ଶେଷ ନହେଲା ପର୍ଯ୍ୟନ୍ତ କେବଳ ବିମଳାଙ୍କ ନୀତି ବ୍ୟତୀତ ଶ୍ରୀମନ୍ଦିରର ଆଉ କୌଣସି ଦେବାଦେବୀଙ୍କର ନୀତି ଅପେକ୍ଷା କରାଯାଏ ନାହିଁ । ଏପରିକି ଜଗନ୍ନାଥଙ୍କର ପହୁଡ ପରେ ମା' ବିମଳାଙ୍କ ପହୁଡ ହେବା ଏବଂ ଶାରଦୀୟ ଦେବୀପୂଜା ସମୟରେ ଜଗନ୍ନାଥଙ୍କ ବିଗ୍ରହ ମାଧବ

ରତ୍ନ ସିଂହାସନ ଉପରେ ବିରାଜିତ ଥାଆନ୍ତି ସେ ଦକ୍ଷିଣଦ୍ୱାରରେ ଥିବା ମା' ଦୁର୍ଗାଙ୍କ ବିଗ୍ରହ ସହିତ ଏକତ୍ର ବନ୍ଧାଯାଇ ଶ୍ରୀମନ୍ଦିର ଭାଷାରେ ରୁନ୍ଧା ହୋଇ ଆଶ୍ୱିନ ଅଷ୍ଟମୀଠାରୁ ଆରମ୍ଭ ହେଉଥିବା ଷୋଳ ପୂଜାର ପ୍ରଥମ ଆଠଦିନ ବିମଳା ମନ୍ଦିରରେ ପୂଜିତ ହୋଇଥା'ନ୍ତି । ଦୋଳମଣ୍ଡପ ସାହିସ୍ଥ ନାରାୟଣୀ ମନ୍ଦିରରୁ ଶେଷ ଆଠଦିନ ଶାକ୍ତ ଗୁଣ୍ଡିଚାରେ ଯାତ୍ରା କରି ପୂଜିତ ହେବାର ବ୍ୟବସ୍ଥା ଅନାଦି କାଳରୁ ଚଳି ଆସୁଛି । ଅବଶ୍ୟ ଏହି ସପ୍ତବରଣା(ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା, ସୁଦର୍ଶନ, ଶ୍ରୀଦେବୀ, ଭୂଦେବୀ ଓ ମାଧବ)ଙ୍କ ମଧ୍ୟରେ ମାଧବ କୁମାର ପୂର୍ଣ୍ଣିମା ଦିନ ମହାଲକ୍ଷ୍ମୀଙ୍କ ମନ୍ଦିରରେ ଆବଦ୍ଧ ରହନ୍ତି । ଏଥିରୁ ଶକ୍ତି ସ୍ୱରୂପା ମାଆଙ୍କର ଶକ୍ତି ଅଧିକତର ସୂଚିତ ହୁଏ ଏବଂ ତାହା ହିଁ ମାର୍କେଣ୍ଡେୟ କୃତ ସପ୍ତଶତୀ ଚଣ୍ଡୀର ମହିଷାସୁର ବଧ ଓ ବ୍ୟାସ ବିରଚିତ 'ଦେବୀ ପୁରାଣମ୍'ର ଘୋର ରାକ୍ଷସ ବଧରେ ବର୍ଣ୍ଣିତ ହୁଏ ।

ଅବଶ୍ୟ ସେହି ଶକ୍ତି ବଳରେ ଭଗବାନ ବିଷ୍ଣୁ ସୃଷ୍ଟିକୁ ପାଳନ କରନ୍ତି ଓ ଭଗବାନ ଶିବ ସଂହାର କରନ୍ତି ବୋଲି କୁହାଯାଏ । ପୁନଶ୍ଚ ଶକ୍ତି ସ୍ୱରୂପା ମା' ସେଥିପାଇଁ ମହାସରସ୍ୱତୀ (ସାତ୍ତ୍ୱିକ ବା ଜ୍ଞାନ-ଶକ୍ତି) ମହାଲକ୍ଷ୍ମୀ (ରାଜସିକ ବା କ୍ରିୟା ଶକ୍ତି) ମହାକାଳୀ(ତାମସିକ) ବା ଇଚ୍ଛାଶକ୍ତିର ଆଧାର ବୋଲି କୁହାଯାଏ । ଶିବ ଅନ୍ଧକ ରାକ୍ଷସକୁ ତ୍ରିଶୂଳରେ ନିହତ କଲାପରେ ଅନ୍ଧକର ରକ୍ତରୁ ଅନ୍ଧକ ପରି ଅନେକ ରାକ୍ଷସ ସୃଷ୍ଟି ହେବାର ଆଶଙ୍କା ହେବାରୁ ସେହି ରକ୍ତ ଭୂମିରେ ପତିତ ପୂର୍ବରୁ ଶୋଷି ନେବାକୁ ବ୍ରହ୍ମା, ବିଷ୍ଣୁ ଦେବତା ନିଜ ନିଜ ଶରୀରରୁ ଅଷ୍ଟମାତୃକା ସୃଷ୍ଟି କଲେ । ସେମାନେ ହେଲେ, ରୁଦ୍ରାଣୀ, ମାହେଶ୍ୱରୀ, ବୈଷ୍ଣବୀ, କୌମାରୀ, ଇନ୍ଦ୍ରାଣୀ, ବାରଣୀ ଓ ଚାମୁଣ୍ଡା ।

କେବଳ ଯେ ସମସ୍ତ ଦେବତାମାନଙ୍କର ସମ୍ମିଳିତ ପ୍ରାର୍ଥନା ବା ଶକ୍ତିରୁ ଶକ୍ତି ସ୍ୱରୂପା ମା' ଦୁର୍ଗତି ନାଶିନୀ ଦୁର୍ଗା ମହିଷାସୁରକୁ ନିହତ କରିଥିଲେ ତାହା ନୁହେଁ, ବରଂ ସୃଷ୍ଟିର ଆଦ୍ୟ କାଳରେ ବ୍ରହ୍ମା ମହାପଦ୍ମରୁ ବାହାରି ଆସି, ଶୂନ୍ୟଶୂନ୍ୟ ମହାଶୂନ୍ୟକୁ ଦେଖି କିଂକର୍ତ୍ତବ୍ୟବିମୂଢ ହୋଇ ହତଜ୍ଞାନ ହେଲେ । ମା' ମଙ୍ଗଳା, ବ୍ରହ୍ମାଙ୍କୁ ସୂକ୍ଷ୍ମାତିମାର୍ଗ ଦର୍ଶନ କରାଇ ଦେବାରୁ ବ୍ରହ୍ମା, ଭଗବାନ ବିଷ୍ଣୁଙ୍କର ନାଭିପଦ୍ମର ଅନୁସନ୍ଧାନ ପାଇଲେ । ସେହିଦିନଠାରୁ ମାଆଙ୍କର ନାମ ହେଲା ବାଟ ମଙ୍ଗଳା ଏବଂ ଚୈତ୍ରମାସର ପ୍ରତ୍ୟେକ ମଙ୍ଗଳବାର ଦିନ ଓଡ଼ିଶାରେ ଦେବୀପୀଠମାନଙ୍କରେ ବିଶେଷ ପୂଜା ଆରାଧନା ବ୍ୟବସ୍ଥା ପ୍ରଚଳିତ ଅଛି । ଓଡ଼ିଶାର ''ପନ୍ଥେଇ ବା ପଥ ଓଷା'' ଏ ସମ୍ପର୍କରେ ପ୍ରଣିଧାନଯୋଗ୍ୟ । ତେଣୁ ପରମ ବୈଷ୍ଣବୀ ଶକ୍ତି ସ୍ୱରୂପା ସୁଭଦ୍ରା ଶ୍ରୀମନ୍ଦିରରେ ସୁଭଦ୍ରା ଭାବରେ ବିରାଜିତା । ତେଣୁ ଶରତକାଳୀନ ଦୁର୍ଗାପୂଜା ଓ ବସନ୍ତକାଳୀନ ମଙ୍ଗଳା ପୂଜା ମଧ୍ୟରେ ଶକ୍ତି ତତ୍ତ୍ୱର ଆରାଧନା ଦୃଷ୍ଟିରୁ ବିଶେଷ ପାର୍ଥକ୍ୟ ନଥିଲେ ହେଁ, ସମୟ ଓ ପୂଜନ ମାର୍ଗ ଦୃଷ୍ଟିରୁ କେତେକ ପାର୍ଥକ୍ୟ ରହିଛି । ରାବଣକୁ ନିହତ କରିବାକୁ ରାମଚନ୍ଦ୍ରଙ୍କର ନବପଲ୍ଲବ ପୂଜାରୁ ଚୈତ୍ର ମଙ୍ଗଳବାରରେ ମା' ମଙ୍ଗଳ ଚଣ୍ଡିକାଙ୍କ ନବ-ପତ୍ରିକା ପୂଜା ସମ୍ଭବତଃ ଉଦ୍ଭବ ହୋଇଛି । ତାତ୍ତ୍ୱିକ ଦୃଷ୍ଟିରୁ ମଙ୍ଗଳ ଚଣ୍ଡିଙ୍କର ପଥ ପ୍ରଦର୍ଶନର ସଙ୍କେତ ମିଳୁଥିଲେ ହେଁ, ଦୁର୍ଗାଙ୍କର ଭୟ ବିନାଶନ-ସଙ୍କେତ ।

ଚଣ୍ଡୀରେ ମହିଷାସୁର, ଶୁମ୍ଭ ନିଶୁମ୍ଭ ରାକ୍ଷସମାନଙ୍କର ନିଧନ ଯେପରି ବର୍ଣ୍ଣନା କରାଯାଇଛି, ତାହା ପ୍ରତୀକାତ୍ମକ ହୋଇପାରେ । ମହିଷ ଅଜ୍ଞାନର ପ୍ରତୀକ । ଜ୍ଞାନ ବିହୀନ ବ୍ୟକ୍ତି ପଶୁସମାନ, ମହିଷାସୁରର ମୁଣ୍ଡ ମଇଁଷି ପଶୁର ମୁଣ୍ଡ ସହିତ ସମାନ । ଗୀତାଭଳି ଚଣ୍ଡୀରେ ମଧ୍ୟ ଜ୍ଞାନୋଦୟର ସଙ୍କେତ ମିଳେ । ଉଦାହରଣ ସ୍ୱରୂପ, ଅର୍ଜ୍ଜୁନ ଯେ ଭଗବାନଙ୍କୁ ହେ କୃଷ୍ଣ, ହେ ଯାଦବ, ହେ ସଖା ବୋଲି ସମ୍ବୋଧନ କରି ନିଜର ବଳ ବା ପରାକ୍ରମର ଅହଙ୍କାରରେ ଅହଙ୍କାରୀ ଥିଲେ । ସେ ଭଗବାନଙ୍କର ବିଭୂତି ବିଶ୍ୱରୂପ ଦର୍ଶନ କଲା ପରେ ସେ ସମସ୍ତ ଅହଙ୍କାର ପରିହର କରି, ଭଗବାନଙ୍କର ଶରଣାପନ୍ନ ହୋଇ ଧର୍ମ ସଂସ୍ଥାପନା ପାଇଁ ନିଜକୁ ନିମିତ୍ତ ମନେକରି ଯେପରି ଯୁଦ୍ଧରେ ପ୍ରବୃତ୍ତ ହେଲେ, ଚଣ୍ଡୀରେ ସେହିପରି ରାଜା ସୁରଥ ବା ବଣିକ ସମାଧିଙ୍କର ଦେବୀଙ୍କ ବିଭୂତି ଯୋଗୁ ଜ୍ଞାନୋଦୟ ଘଟିଥିଲା ।

ବର୍ଣ୍ଣିତ ଅଛି, ଶରତ୍‌କାଳୀନ ଆଶ୍ୱିନ ମାସ କୃଷ୍ଣ ଅଷ୍ଟମୀଠାରୁ ଶୁକ୍ଳ ନବମୀ ପର୍ଯ୍ୟନ୍ତ ୧୬ଦିନ ଯାହାକୁ ଦେବୀଙ୍କ ଷୋଡପୂଜା ବୋଲି କୁହାଯାଏ, ସେହି ସମୟରେ ଦେବୀ ଅସୁରମାନଙ୍କୁ ନିଧନ କରିବାରେ ପ୍ରବୃତ୍ତ ଥିଲେ ବୋଲି କଥିତ ଅଛି । ଦୁର୍ଗ ନାମକ ଏକ ବଳଶାଳୀ ଅସୁରକୁ ନିହତ କରିଥିବାରୁ ସେ ଦୁର୍ଗା ନାମରେ ପ୍ରଖ୍ୟାତ ବୋଲି ଜଣାପଡେ ।

ଐତିହାସିକମାନଙ୍କ ମତାନୁସାରେ, ଦୁର୍ଗାଙ୍କର ଦ୍ୱିତୀୟ ଶତାବ୍ଦୀରେ କାଳ ନିରୂପଣ କରିବା ସମୟେ, ବୌଦ୍ଧ ତାନ୍ତ୍ରିକ ମତରେ ତାରା, ଏହାଙ୍କର ଅନେକ ପୂର୍ବବର୍ତ୍ତୀ ବୋଲି କହନ୍ତି । କିନ୍ତୁ ବୈଦିକ ପୁରୁଷ(ପୁରୁଷସୂକ୍ତ) ଦଶା ଧାରରେ ପରିଣତ ହୋଇ ଦଶ ଅବତାରରେ କଳ୍ପିତ ହେଲା ଭଳି, ତନ୍ତ୍ର ଶାସ୍ତ୍ରର 'ସତୀ' ଦଶ ମହାବିଦ୍ୟାରେ ସୂଚିତ ହୋଇଅଛନ୍ତି ।

◆◆◆

ସମ୍ଭବତଃ ସେହି କାରଣରୁ ତନ୍ତ୍ରର ଚାରି ପୀଠରୁ ପ୍ରଥମ ଓ ପ୍ରଧାନ ପୀଠ ଓ ଜଗନ୍ନାଥ ଭୈରବ ଭାବରେ କଳ୍ପିତ ହେଲାବେଳକୁ ବିମଳା ତାଙ୍କ ଭୈରବୀ ଭାବରେ କଳ୍ପିତା ହୋଇଛନ୍ତି । ଶ୍ରୀମନ୍ଦିରରେ ଅନୁଷ୍ଠିତ ହେଉଥିବା ଦୈନିକ ନୀତି, ସେବା, ପର୍ବପର୍ବାଣି ସହିତ ବିମଳାଙ୍କ ସମ୍ପର୍କ ରହିଛି ।

ଶାରଦୀୟ ଦୁର୍ଗା ପୂଜାର ଶେଷରେ ଦଶହରା ପଡେ, ଯାହା କି ଦଶହରା ନାମରେ ପ୍ରଖ୍ୟାତ । ସମସ୍ତ ସୁଖ, ସମୃଦ୍ଧି ଓ ବିଜୟ ପାଇଁ ଏହି ଦିନ ପ୍ରକୃଷ୍ଟ ଶୁଭାରମ୍ଭ । ଏହି ଦିନ ରାବଣ ମାରଣ ଓ ସୀତା ତାରଣ ପାଇଁ ରାମଚନ୍ଦ୍ର ସେତୁ ବନ୍ଧ ନିର୍ମାଣର ଶୁଭ ଦେଇଥିଲେ । ମହାଷ୍ଟମୀ ଓ ମହାନବମୀରେ ପଡିଥିବାରୁ ସମସ୍ତ ଆସୁରିକ ଶକ୍ତି ନିପାତ ହୋଇ ଦଶମୀ ଦିନରୁ ସମସ୍ତ ଶୁଭକାର୍ଯ୍ୟ ଆରମ୍ଭ ହୁଏ ।

ଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଭଗବାନଙ୍କର କୌଣସି ଆକାର ବା ଲିଙ୍ଗ ନାହିଁ । ଯଦିବା ଦୁର୍ଗା ଭାବରେ ସେ ମାତା ରୂପରେ କଳ୍ପିତ କିମ୍ବା ବିଷ୍ଣୁ ବା ଶିବ ରୂପରେ ସେ ପିତା ବା ପୁରୁଷ ଭାବରେ ବର୍ଣ୍ଣିତ । ଅବଶ୍ୟ ସୃଷ୍ଟି କର୍ତ୍ତା ବା କର୍ତ୍ତ୍ରୀ ଭାବରେ ସେ ପରମ ପିତା ଓ ପରମ ମାତା ଭାବରେ ସମ୍ବୋଧିତା । ତେଣୁ ଆଜିର ଏ ଶାରଦୀୟ ପୂଜା ଅବକାଶରେ ମା' ଦୁର୍ଗାଙ୍କୁ ପ୍ରାର୍ଥନା କରି ସମସ୍ତଙ୍କ ମଙ୍ଗଳ କାମନା କରିବା ଉଚିତ୍ ।

ସା– ଅକରପଡା, ପୋ– ନଳୀପୁର,
ଥା– ମାହାଙ୍ଗା, ଭାୟା– ବାଲିଚନ୍ଦ୍ରପୁର,
ଜି– କଟକ– ୭୫୪୨୦୫

# ଦୁର୍ଗତି ନାଶିନୀ ଦୁର୍ଗା

**କାଞ୍ଚନ ମିଶ୍ର**

ଦୁର୍ଗତି ନାଶିନୀ ମାଆ ଦୁର୍ଗାଦେବୀ
ସରଗରୁ ଅବତରି
ଚତୁର୍ଦ୍ଦିନ ବ୍ୟାପି ମରତକୁ ଆସି
ଦିଅ ଆନନ୍ଦରେ ଭରି ।

ଶରତ ଋତୁର ଆଶ୍ୱିନ ମାସରେ
ଶାରଦୀୟ ଦୁର୍ଗାପୂଜା
ଦେଶବାସୀ ମନ ଆନନ୍ଦେ ମଗନ
ଚତୁର୍ଦ୍ଦିଗ ସାଜସଜ୍ଜା ।

ମହିଷାସୁରକୁ ବଧ କରିବାକୁ
ବହୁ ଦେବାଦେବୀ ଗଣ
ନିଜ ନିଜ ଅସ୍ତ୍ର ଶସ୍ତ୍ର ତୋତେ ମାତ
ଯୁଦ୍ଧପାଇଁ କଲେ ଦାନ ।

ପ୍ରଚଣ୍ଡ ପ୍ରତାପୀ ମହିଷାସୁରକୁ
ବିଜୟା ଦଶମୀ ଦିନ
ଶୂଳ ବିଦ୍ଧ କରି କରିଥିଲ ବଧ
ନେଇଥିଲ ତା'ର ପ୍ରାଣ ।



ମୂଷିକ ମୟୂର ପେଚକ ସାରସ
ବାହାନ ପୃଷ୍ଠରେ ଆସି
ଗଣେଶ କାର୍ତ୍ତିକ ଲକ୍ଷ୍ମୀ ସରସ୍ୱତୀ
ଚତୁଃପାର୍ଶ୍ୱେ ଛନ୍ତି ବସି ।

ଲଭିଅଛି ଖ୍ୟାତି ଆମରି ଐତିହ୍ୟ
ଦଶହରା ଦୁର୍ଗାପୂଜା
ଦିଶେ ଝଲମଲ ଆଲୋକର ଝୁଲ
ସୁନା ଚାନ୍ଦି ମେଢ ସଜ୍ଜା ।

ବରଷକେ ଥରେ କର ମହାମାୟୀ
ଧରାଧାମେ ଆଗମନ
ତୁମ ଆଶୀର୍ବାଦ ଶାନ୍ତିର ଆସ୍ୱାଦ
ଆନନ୍ଦରେ ବିତୁ ଦିନ ।

୧୦୧୧, ଜୟଦୁର୍ଗା ନଗର,
ବମିଖାଲ, ଭୁବନେଶ୍ୱର

# ମହାଶକ୍ତି ଅପରାଜିତା ଦୁର୍ଗା

ଡକ୍ଟର ତ୍ରିନାଥ ପଟ୍ଟନାୟକ



ଗିରିରାଜ ହିମାଳୟଙ୍କ ଅନୁରୋଧକ୍ରମେ ଶ୍ରୀଭଗବତୀ ଥରେ ନିଜର ବିରାଟ ସ୍ୱରୂପ ପ୍ରଦର୍ଶନ କରାଇଥିଲେ । ସେହି ଦୃଶ୍ୟ ଦେଖିବା ନିମନ୍ତେ ଭଗବାନ ଶ୍ରୀବିଷ୍ଣୁ ଓ ଅନ୍ୟାନ୍ୟ ଦେବଗଣ ମଧ୍ୟ ଉପସ୍ଥିତ ଥିଲେ ।

ଭକ୍ତଙ୍କ ଅଭିଷ୍ଟ ଦାୟିନୀ କଲ୍ୟାଣୀ
ସେ ସତୀ ଭଗବତୀ ଦେବୀ ସେହି କ୍ଷଣି ।
ଦେଖାଇଲେ ନିଜର ସେ ବିରାଟ ମୂର୍ତ୍ତି
ଏହିପରି ଦେଖିଲେ ତହିଁ ସୁରପତି ॥
ସକଳ ଲୋକ ଉର୍ଦ୍ଧ୍ୱସ୍ଥିତ ସତ୍ୟଲୋକ
ତାହାଙ୍କର ମସ୍ତକେ ଅଛଇ ବିବେକ ।

(ଦେବୀଭାଗବତ)

ଦେବୀଙ୍କର ବିରାଟ ରୂପର ମସ୍ତକ ସ୍ୱର୍ଗଲୋକ ଓ ନେତ୍ର ଦ୍ୱୟ ଚନ୍ଦ୍ର ତଥା ସୂର୍ଯ୍ୟ ଥିଲେ । ଦିଗମାନେ କାନ, ବେଦବାଣୀ ଓ ପବନ ପ୍ରାଣ ସ୍ୱରୂପ ଥିଲେ । ହୃଦୟ ବିଶ୍ୱ, ଜଙ୍ଘ ପୃଥିବୀ ଆଉ ବ୍ୟୋମମଣ୍ଡଳ ଦେବୀଙ୍କର ନାଭି ଥିଲା । ନକ୍ଷତ୍ର ବୃନ୍ଦ ବକ୍ଷସ୍ଥଳ ଥିଲେ । ମହର୍ଲୋକ କଣ୍ଠ ଓ ଜନଲୋକ ମୁଖ ଥିଲା । ଇନ୍ଦ୍ର ଆଦି ଦେବତା ସେହି ମାହେଶ୍ୱରୀଙ୍କର ବାହୁ, ଶବ୍ଦ ଶ୍ରବଣ ଥିଲା । ଅଶ୍ୱିନୀ କୁମାର ଦ୍ୱୟ ତାଙ୍କର ନାସିକା, ଗନ୍ଧ ଘାଣେନ୍ଦ୍ରିୟ । ମୁଖ ଅଗ୍ନି, ପଲକ ଦିବାରାତ୍ରି ଥିଲେ । ବ୍ରହ୍ମ ଧାମ ଭ୍ରୂବିଳାସ ଓ ଜଳ ତାଳୁଥିଲେ । ରସ ରସନା ତଥା ଯମ ଦାନ୍ତ ଥିଲେ । ସ୍ନେହ କଳା ଦାନ୍ତ–ସମୂହ ଓ ହାସ୍ୟ ଥିଲା ମାୟା । ସୃଷ୍ଟି ହିଁ କଟାକ୍ଷ ବିକ୍ଷେପ ଥିଲା ଓ ଲଜ୍ଜା ହିଁ ଓଠ ଥିଲା । ଲୋଭ ଅଧର ଓ ଧର୍ମ ପଥ ପୀଠି । ପ୍ରଜାପତି ସେହି ଦେବୀଙ୍କର ମେଢ଼ ଥିଲେ । ସମୁଦ୍ର ଉଦର, ପର୍ବତ ଅସ୍ଥି, ନଦୀ ନାଡ଼ି, ବୃକ୍ଷ ସମୂହ ଦେବୀଙ୍କର ଲୋମ ଥିଲେ । କୌମାର ଯୌବନ ଓ ଜରାବସ୍ଥା ଦେବୀଙ୍କର ଉତ୍ତମ ଗତିଥିଲେ । ମେଘ କେଶ ଓ ଦୁଇ ସଂଧ୍ୟା ଦେବୀଙ୍କର ବସ୍ତ୍ର ଥିଲା ।

ଚନ୍ଦ୍ରମା ଜଗଦମ୍ବାଙ୍କର ମନ । ବିଜ୍ଞାନ ଶକ୍ତି ବିଷ୍ଣୁ ଓ ଅନ୍ତଃକରଣ ରୁଦ୍ର ଥିଲେ । ଅଶ୍ୱ ପ୍ରଭୃତି ସେହି ବ୍ୟାପକ ପରମେଶ୍ୱରଙ୍କର ନିତମ୍ବ ଦେଶର ନିମ୍ନ ଭାଗରେ ସ୍ଥିତ ଥିଲେ । ଅତଳ ଆଦି ମହାଲୋକ ଦେବୀଙ୍କର କଟି ଓ ଅଧୋଭାଗ ଥିଲେ ।

ଦେବତାମାନେ ଦେବୀଙ୍କର ସେହି ମହାନ ରୂପକୁ ଦର୍ଶନ କଲେ ଯାହାକି ସହସ୍ର ଜ୍ୱାଳାମାଳାରେ ପରିପୂର୍ଣ୍ଣ ଥିଲା । ଦେବୀଙ୍କର ଲୋକ ଜିହ୍ୱା ନିଜ ବଦନକୁ ଚାଟୁ ଥିଲା । ଦେବୀଙ୍କର ଦାନ୍ତ ସମୂହ କଟକଟ ଶବ୍ଦ କରୁଥିଲେ । ନୟନ ଯୁଗଳରୁ ଅଗ୍ନି ବର୍ଷା ହେଉଥିଲା । ଦେବୀ ନାନା ଅସ୍ତ୍ର ଶସ୍ତ୍ର ଧାରଣ କରି ବୀର ବେଶରେ ଥିଲେ ।

ଦେବୀଙ୍କର ସହସ୍ର ମସ୍ତକ, ନେତ୍ର ତଥା ଚରଣ ଥିଲା କୋଟି କୋଟି ସୂର୍ଯ୍ୟ କୋଟି କୋଟି ବିଦ୍ୟୁତମାଳ ସମାନ ଦେବୀଙ୍କର ଦେଦୀପ୍ୟମାନ କାନ୍ତି ଥିଲା । ସେହି ମହା ଘୋର ଭୀଷଣ ରୂପ ହୃଦୟ ତଥା ନେତ୍ରକୁ ଆତଙ୍କ ସୃଷ୍ଟି କରୁଥିଲା ।

ଦେବୀଙ୍କର ସେହି ବିରାଟ ରୂପକୁ ଦେଖି ଦେବଗଣ ହା ହା କରି ଉଠିଲେ । ସେମାନଙ୍କ ହୃଦୟ କମ୍ପିବାକୁ ଲାଗିଲା । ସତେ ଯେମିତି ସେମାନେ ଚେତନା ହରାଇ ବସୁଛନ୍ତି । ସେମାନଙ୍କର ଏତିକି ସ୍ମରଣ ରହିଲା ନାହିଁ ଯେ ସେ ହେଉଛନ୍ତି ଜଗତ ଜନନୀ ଦେବୀ । ମହେଶ୍ୱରୀଙ୍କର ଚାରିପାର୍ଶ୍ୱରେ 'ବେଦ' ମୂର୍ତ୍ତିମାନ ହୋଇ ଠିଆ ହୋଇଗଲେ । ପ୍ରଥମେ ଦେବଗଣ ମୂର୍ଚ୍ଛାଗଲେ । ପରେ ସମ୍ବିତ ଫେରିପାଇ ନେତ୍ରରେ ପ୍ରେମାଶ୍ରୁ ଭରି ଗଦ୍‌ଗଦ୍ କଣ୍ଠରେ ଦେବୀଙ୍କର ସ୍ତୁତି କରିବାକୁ ଲାଗିଲେ । ସ୍ତୁତି ସମାପ୍ତ ପରେ ଦେବଗଣ ଭୟଭୀତ ହୋଇଥିବା ଜାଣି ଦେବୀ ପରମ ସୁନ୍ଦର ରୂପ ଧାରଣ କରି ଦେବଗଣଙ୍କୁ ସାନ୍ତ୍ୱନା ଦେଲେ ।

ସୁରଙ୍କର ଭୟଦେଖି କୃପାର୍ଣ୍ଣବ ରୂପା
ଜଗତମାତା ସତୀ ଯେ ସର୍ବସ୍ୱରୂପା ।
ଭୟଙ୍କର ବିରାଟ ରୂପ ସଂହାରିଲେ
ପୂର୍ବର ସ୍ୱ ସୁନ୍ଦର ମୂର୍ତ୍ତି ଦର୍ଶାଇଲେ ।
ସକଳ ଅବୟବ କୋମଳ ଦିଶିଲା
ତ୍ରିନୟନେ କରୁଣା ରସ ପୂର୍ଣ୍ଣ ହେଲା ।

(ଦେବୀ ଭଗବତ)

ସେହି ସୌମ୍ୟ ରୂପ ଧାରିଣୀ ମହାମାୟାଙ୍କ ନାମ ଦୁର୍ଗା । ସେହିଁ ଅପରାଜିତା । ସେ କଠିନତାକୁ ଜାଣିପାରନ୍ତି କେବେହେଲେ ପରାଭୂତ ହୁଅନ୍ତି ନାହିଁ । ଏଣୁ ସେ ପ୍ରତିଜ୍ଞା କରି କହିଛନ୍ତି–

ଯୋ ମାଂ ଜୟତି ସଂଗ୍ରାମେ, ଯୋ ମେ ଦର୍ପ ବ୍ୟପୋହତି
ଯୋ ମେ ପ୍ରତିବଳୋ ଲୋକେ, ସ ମେ ଭର୍ତ୍ତା ଭବିଷ୍ୟତି ।

'ଯିଏ ମୋତେ ସଂଗ୍ରାମରେ ଜୟ କରିବ, ମୋର ଦର୍ପକୁ ଦୂର କରିବ କିମ୍ବା ମୋ ସମକକ୍ଷ ଯୋଦ୍ଧା ହେବ ତେବେ ସେ ମୋର ସ୍ୱାମୀ ହେବ ।'– ଏକଥା ପ୍ରାଚୀନ ଓ ପ୍ରତିଜ୍ଞା ମଧ୍ୟ ପୁରୁଣା ମାତ୍ର କେତେ ପୁରୁଣା କିଏ କହିପାରିବ । ''ଶ୍ରୂୟତାମନ୍ତ୍ର– ବୁଦ୍ଧିତ୍ୱାତ୍ ପ୍ରତିଜ୍ଞା ଯା କୃତା ପୁରା ।''

ଋଷି କହିଛନ୍ତି– ଶୁମ୍ଭ ନିଶୁମ୍ଭଙ୍କ ଦୂତଙ୍କ କଥା ଶୁଣି ମନକୁମନ ହସି ତା'ପରେ ଗମ୍ଭୀର ହୋଇଗଲେ । ତା'ପରେ ଉପର ଲିଖିତ ବାକ୍ୟ କହିଥିଲେ । ହସ ମଧ୍ୟ ଗମ୍ଭୀର ଭାବରେ ଲୁଚି ରହିଛି । ପ୍ରତିଜ୍ଞା ସ୍ୱାଭାବିକ । ପ୍ରେରଣା ବଶତଃ ଭାବିଚିନ୍ତି ହୋଇନାହିଁ । ଯେତେବେଳେ ସ୍ଥିତପ୍ରଜ୍ଞ ଅବସ୍ଥା ଆସିଛି । ସେହି ଭାବକୁ ନେଇ ଦେବୀ ଉପସ୍ଥିତ ହେଲେ । ପରଂବ୍ରହ୍ମଙ୍କ ଆଦ୍ୟା ପ୍ରକୃତି ସ୍ୱଭାବରେ ଅଜୟା ହୋଇଗଲେ । ପରଂବ୍ରହ୍ମଙ୍କୁ ଯିଏ ମହାମାୟା ରୂପ ଦ୍ୱାରା ଅଭିଭୂତ କରି ରଖିଲା ସେ କ'ଣ ଭାବିଚିନ୍ତି ଏ ପ୍ରତିଜ୍ଞା ନେଇଥିଲା ? ସେ ପ୍ରତ୍ୟେକ ସ୍ୱରରେ, ନିଜର ପ୍ରତ୍ୟେକ ଭାବରେ ସେ ହେଉଛନ୍ତି ଅଜୟା– ଅପରାଜିତା । ଆଦ୍ୟାମୂଳାଧାର ଶକ୍ତି ରୂପରେ ଦେଖ ବା ଭୌତିକ ଜଗତକୁ ପରିଚାଳିତ କରୁଥିବା ପ୍ରକୃତି ରୂପରେ ଦେଖ ସେ ଅଜୟା, ଅପରାଜିତା ଅଟନ୍ତି ।

ଶୁମ୍ଭ ନିଶୁମ୍ଭ ଦୂତଙ୍କ ମୁଖରୁ ଏ ପ୍ରତିଜ୍ଞା ଶୁଣି ଦେବୀଙ୍କୁ ବଶୀଭୂତ କରିବା ନିମନ୍ତେ ନିଜର ସମସ୍ତ ଆସୁରୀ ଶକ୍ତିକୁ ମହିଷାସୁର ନିୟୋଜିତ କରିଦେଲେ । ମାତ୍ର ସେମାନେ ହିଁ ବିନାଶ ହେଲେ । ଯୁଗ ଯୁଗାନ୍ତରେ ଏ ସୃଷ୍ଟି ଭିତରେ ଏପରି ଆସୁରୀ ଭାବାପନ୍ନ ପ୍ରାଣୀ ଅଛନ୍ତି, ଯେଉଁମାନେ ବିଶ୍ୱଜନନୀ ପରମ ପ୍ରକୃତିକୁ ନିଜର ଅଧୀନ କରିବା ନିମନ୍ତେ ହଠ କରନ୍ତି କିନ୍ତୁ ସବୁବେଳେ ଅସଫଳ ହୋଇଥାନ୍ତି ।

ମାନବ ଆଜି ଦୁଃଖୀ କାହିଁକି ନା ସେ ଅହଂକାର ବଶତଃ ପ୍ରକୃତିକୁ ନିଜର ଜନନୀ ବୋଲି ନଭାବି ନିଜ କୌଶଳରେ ପ୍ରକୃତିକୁ ଦାସୀ କରିବା ପାଇଁ ଚାହୁଁଛି । ପ୍ରକୃତି ଉପରେ ବିଜୟ ପାଇବାକୁ ଆକାଂକ୍ଷା ଓ ଦମ୍ଭ ମନୁଷ୍ୟକୁ ଅନର୍ଥ ଆଡକୁ ନେଇଯାଉଛି । ରୋଗ, ଶୋକ, ମନସ୍ତାପ, ସଂଘର୍ଷ ଶେଷରେ ନିଜ ହାତରେ ନିଜକୁ ନିଶେଷ କରୁଛି । ଭୋଗ୍ୟ ଭାଗ୍ୟ ହୋଇଯାଉଛି । ଏସବୁ ଆସୁରୀ ଅହଂକାର ବୃତ୍ତି ଯୋଗୁଁ ହିଁ ହେଉଛି ।

ପ୍ରକୃତି ବିଶ୍ୱଜନନୀ ଅଟେ । ଏଣୁ ସେ ବ୍ୟକ୍ତିର ଜନନୀ ଓ ପାଳିକା ମଧ୍ୟ । ପ୍ରକୃତି କୋଳରେ ମନୁଷ୍ୟ ଜନ୍ମ ନେଇଛି ସେହି କୋଳରେ ଯୌବନ ଓ ପ୍ରୌଢତ୍ୱ ଅତିବାହିତ ହେଉଛି, ଶେଷରେ ତାରି କୋଳରେ ଶେଷ ନିଦ୍ରାଯାଇ ଚିର ଶାନ୍ତି ମିଳିଥାଏ । ଏହା ବୀତୀତ ମନୁଷ୍ୟକୁ ଠିଆ ହେବା ପାଇଁ ସୁଦ୍ଧା କେଉଁଠାରେ ସ୍ଥାନ ନାହିଁ । ଏଣୁ ଗୀତାରେ ଭଗବାନ କହିଛନ୍ତି– ''ପ୍ରକୃତି ଯାନ୍ତି ଭୂତାନି, ନିଗ୍ରହଂ କିଂ କରିଷ୍ୟତି ?''

ଭୂତମାତ୍ରେହିଁ ପ୍ରକୃତି ପଛରେ ପଛରେ ଅନୁଧାବନ କରିଥାନ୍ତି, ନିଗ୍ରହ କ'ଣ କରିପାରିବ ? ତାହାଙ୍କୁ ଅନୁଗମନ କର ଓ ତା'ର ଉଚ୍ଚରୁ ଉଚ୍ଚତର ଭାବସ୍ତର ଉପରକୁ ଉଠ କାହିଁକି ନା

ସେ ତ ମା, ତେଣୁ ନିଜ ସନ୍ତାନର ଉତ୍‌ଥାନରେ ସେ ଆନନ୍ଦ ଅନୁଭବ କରେ ।

ବ୍ୟକ୍ତିଗତ ଦେହରେ, ବିରାଟ ଭୌତିକ ଜଗତରେ, ଅନ୍ତସ୍ଥଳରେ ଅଥବା ବିରାଟତ୍ୱ ମଧ୍ୟରେ ସମଗ୍ର ଜଗତକୁ ସେହି ଅପରାଜିତା ଦୁର୍ଗା ଶାସନ କରିଥାନ୍ତି । ଭୌତିକ ବିଜ୍ଞାନ ଅଥବା ପାରମାର୍ଥିକ ଜ୍ଞାନ– ଦୁଇଟି ଯାକ କ୍ଷେତ୍ରରେ କେବଳ ତା'ର ଭାବକୁ ମନ ଓ ଅନୁସରଣ କରାଯାଇଥାଏ । କାହିଁକିନା ନିୟମକୁ ଓଲଟାଇବାର ଶକ୍ତି ବା ହସ୍ତକ୍ଷେପ କରିବାର ତାକତ କାହାରି ପାଖରେ ନାହିଁ । ସେହି ଦେବୀ ହିଁ ସର୍ବ ଶକ୍ତିର ମୂଳ ସ୍ରୋତ ଅଟନ୍ତି ।

ଅପରାଜିତାଙ୍କ ଧ୍ୟାନ

ନୀଳୋତ୍ପଳନିଭାଂ ଦେବୀଂ ନିଦ୍ରାମୁଦିତଲୋଚନାମ୍
ନୀଳକୁଞ୍ଚିତକେଶାଭ୍ୟାଂ ନିମ୍ନନାଭୀବଳିତ୍ରୟାମ୍ ।
ବରାଭୟକରାମ୍ଭୋଜାଂ ପ୍ରଣତାର୍ତ୍ତି ବିନାଶିନୀମ୍
ପୀତାମ୍ବର ବରୋପେତାଂ ଭୂଷଣସ୍ରଗ୍ୱିଭୂଷିତାମ୍ ।
ବରାଶକ୍ତ୍ୟାକୃତିଂ ସୌମ୍ୟା ପରସୈନ୍ୟ ପ୍ରଭାଞ୍ଜନୀମ୍
ଶଙ୍ଖଚକ୍ରଗଦାଭୀତିରମ୍ୟହସ୍ତାଂ ତ୍ରିଲୋଚନାମ୍ ।
ସର୍ବକାମପ୍ରଦାଂ ଦେବୀଂ ଧ୍ୟାୟେତ୍ ତାମପରାଜିତାମ୍ ॥

ଯାହାଙ୍କର କାନ୍ତି ନୀଳକମଳ ସଦୃଶ, ଯାହାଙ୍କର ନେତ୍ର ସର୍ବଦା ଅର୍ଦ୍ଧ ନିମେଳିତ । ଯାହାଙ୍କର କୁନ୍ତଳର ଅଗ୍ରଭାଗ ନୀଳରଙ୍ଗ ଓ ତରଙ୍ଗାୟିତ । ଯାହାଙ୍କର ନାଭି ଗଭୀର ଓ ତ୍ରିବଳୀଯୁକ୍ତ । ଯାହାଙ୍କର କରକମଳ ବର ଓ ଅଭୟ ମୁଦ୍ରା ଧାରଣ କରିଥାଏ । ଶରଣାଗତ ପୀଡାକୁ ନଷ୍ଟ କରି ପାରୁଥାନ୍ତି । ଉତ୍ତମ ପୀତାମ୍ବର ଧାରଣ କରିଥାନ୍ତି, ଆଭୂଷଣ ଓ ମାଳାରେ ବିଭୂଷିତା ଅଟନ୍ତି । ଯାହାଙ୍କ ଆକୃତି ଶ୍ରେଷ୍ଠ ଶକ୍ତିଯୁକ୍ତ ଓ ସୌମ୍ୟ । ଯିଏ ଶତ୍ରୁ ସୌନ୍ୟମାନଙ୍କୁ ସଂହାର କରିବାରେ ସମର୍ଥ । ଯାହାଙ୍କ ହାତରେ ଶଙ୍ଖ ଚକ୍ର ଗଦା ଓ ଅଭୟ ମୁଦ୍ରାରେ ସୁଶୋଭିତ । ଯାହାଙ୍କର ତିନିଗୋଟି ନେତ୍ର । ଯିଏ ସମସ୍ତ କାମନା ପୂର୍ତ୍ତି କରିପାରନ୍ତି, ସେହି ଅପରାଜିତା ଶକ୍ତିକୁ ଧ୍ୟାନ କରୁଅଛି ।

ଆଲୋକ ନଗର, ନିଆଳୀ
ଜି– କଟକ

# ନିତି ମୁଁ ପ୍ରଣତି ଢାଳେ

**ଅନନ୍ତ ଗୋପାଳ ପଣ୍ଡା**



ମାଆ ତୋ ଚରଣ ତଳେ
ନିତି ମୁଁ ପ୍ରଣତି ଢାଳେ
ଦୁଃଖେ ସୁଖେ ମାଗୋ ଦୟା
କରିଥିବୁ ଅବହେଳେ
ଯୁଗେ ଯୁଗେ ଅବତରି
ଖଣ୍ଡା ଓ ଖର୍ପର ଧରି
ଦାନବେ ଅଛୁ ସଂହାରି
କଳେ ବଳେ କଉଶଳେ
ଲଭିତୋ କରୁଣା ବାରି
ପଙ୍ଗୁ ହେଲେ ଲଘେଂ ଗିରି
ପଣ୍ଡିତ ନୁହଁଇ ସରି
ମୂକ ତୋ କୃପା ଲଭିଲେ



ତୋ ସନ୍ତାନ ଗଣେ ମାଆ
କାଳେ କାଳେ ହୁଅ ସାହା
ଅଭୟ ଦେଇ ଅଭୟା
ରଖ ତୋ ପଣତ ତଳେ
ସୁର ନର ଯେ ଗୁହାରି
କରନ୍ତି ପାଦେ ତୋହରି
ମୋ ଉପରେ କୃପାକରି
ଥିବୁ ଜୀବ ଯିବା ବେଳେ ।

ସିଣ୍ଡିକେଟ୍ ବ୍ୟାଙ୍କ
ଖୋର୍ଦ୍ଧା ଶାଖା, ଖୋର୍ଦ୍ଧା

# ତାଳଚେରର ମାଆ ହିଙ୍ଗୁଳା

ଶ୍ରୀନିବାସ ଆଚାର୍ଯ୍ୟ

ବହୁ ଆବହମାନ କାଳରୁ ଓଡ଼ିଶାର ଶକ୍ତି ତଥା ଦେବୀଙ୍କ ନାମ ସହିତ ସେହି ସ୍ଥାନର ନାମ ଇତିହାସର ପୃଷ୍ଠାରେ ଲିପିବଦ୍ଧ ହୋଇଅଛି । ଓଡ଼ିଶାର ଜନମାନସପଟରେ ଏହା ସ୍ୱତଃସ୍ଫୂର୍ତ୍ତ ସ୍ମରଣୀୟ ହୋଇଥାଏ । ଶକ୍ତିଙ୍କ ନାମ ସହିତ ପୀଠ(ସ୍ଥାନ)ର ନାମ ଅଙ୍ଗାଙ୍ଗୀ ରୂପେ ଜଡିତ । ତେଣୁ ମାଆ ଦେବୀଙ୍କ ମହିମା ଓ ଗୁଣଗାରିମାର ଯେପରି ପଟାନ୍ତର ନାହିଁ, ଠିକ୍ ସେପରି ସେହି ସ୍ଥାନର ମାଟି, ପାଣି, ପବନ ତଥା ପରିବେଶର ପବିତ୍ରତାର ମଧ୍ୟ ପଟାନ୍ତର ନାହିଁ । ସାଧାରଣତଃ କହିଲା ବେଳେ ଦେବୀଙ୍କ ନାମ ସହିତ ସେହି ସ୍ଥାନର ନାମ ଉଚ୍ଚାରଣ ହୋଇଥାଏ । ସେହିପରି ହିଙ୍ଗୁଳାପୀଠ ନକହି, ତାଳଚେରର ମାଆ ହିଙ୍ଗୁଳା ବୋଲି କହିଥାଉ । କେବଳ ସର୍ବଶକ୍ତିମୟୀ ମା' ହିଙ୍ଗୁଳାଙ୍କ ପାଇଁ ତାଳଚେରର ନାମ ବିଖ୍ୟାତ ।

ଆମ ରାଜ୍ୟ ଓଡ଼ିଶାର ଅବିଭକ୍ତ ଢେଙ୍କାନାଳ ଜିଲ୍ଲା ତଥା ବର୍ତ୍ତମାନ ଅନୁଗୁଳ ଜିଲ୍ଲାର ତାଳଚେର ଗୋଟିଏ ବିଭବଶାଳୀ ଅଞ୍ଚଳ । ପାହାଡପର୍ବତ ଘେରା ପ୍ରାକୃତିକ ସମ୍ପଦରେ ତାଳଚେର ପରିପୂର୍ଣ୍ଣ । ଏହାର କଳା, ସାହିତ୍ୟ, ଧର୍ମ, ସଙ୍ଗୀତ, କୃଷି, ଶିଳ୍ପ, ଖଣି ଓ ବାଣିଜ୍ୟ ଇତ୍ୟାଦି ବିଭବରେ ବିମୋହିତ । ସର୍ବୋପରି ଏଠାରେ ମୁଣ୍ଡଟେକିଥିବା ଅର୍ଥକରୀ ଜାତୀୟ ବିଦ୍ୟୁତ ଉତ୍ପାଦନକାରୀ କେନ୍ଦ୍ର (ଏନ୍‌ଟିପିସି), କୋଇଲା ଖଣି ତାଳଚେରବାସୀଙ୍କର ଆର୍ଥିକ ମାନଦଣ୍ଡକୁ ସ୍ୱଚ୍ଛଳ କରିବା ସଙ୍ଗେ ସଙ୍ଗେ ସମଗ୍ର ଭାରତବର୍ଷରେ ତାର ମାନ ସମ୍ମାନ ବଜାୟ ରଖିପାରିଛି ।

ତତ୍କାଳୀନ ରାଜ୍ୟ ସୃଷ୍ଟି ସମ୍ପର୍କରେ 'ଦୈବଉତ୍ପତ୍ତି' ତତ୍ତ୍ୱ ହେଉଛି ସବୁଠାରୁ ମହାନ ଓ ପ୍ରାଚୀନ ତତ୍ତ୍ୱ । ବିଭିନ୍ନ ସମୟରେ ରାଜା, ମହାରାଜା, ସମ୍ରାଟମାନଙ୍କର ମନମୁଖୀ ଓ ଏକଛତ୍ରବାଦ ଶାସନ ଦ୍ୱାରା ଉତ୍କଳ ଜନନୀ ଶ୍ରୀହୀନ, ଛିନ୍ନମସ୍ତା, ଶୀର୍ଣ୍ଣ କଳେବର ହୋଇଯାଇଥିଲା । ଏଥିରୁ ବାଦ ପଡିନଥିଲା ତାଳଚେର । ୧୫୬୮ ମସିହାରେ ଉତ୍କଳର ହିନ୍ଦୁ ନରପତି ମୁକୁନ୍ଦଦେବଙ୍କ ପରାସ୍ତ ଆଣିଦେଇଥିଲା ତାଳଚେର ରାଜ୍ୟ ପାଇଁ ଅସ୍ତଗାମୀ ରବି ପରି ଅନ୍ଧାର ରାଜୁତି । ତତ୍‌ପରେ ତାଳଚେର ସମେତ ଓଡ଼ିଶାରେ ମରହଟ୍ଟା, ଶିଖ୍ ଓ ମୋଗଲ ବଂଶୀୟ ରାଜାମାନେ ଶାସନ କରି ଅପୂରଣୀୟ କ୍ଷତି ଘଟାଇଥିଲେ । ଫଳରେ ତାଳଚେର ରାଜ୍ୟର ଆର୍ଥିକ, ଭୌଗୋଳିକ, ସାମାଜିକ ଓ ସାଂସ୍କୃତିକ ମାନଦଣ୍ଡ ଦୁର୍ବଳ ହୋଇଥିଲା । ୧୮୦୩ ମସିହାରେ ଇଂରେଜ ସରକାର ଓଡ଼ିଶା ଶାସନଗାଦି ଦଖଲ କରି ଅମାନୁଷିକ ଓ ବର୍ବରୋଚିତ ଶାସନ କରିବାକୁ ପଛାଉ ନଥିଲେ । ଓଡ଼ିଶାରେ ୨୬ଟି ଗଡଜାତରୁ ତାଳଚେର ଏକ ଗଡଜାତ ଥିଲା । ବହୁ ବାଧା ବିଘ୍ନ, ଘାତ ପ୍ରତିଘାତ ଭ୍ରୂକ୍ଷେପ ନକରି ଭାରତ ସ୍ୱାଧୀନ ହୋଇଥିଲେ ମଧ୍ୟ ତାଳଚେର ଗଡଜାତ ଓଡ଼ିଶା ସହିତ ମିଶ୍ରଣ ହୋଇଥିଲା । କାରଣ ସେହି ସମୟରେ ସେଠାକାର ଜଳବାୟୁ, ପରିବେଶ, ପାଣି, ପବନ ସହିତ ତାଳଚେର ନାମର ଅଛି ନୀବିଡ ସମ୍ପର୍କ । ପ୍ରକାଶଥାଉକି ଅତୀତରେ ଶବର ରାଜାମାନେ ତାଳଚେର ରାଜ୍ୟକୁ ଶାସନ କରୁଥିଲା ସମୟରେ ତାଳଗଛଗୁଡିକ ଘଞ୍ଚ ଜଙ୍ଗଲ ସୃଷ୍ଟି କରିଥିଲା । ରାଜପୁତ ରାଜା ନଳରାଜାଙ୍କୁ ବିତାଡିତ କରି ତାଳଚେର ରାଜ୍ୟକୁ ଶାସନ କରିବା ଅବସରରେ ସାମ୍ରାଜ୍ୟ ବିସ୍ତାର କରିବା ପାଇଁ ସେହି ତାଳ ଜଙ୍ଗଲକୁ ତାଡି ପକାଇଥିଲେ । ତେଣୁ ତାଳଗଛର ଚେରରୁ ସେହି ସ୍ଥାନର ନାମ ତାଳଚେର ହୋଇଅଛି । କେହି କେହି କହନ୍ତି ରାଜା ପଦ୍ମନାଭ ହରିଚନ୍ଦନ ତାଳଚେର ରାଜ୍ୟକୁ ଶାସନ କରିବା ପୂର୍ବରୁ ତାଳେଶ୍ୱରୀ ନାମକ ଏକ ଠାକୁରାଣୀଙ୍କର ଆଶୀର୍ବାଦ ଲାଭ କରିଥିଲେ । ତେଣୁ ତାଙ୍କ ଶାସନର ଭିତ୍ତି ସ୍ଥାପନ ସମୟରେ ତାଳେଶ୍ୱରୀ ନାମାନୁଯାଇ ଏହାର ନାମ ତାଳଚେର ହୋଇଥିଲା । ଆଜି ପର୍ଯ୍ୟନ୍ତ ସେହି ନାମ ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଅଛି । ମାଆ ହିଙ୍ଗୁଳା କହିଲା ମାତ୍ରେ ଓଡ଼ିଶାର

ତାଳଚେରକୁ ବୁଝାଏ । ତେଣୁ ତାଳଚେରବାସୀ ମା' ହିଙ୍ଗୁଳାଙ୍କ ପାଇଁ ସୁପରିଚିତ ହୋଇପାରିଛନ୍ତି ।

ତାଳଚେରର ମା' ଦେବୀ ହିଙ୍ଗୁଳା ହେଉଛନ୍ତି ନିଖିଳ ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ପ୍ରଳୟର ମୂଳ ଉତ୍ସ । ଏହି ଶକ୍ତି କେବେ ଓ କିପରି ଆବିର୍ଭାବ ହୋଇଥିଲେ, ତାହା ସଠିକ୍ ଜଣାନଥିଲେ ମଧ୍ୟ ଇତିହାସ, ପୁରାଣ ଶାସ୍ତ୍ର ଓ ବେଦ ବେଦାନ୍ତଗୁଡିକରେ ଭିନ୍ନ ଭିନ୍ନ ମତପୋଷଣ ହୋଇଅଛି । ଏହି ପବିତ୍ର ଧରାପୃଷ୍ଠରେ ଦେବାଦେବୀମାନଙ୍କର ଆବିର୍ଭାବ ଓ ଲୀଳା ଅତି ବିଚିତ୍ରମୟ । ଜୀବଜଗତକୁ କ୍ରୀୟାଶୀଳ କରାଇବାରେ ମୂଳଉତ୍ସ ହେଉଛି ଆଧ୍ୟାତ୍ମିକ ଶକ୍ତି । ବିଭିନ୍ନ ଧର୍ମ ଯଥା ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ଜୈନ, ବୌଦ୍ଧ ଇତ୍ୟାଦିର ମହିମା ଓ ରୀତିନୀତିର ସମନ୍ୱୟ ଘଟିଛି ଏହି ପବିତ୍ର ଭୂମିରେ । ଏହିସବୁ ଧର୍ମ ମଧ୍ୟରେ ଶୀର୍ଷସ୍ଥାନ ମଣ୍ଡନ କରିଛି ହିନ୍ଦୁ ତଥା ସନାତନ ଧର୍ମ । ବହୁ ଆବହମାନକାଳରୁ ଏହି ପବିତ୍ର ଓଡ଼ିଶାମାଟିରେ ହିନ୍ଦୁଧର୍ମରେ ବିଭିନ୍ନ ରୂପରେ ଦେବାଦେବୀମାନେ ପୂଜାପାଇ ଆସୁଛନ୍ତି । ପର୍ବପର୍ବାଣି, ମେଳା ମହୋତ୍ସବରୁ ଜଣାଯାଏ ଓଡ଼ିଶାବାସୀ ବହୁଳ ପରିମାଣରେ ଶୈବ, ବୈଷ୍ଣବ, ଶାକ୍ତ, ସୌର ଓ ଗାଣପତ୍ୟ ଧର୍ମର ପରମ ଉପାସକ । ଏହି ପଞ୍ଚୋପାସନା ମଧ୍ୟରେ ଶକ୍ତି ବା ଶାକ୍ତ ଧର୍ମର ଉପାସନା ସର୍ବାଗ୍ରେ ସ୍ଥାନ ପାଇଅଛି । ଏହି ଶାକ୍ତ ଧର୍ମର ବୈଶିଷ୍ଟ୍ୟ, ମହିମା ଓ ଗୁଣଗାରିମା ପରମ ଭକ୍ତମାନଙ୍କୁ ଆକର୍ଷିତ କରାଇବା ସଙ୍ଗେ ସଙ୍ଗେ ସୃଷ୍ଟି କରିପାରିଛି ସେମାନଙ୍କ ହୃଦୟରେ ଗଭୀର ଆତ୍ମବିଶ୍ୱାସ ।

ଓଡ଼ିଶାରେ ଶକ୍ତି ଉପାସନା ଅତି ପ୍ରାଚୀନ । ଏହି ଶକ୍ତିମାନଙ୍କ ମଧ୍ୟରେ ତାଳଚେରର ମାଆ ହିଙ୍ଗୁଳା ଅନ୍ୟତମ । ଶିବ ପୁରାଣରେ ବର୍ଣ୍ଣିତ ନୀଳକଣ୍ଠ ଧାରଣକାରୀ ପ୍ରଭୁ ଶିବଙ୍କ ସ୍ତ୍ରୀ ସତୀ ଦକ୍ଷଯଜ୍ଞରେ ଅପମାନିତ ହୋଇ ଯଜ୍ଞକୁଣ୍ଡରେ ଝାସ ଦେଇଥିଲେ । ସ୍ୱାମୀ ମହେଶ୍ୱର ମୃତା ସ୍ତ୍ରୀଙ୍କର ଶରୀରକୁ ଧରି ସାରା ବ୍ରହ୍ମାଣ୍ଡ ପରିଭ୍ରମଣ କରିବା ଅବସରରେ ତାଣ୍ଡବଲୀଳା କରିଥିଲେ । ଫଳରେ ତ୍ରିଭୁବନ ପ୍ରକମ୍ପିତ ହେବା ସଙ୍ଗେ ସଙ୍ଗେ ଦେବତାମାନଙ୍କ ଆସନ ଟଳମଳ ହେଲା । ଏଥିରୁ ନିବୃତ ହେବା ପାଇଁ ପରଂବ୍ରହ୍ମ ସ୍ୱୟଂ ବିଷ୍ଣୁ ଛଦ୍ମବେଶରେ ତାଙ୍କ ସୁଦର୍ଶନ ଚକ୍ର ମାଧ୍ୟମରେ ମୃତା ସତୀଙ୍କର ଶରୀରକୁ ଖଣ୍ଡ ଖଣ୍ଡ କରି କାଟି ପକାଇଥିଲେ । ସେହି କଟାଖଣ୍ଡରୁ ଭାରତରେ ୫୧ଟି ଓ ଓଡ଼ିଶାରେ ୮ଟି ଖଣ୍ଡ ପଡିଥିଲା । ଯେଉଁ ସବୁ ସ୍ଥାନରେ ଏହି ୮ଟି ଖଣ୍ଡ ନିକ୍ଷେପ ହୋଇଥିଲା, ସେହିସବୁ ସ୍ଥାନଗୁଡିକ ଆଜି ମାଆ ଶକ୍ତିପୀଠ ରୂପେ ବିଦ୍ୟମାନ । ସେହି ପୀଠଗୁଡିକ ହେଲା କାକଟପୁରର ମା' ମଙ୍ଗଳା, ପୁରୀର ମା' ବିମଳା, ଝଙ୍କଡର ମା' ଶାରଳା, ଯାଜପୁରର ମା' ବିରଜା, ବାଣପୁରର ମା' ଭଗବତୀ, ବାଙ୍କିର ମା' ଚର୍ଚ୍ଚିକା, ସମ୍ବଲପୁରର ମା' ସମଲେଇ ଓ ତାଳଚେରର ମା' ହିଙ୍ଗୁଳା । କେଉଁଠି ମା' ପରମ ବୈଷ୍ଣବୀ ତ କେଉଁଠି କାତାୟନୀ, କେଉଁଠି ଅଷ୍ଟଭୁଜା ତ କେଉଁଠି ତ୍ରିଭୁଜା, କେଉଁଠି ତ୍ରିପୁରା ସୁନ୍ଦରୀ ତ କେଉଁଠି ନରମୁଣ୍ଡା ମାଳିନୀ ଓ ଶବରୂଢା । ଏହି ବିଭିନ୍ନତା ହିଁ ଓଡ଼ିଶାର ସମୃଦ୍ଧ ଶାକ୍ତ ପରମ୍ପରାର ବିଶେଷତ୍ୱ । ମୃତା ସତୀଙ୍କ ବ୍ରହ୍ମରନ୍ଧ୍ର ଖଣ୍ଡଟି ତାଳଚେରର ଗୋପାଳପ୍ରସାଦ ଗ୍ରାମଠାରେ ନିପତିତ ହୋଇ ମା' ହିଙ୍ଗୁଳା ରୂପେ ବିରାଜିତ ହୋଇଛନ୍ତି ।

ଅଗ୍ନିସ୍ୱରୂପା ମାଆ ହିଙ୍ଗୁଳାଙ୍କ ଆବିର୍ଭାବର ଅନ୍ୟ କିମ୍ବଦନ୍ତୀ ପୁରାଣରେ ପ୍ରସିଦ୍ଧି ଲାଭ କରିଅଛି । ବେଲୁଚିସ୍ଥାନସ୍ଥିତ ହିଙ୍ଗୁଳାଙ୍କ ପର୍ବତଶ୍ରେଣୀରେ ହିଙ୍ଗୁଳା ପୀଠ ବିଦ୍ୟମାନ । ପୁରୀ ଗଜପତି ମହାରାଜାଙ୍କ ନିମନ୍ତ୍ରଣକ୍ରମେ ତାଳଚେରର ଶବର ରାଜା ବେଲୁଚିସ୍ଥାନରୁ ପୁରୀକୁ ମାଆ ହିଙ୍ଗୁଳାଙ୍କୁ ଆଣିବା ଅବସରରେ ତାଳଚେରର ଗୋପାଳ ପ୍ରସାଦଠାରେ ସଂନ୍ଧ୍ୟା ହୋଇଯାଇଥିଲା । ସେଠାରେ ଶବର ରାଜା ଶିବିର ପକାଇ ରାତ୍ରିଯାପନ କରିଥିଲେ । ସେହି ସ୍ଥାନର ନୈସର୍ଗିକ ଶୋଭାରେ ମୁଗ୍ଧ ହୋଇ ମା' ଦେବୀ ସେଠାରେ ରହିବା ପାଇଁ ସ୍ୱପ୍ନାଦେଶ ମାଧ୍ୟମରେ ରାଜାଙ୍କୁ ଜଣାଇଥିଲେ । ରାଜା ସେଠାରେ ଦେବୀଙ୍କ ମନ୍ଦିର ନିର୍ମାଣ କରି ପୂଜା ଅର୍ଚ୍ଚନାର ସମସ୍ତ ବିଧିବିଧାନ ଖଞ୍ଜିଥିଲେ ।

ଅନ୍ୟ ଏକ ମତାନୁବାଦ ଅନୁସାରେ ରାଜା ପଦ୍ମନାଭ ହରିଚନ୍ଦନ ତାଳଚେରର ଗୋପାଳପ୍ରସାଦଠାରେ ଦେବୀଙ୍କ ମନ୍ଦିର ନିର୍ମାଣ କରିଥିଲେ । ଅତୀତରେ ପ୍ରାୟ ଶହ ଶହ ବର୍ଷ ତଳେ ଗଡଜାତ ଶାସନ ସମୟରେ ନଳରାଜାଙ୍କର ହିଙ୍ଗୁଳାଦେବୀ ଥିଲେ ଇଷ୍ଟଦେବୀ ଓ ଏହି ବଂଶ ହେଉଛନ୍ତି ହିଙ୍ଗୁଳା ଦେବୀଙ୍କର ଆଦ୍ୟ ପ୍ରତିଷ୍ଠାତା । ମାଆ ହିଙ୍ଗୁଳା ତାଳଚେର ଆସିବା ଏକ ଅଲୌକିକ ଘଟଣା । ଶ୍ରୀ ପଦ୍ମନାଭ ହରିଚନ୍ଦନ ନାମକ ଏକ ମହାପ୍ରତାପୀ ଏକଦା ତାଳଚେର ଜଙ୍ଗଲକୁ ଶିକାର କରିବାକୁ ଯାଇଥିଲେ । ସେଠାକାର ଜଳବାୟୁ ଓ ମନୋହର ଶୋଭା ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ସେଠାରେ ତାଙ୍କର ରାଜପ୍ରସାଦ ନିର୍ମାଣ କରି ରହିବାକୁ ମନ ବଳାଇଥିଲେ । ଏଥିପାଇଁ ତାଳଚେରର ନଳରାଜାଙ୍କ ସହିତ ତାଙ୍କର ବହୁବାର ଯୁଦ୍ଧ ହୋଇଥିଲା । ପ୍ରତ୍ୟେକ ଥର ଯୁଦ୍ଧରେ ରାଜା ହରିଚନ୍ଦନ ପରାସ୍ତ ହେଉଥିଲେ । କିନ୍ତୁ ସର୍ବଶେଷରେ ରାଜା ପଦ୍ମନାଭ ହିଙ୍ଗୁଳା ଦେବୀଙ୍କ ସ୍ୱପ୍ନାଦେଶ ବଳରେ ତାଳଚେରର ନଳରାଜାଙ୍କୁ ପରାସ୍ତ କରି ନିଜର ଶାସନଗାଦି ନିର୍ମାଣ କରିଥିଲେ ।

ମାଆ ହିଙ୍ଗୁଳାଙ୍କ ପ୍ରତ୍ୟକ୍ଷ ଆଶୀର୍ବାଦ ବଳରେ ପଦ୍ମନାଭଙ୍କ ମନୋବାଞ୍ଛା ପୂରଣ ହୋଇଥିବାରୁ ସେ ସେଠାରେ ମା'ଙ୍କ ମନ୍ଦିର ପ୍ରତିଷ୍ଠା କରି ବୈଦିକ ନୀତିରେ ପୂଜା ପଦ୍ଧତି କାର୍ଯ୍ୟ ଆରମ୍ଭ କରିଥିଲେ ।

ଦେବୀ ହିଙ୍ଗୁଳାଙ୍କ ପୀଠ ତାଳଚେର ସହରଠାରୁ ପଶ୍ଚିମ ଦିଗକୁ ପ୍ରାୟ ୨୫କିମି ଦୂରରେ ଥିବା ଶଙ୍ଗଡା ଉପନଦୀ(ଜୋଡ) ନିକଟରେ ଥିବା ଗୋପାଳ ପ୍ରସାଦ ଗ୍ରାମଠାରେ ଅବସ୍ଥିତ । ଆଉ ମଧ୍ୟ ଅନୁଗୁଳ ଜିଲ୍ଲା ସଦର ମହକୁମାଠାରୁ ପ୍ରାୟ ୧୦କିମି ଦୂରରେ ଅବସ୍ଥିତ । ଦେବୀ ହିଙ୍ଗୁଳା ଗୋପାଳପ୍ରସାଦ ଗ୍ରାମର ପ୍ରବେଶ ମୁଣ୍ଡରେ ଏକ ଖୋଲା ମଣ୍ଡପରେ ପୂଜା ପାଉଛନ୍ତି । ଏହି ଖୋଲାମଣ୍ଡପଟିର ଦୈର୍ଘ୍ୟ ପ୍ରାୟ ୬୦ଫୁଟ ଓ ପ୍ରସ୍ଥ ୨୫ଫୁଟ । ଅତୀତରେ ଏହି ମଣ୍ଡପଟି ମାଟିରେ ତିଆରି ହୋଇଥିଲା । କିନ୍ତୁ ଆଜକୁ ପ୍ରାୟ ୧୦୦ ବର୍ଷ ତଳେ ତାଳଚେରର ରାଜା କିଶୋର ଚନ୍ଦ୍ର ବୀରବର ହରିଚନ୍ଦନ ପଥରରେ ମଣ୍ଡପ, ମୁଖଶାଳା, ଯଜ୍ଞମଣ୍ଡପ, ବଳିମଣ୍ଡପ, ରୋଷ ଘର ଓ କାର୍ଯ୍ୟାଳୟ ଇତ୍ୟାଦି ନିର୍ମାଣ କରିଥିଲେ । ମାଆ ହିଙ୍ଗୁଳାଙ୍କଠାରୁ ପ୍ରାୟ ୨୦୦ଫୁଟ ଦୂରରେ ତାଙ୍କ ସହଚରୀ ମାଆ କୁଟେଇଶୁଣୀ ଏକ ମଣ୍ଡପରେ ବିରାଜିତ । ଏତଦ୍‌ବ୍ୟତୀତ ରାଜା ଠାକୁରଙ୍କର ସମସ୍ତ ସେବାୟତମାନଙ୍କ ପାଇଁ ପ୍ରାୟ ୪୦ ଏକର ଜମି ଖଞ୍ଜିଥିବା ସହ ମନ୍ଦିରର କେତେଗୁଡିଏ ଜନହିତକର କାର୍ଯ୍ୟ କରିଥିଲେ ।

ଏହି ପୀଠର ପୂଜକଙ୍କୁ 'ଦେହୁରୀ' କୁହାଯାଏ । ସେମାନେ ନଳବଂଶୀୟ ସମ୍ପ୍ରଦାୟର ବୋଲି କୁହନ୍ତି । ଏଥିପାଇଁ ଗୋଟିଏ କିମ୍ବଦନ୍ତୀ ଅଛି । ରାଜା ପଦ୍ମନାଭ ହରିଚନ୍ଦନ ତାଳଚେରର ନଳରାଜାଙ୍କୁ ପରାସ୍ତ କରି ଶାସନଗାଦୀ ଦଖଲ କରିଥିଲେ । କିନ୍ତୁ ନଳରାଜା ନିଜର ସମ୍ମାନହାନିର ଭୟରେ ଜଳାଶ୍ରୟରେ ଆତ୍ମହତ୍ୟା କରିଥିଲେ । ସେହି ସମୟରେ ନଳରାଜାଙ୍କର ରକ୍ଷିତା ସ୍ତ୍ରୀ ସୁହୁଣୀ ରାଜାଙ୍କ ଔରଷରୁ ଏକ ପୁତ୍ର ଜନ୍ମଲାଭ କରିଥିଲେ । ସେହି ପୁଅର ବଂଶଧରମାନେ ବଂଶାନୁକ୍ରମେ ପୂଜାକାର୍ଯ୍ୟ କରିଆସୁଛନ୍ତି । ଆଉ ମଧ୍ୟ ହିଙ୍ଗୁଳା ଦେବୀଙ୍କୁ ଉଭୟ ହିନ୍ଦୁ ଓ ମୁସଲମାନ, ସ୍ତ୍ରୀ ଓ ପୁରୁଷମାନେ ପୂଜା କରିବାର ବିଧି ଅଛି । ତେଣୁ ହିଙ୍ଗୁଳା ହେଉଛନ୍ତି ଉଭୟ ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟର ଆରାଧ୍ୟଦେବୀ ।

ସର୍ବଶକ୍ତିଦାୟିନୀ ଦେବୀ ହିଙ୍ଗୁଳାଙ୍କ ପାଖରେ ଦୈନିକ ଆଳତୀ ଓ ଭୋଗ ଲାଗି ହୋଇଥାଏ । ପ୍ରତ୍ୟେକ ସକାଳ ୫ଟାରେ ମନ୍ଦିର ଖୋଲାଯାଇ ରାତି ୯ଟାରେ ପହଡ ପଡିଥାଏ । ଏତଦ୍‌ବ୍ୟତୀତ ଏହି ପୀଠରେ କେତେଗୁଡିଏ ମେଳା, ମହୋତ୍ସବ ଓ ପର୍ବ ପାଳନର ବିଧିବିଧାନ ଅଛି । ଜନ୍ତାଳପୂଜା– ହିଙ୍ଗୁଳା ଯାତ୍ରା ପୂର୍ବରୁ ସପ୍ତମ ଓ ନବମ ଦିନ ପୂଜା ହୁଏ । ହିଙ୍ଗୁଳା ଯାତ୍ରା–ଚୈତ୍ର ମାସ ଶୁକ୍ଳପକ୍ଷ ବିଷ୍ଣୁଦମନକ ଚତୁର୍ଦ୍ଦଶୀ, ଶୀତୁଳା ଯାତ୍ରା–ବୈଶାଖ ମାସ କୃଷ୍ଣପକ୍ଷ ସପ୍ତମୀ, କରଡେଇଙ୍କ ପୂଜା– ବୈଶାଖ ମାସର ଏକ ଶୁଭଦିନ, କୁଟେଇଶୁଣୀ ମଣ୍ଡପରେ ପୂଜା– ପ୍ରତିମାସର ପୂର୍ଣ୍ଣିମା, ରଜପର୍ବ– ଜ୍ୟେଷ୍ଠମାସରେ ପାଞ୍ଜିର ତିଥି ଅନୁସାରେ, ନୂଆଖାଇ– ଭାଦ୍ରବ ଶୁକ୍ଳପକ୍ଷର ଏକ ଶୁଭଦିନ, ସପ୍ତପୁରୀ ଅମାବାସ୍ୟା– ଭାଦ୍ରବ ମାସରେ ପାଞ୍ଜିର ତିଥି ଅନୁସାରେ ଦଶହରା ପୂଜା, ଦୀପାବଳୀ, ମକର ସଂକ୍ରାନ୍ତି, ଅଗ୍ନି ଉତ୍ସବ ବା ଦୁର୍ଗା ମାଧବ ଭେଟ ଓ ପାଟବରି ଉତ୍ସବ ଅନୁଷ୍ଠିତ ହୁଏ । ୧୯୯୮ ମସିହାଠାରୁ ତାଳଚେରର ପ୍ରାକ୍ତନ ଉପଜିଲ୍ଲାପାଳ ଶ୍ରୀଯୁକ୍ତ ଶାଶ୍ୱତ ମିଶ୍ରଙ୍କ ଦୃଢ ପଦକ୍ଷେପ ଫଳରେ ବଳିପ୍ରଥା ବନ୍ଦ ହୋଇଅଛି । ଅତୀତରେ ଏହି ପୀଠରେ ବାର୍ଷିକ ୧୨ଟି ପୂର୍ଣ୍ଣିମୀରୁ ୮ଟି ପୂର୍ଣ୍ଣିମୀରେ ବଳିପଡିବାର ବିଧିଥିଲା । ତେଣୁ ଏହାକୁ ଆଠୁଆରୀ ପୂଜା କୁହାଯାଇଥାଏ । ଏହି ପୀଠରେ ଶାବର ନୀତିରେ ପୂଜା କରାଯାଇଥାଏ । ଦେବୀଙ୍କ ବୀଜମନ୍ତ୍ର 'ଓଁ ଐଂ ହ୍ରାଂ କ୍ଳୀଂ ହିଙ୍ଗୁଳାୟୀ ସ୍ୱାହା ।

ଏହି ପୀଠଟି ସ୍ତ୍ରୀ ପୀଠ ହୋଇଥିବାରୁ ମୁଖ୍ୟ ପୂଜାଗୁଡିକରେ ଦେହୁରୀମାନେ ସ୍ତ୍ରୀ ବେଶ ପୋଷାକ ପରିଧାନ କରି ପୂଜା କରିବାର ବ୍ୟବସ୍ଥା ଅଛି । ତେଣୁ ଦେହୁରୀମାନେ କାଚ, କଜ୍ଜଳ, ସିନ୍ଦୂର ଲଗାଇ ପୂଜା କରିବାର ଦେଖିବାକୁ ମିଳିଥାଏ । ଏଠାରେ ପାଳନ ହେଉଥିବା ପର୍ବମାନଙ୍କ ମଧ୍ୟରେ ହିଙ୍ଗୁଳାଯାତ୍ରା ପର୍ବଟି ସ୍ୱତନ୍ତ୍ର ଅଟେ । ଏହି ପର୍ବଟି ଚୈତ୍ରମାସ ଶୁକ୍ଳପକ୍ଷ ବିଷ୍ଣୁଦମନକ ଚତୁର୍ଦ୍ଦଶୀରୁ ଆରମ୍ଭ ହୋଇ ଦୀର୍ଘ ୯ଦିନ ଧରି ମହାସମାରୋହ ଓ ଆଡମ୍ବରପୂର୍ଣ୍ଣ ଭାବରେ ଲକ୍ଷ ଲକ୍ଷ ଭକ୍ତମାନଙ୍କର ସମାବେଶରେ ପାଳିତ ହୋଇଥାଏ । ଅନ୍ୟ ଗୋଟିଏ ପର୍ବ ଏଠାରେ ପାଳନ ହୋଇଥାଏ, ଯାହାକି ଅନ୍ୟ ପୀଠରେ ପାଳନ ହେବା ବିରଳ ଅଟେ । ପ୍ରତିବର୍ଷ ଚୈତ୍ରମାସ ପ୍ରଥମ ଗୁରୁବାରଠାରୁ ଦେହୁରୀ ହବିଷାନ୍ନ ଖାଇ ମାଆଙ୍କ ନିକଟରେ ତାଙ୍କର ଆବିର୍ଭାବ ଜାଣିବା ପାଇଁ ଅଧିଆ ପଡିଥାଏ । ଜ୍ୟୋତିର୍ମୟୀ ମାଆ ହିଙ୍ଗୁଳା ଆବିର୍ଭାବର ସମୟ ଓ ସ୍ଥାନ ସ୍ୱପ୍ନାଦେଶରେ ଦେହୁରୀଙ୍କୁ କହିଥାଆନ୍ତି । ଯେଉଁଦିନ ଓ ଯେଉଁସ୍ଥାନରେ ମା' ଦେବୀ ଆବିର୍ଭୂତା ହେବେ, ସେହିଦିନ ସେଠାରେ ଜନ୍ତାଳ ହେବା ସଙ୍ଗେ ସଙ୍ଗେ କାଳସୀ ଲାଗେ । କାଳସୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ଦେହୁରୀ ଅରୁଆ ଚାଉଳ, ଘିଅ, ମହୁ ଓ ଦୁଗ୍ଧ ଅର୍ପଣ କରିଥାନ୍ତି । ସେହିଦିନ ଦେହୁରୀ ମନ୍ଦିରର ପୂର୍ବ ବା ପଶ୍ଚିମ ଦିଗରେ ରାତିରେ ବିଜେ ହୋଇଥାନ୍ତି । ସେଠାରେ ଦେବୀଙ୍କ ସ୍ୱରୂପ ଏକ ଜ୍ୱଳନ୍ତ ଅଗ୍ନି ପିଣ୍ଡୁଳା ଦେହୁରୀଙ୍କୁ ଦର୍ଶନ ହୋଇଥାଏ । ସେହି

ଅଗ୍ନି ପିଣ୍ଡୁଳାଟି ଚାଲି ଯାଉଥିବା ଦେଖି ଦେହୁରୀ ମନ୍ତ୍ରପାଠ ମାଧ୍ୟମରେ ଆୟତ୍ତ କରି ଗୋଟିଏ ସ୍ଥାନରେ ରଖିଥାଏ । ତା'ପରେ ଚନ୍ଦନକାଠ, ଘିଅ, ଫୁଲ ଇତ୍ୟାଦି ଆହୂତି ଦେଇ ବନ୍ଦନା କରାଯାଏ । ଏହି ଅଗ୍ନିରୂପକ ଦେବୀଙ୍କୁ କୋଇଲାଖଣ୍ଡ ଦ୍ୱାରା ଆବୃତ କରି ୯ଦିନ ରଖାଯାଇଥାଏ । ଏହି ନବମ ଦିନ ଯାତ୍ରାରେ ଓଡ଼ିଶା କାହିଁକି ସମଗ୍ର ଭାରତବର୍ଷରୁ ଲକ୍ଷ ଲକ୍ଷ ଭକ୍ତମାନେ ଦର୍ଶନ କରିବା ପାଇଁ ସେଠାରେ ରୁଣ୍ଡ ହୋଇଥାଆନ୍ତି । ଘଣ୍ଟା ଘଣ୍ଟା ଓ ବିଭିନ୍ନ ବାଦ୍ୟଯନ୍ତ୍ର ମାଧ୍ୟମରେ ଠାକୁରାଣୀଙ୍କ ଅଗ୍ନିଶିଖାରେ ଘିଅ ଚନ୍ଦନ ଇତ୍ୟାଦି ଅର୍ପଣ କରି ସେମାନଙ୍କର ମନୋବାଞ୍ଛା ପୂରଣ ପାଇଁ ବିନମ୍ର ସହ ପ୍ରାର୍ଥନା କରିଥାନ୍ତି । ଶହ ଶହ ସଂଖ୍ୟାର ଛୋଟ ଛୋଟ ପିଲା ସେମାନଙ୍କର ମାନସିକ ପୂରଣ ନିମିତ୍ତ ଲଣ୍ଡା ହୋଇଥାନ୍ତି । ଶେଷଦିନ ଅର୍ଥାତ ୯ମ ଦିନ ଏହି ଅଗ୍ନିକୁ ପଣା ପାଣି, ଧୂପ ଦୀପ ଓ ନୈବେଦ୍ୟ ଇତ୍ୟାଦି ଅର୍ପଣ ମାଧ୍ୟମରେ ନିର୍ବାପିତ କରାଯାଇଥାଏ । ପୁନରାୟ ମାଆ ହିଙ୍ଗୁଳା ତାଙ୍କର ଆସ୍ଥାନକୁ ଫେରି ଆସିଥାନ୍ତି । ଏହାକୁ ଶୀତଳା ବା ବାହୁଡ଼ା ପର୍ବ ବୋଲି କୁହାଯାଇଥାଏ ।

ଏହି ପୀଠର ମହାନ ବୈଶିଷ୍ଟ୍ୟ ହେଲା ମାଆଙ୍କର ନବକଳେବର ପ୍ରଥା । ଯେପରି ଶ୍ରୀକ୍ଷେତ୍ରରେ ନବକଳେବର ହୋଇଥାଏ, ଠିକ୍ ସେପରି ହିଙ୍ଗୁଳାଙ୍କର ନବକଳେବର ହୋଇଥାଏ । ଯେପରି ଗଜପତି ମହାରାଜା ଓଡ଼ିଶାର ବଡ ଠାକୁର ଶ୍ରୀଜଗନ୍ନାଥଙ୍କର ଆଦ୍ୟ ଓ ପ୍ରଧାନ ସେବକ, ଠିକ୍ ସେପରି ତାଳଚେରର ରାଜା ହେଉଛନ୍ତି ହିଙ୍ଗୁଳାଙ୍କର ମୁଖ୍ୟ କର୍ଣ୍ଣଧାର। ଶାସନ ଗାଦିରେ ଥିବା ରାଜାଙ୍କର ଦେହାନ୍ତ ହୋଇଗଲେ, ମାଙ୍କ ପ୍ରତି ମାଟି ମାରା ହୋଇଯାଏ । ବିଧିବିଧାନ ସହ ମା' ହିଙ୍ଗୁଳା ଏକ ନୂତନ କାଠରେ ତିଆରି ହୋଇ ପୂଜା ପାଇଥାଆନ୍ତି । ରାଜାଙ୍କର ମୃତ୍ୟୁ ପରେ ମାଆ ହିଙ୍ଗୁଳା ପ୍ରଧାନ ଦେହୁରୀଙ୍କୁ ସ୍ୱପ୍ନାଦେଶ ମାଧ୍ୟମରେ ପଶ୍ଚିମପଟେ ଥିବା ଜଙ୍ଗଲରେ ଏକ ଶାଳଗଛର ସୂଚନା ଦେଇଥାନ୍ତି । ସେହି ଶାଳଗଛକୁ ଚିହ୍ନଟ କରି କାଟି ଆଣିବାଠାରୁ ଆସ୍ଥାନରେ ବିରାଜିତ ହେବା ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ମନ୍ତ୍ରପାଠ, ହରିବୋଲ, ହୁଳହୁଳି, ହରିନାମ ଓ ଯଜ୍ଞ ମାଧ୍ୟମରେ ସମ୍ପାଦନ ହୋଇଥାଏ । ଯେଉଁଦିନ ନୂତନ କାଠର ପ୍ରତିମା ମଣ୍ଡପରେ ବିରାଜିତ ହୋଇଥାଆନ୍ତି, ସେହିଦିନ ମାଜଣା ହେବା ସଙ୍ଗେ ସଙ୍ଗେ ସମସ୍ତ ଦେହୁରୀ ନୂତନ ବସ୍ତ୍ର ପରିଧାନ କରିଥାଆନ୍ତି । ଏହି ପର୍ବର ସମସ୍ତ ଖର୍ଚ୍ଚ ରାଜା ବହନ କରିଥାନ୍ତି । ନବକଳେବର ଦିନ ଲକ୍ଷ ଲକ୍ଷ ପରମ ଭକ୍ତ ସେଠାରେ ଉପସ୍ଥିତ ହୋଇ ଏହି ପର୍ବକୁ ଉପଭୋଗ କରିବା ସଙ୍ଗେ ସଙ୍ଗେ ନିଜର ମନୋବାଞ୍ଛା ପୂରଣ ପାଇଁ ଦେବୀଙ୍କୁ ପ୍ରାର୍ଥନା କରିଥାନ୍ତି ।

ଶ୍ରୀକ୍ଷେତ୍ରର ଶ୍ରୀଜଗନ୍ନାଥଙ୍କ ସହିତ ତାଳଚେରର ମାଆ ହିଙ୍ଗୁଳାଙ୍କର ଅତି ନିବିଡ ସମ୍ପର୍କ । ଜଗନ୍ନାଥ ପୀଠର ରୋଷଶାଳାକୁ ହିଙ୍ଗୁଳା ପୀଠ କୁହାଯାଇଥାଏ । ହିଙ୍ଗୁଳା ଦେବୀଙ୍କର ଅଶେଷ ମହିମା ବଳରେ ଶ୍ରୀକ୍ଷେତ୍ରରେ ପ୍ରସ୍ତୁତ ହେଉଥିବା ସମସ୍ତ ମହାପ୍ରସାଦ ସୁସ୍ୱାଦ ହେବା ସଙ୍ଗେ ସଙ୍ଗେ ପାକସ୍ଥଳୀରେ ଶୀଘ୍ର ହଜମ ହୋଇଯାଏ । ପୁରାଣ କାହାଣୀ ଅନୁସାରେ ଏକଦା ମାଆ ହିଙ୍ଗୁଳା ଦେବୀ ଗଜପତି ମହାରାଜାଙ୍କୁ ସ୍ୱପ୍ନାଦେଶ ମାଧ୍ୟମରେ କହିଥିଲେ ଯେ, ମୋର ଆଶୀର୍ବାଦ ବଳରେ ଶ୍ରୀଜଗନ୍ନାଥଙ୍କର ଛପନ ପଉଟି ଭୋଗ ସ୍ୱାଦଯୁକ୍ତ ହେବ । ତେଣୁ ଗଜପତି ମହାରାଜା ତାଳଚେରର ନଳରାଜାଙ୍କ ପରାମର୍ଶରେ ମା' ଦେବୀଙ୍କ ନିକଟରେ ଶରଣାପନ୍ନ ହୋଇ ମାଆଙ୍କୁ ଶ୍ରୀଜଗନ୍ନାଥଙ୍କ ରୋଷଘରକୁ ଆଣିବାରେ ସମର୍ଥ ହୋଇଥିଲେ । ସେହିଦିନ ଠାରୁ ଶ୍ରୀଜଗନ୍ନାଥଙ୍କ ରୋଷ ମଣ୍ଡପକୁ ହିଙ୍ଗୁଳାପୀଠ କୁହାଯାଉଅଛି । ପ୍ରତ୍ୟହ ଖାଦ୍ୟ ପ୍ରସ୍ତୁତି ପୂର୍ବରୁ ପ୍ରଥମେ ଶ୍ରୀଜଗନ୍ନାଥଙ୍କ ରୋଷଶାଳା ହିଙ୍ଗୁଳାମଣ୍ଡପରେ ମା' ଦେବୀଙ୍କୁ ପୂଜା ହେବାର ବିଧିବିଧାନ ଖଞ୍ଜା ହୋଇଅଛି ।

ଠାକୁରାଣୀଙ୍କର ଚଳନ୍ତି ପ୍ରତିମାକୁ ଆଲମ୍ବ ବୋଲି କୁହାଯାଏ । ଏହା ରୂପାରେ ନିର୍ମିତ । ପୁରାଣରେ ବର୍ଣ୍ଣିତ ଅଛି ମାଆ କାଳୀଙ୍କର ପରବର୍ତ୍ତୀ ରୂପ ହେଉଛନ୍ତି ଦେବୀ ହିଙ୍ଗୁଳା । ସେ ଜ୍ୱାଳାମୁଖୀ ଓ ଅଗ୍ନିବର୍ଣ୍ଣା । ଶଙ୍କରାଚାର୍ଯ୍ୟଙ୍କ ମତରେ ସେ ପରମାତ୍ମାଙ୍କ ଅବ୍ୟକ୍ତ ଶକ୍ତି ଯାହାଙ୍କ ଦ୍ୱାରା ଏହି ସମସ୍ତ ସଂସାର ସୃଷ୍ଟି ହୋଇପାରିଛି ।

ଶକ୍ତିଙ୍କର ଆବିର୍ଭାବ ହେଲେ ତିନିଲୋକ ଚଉଦବ୍ରହ୍ମାଣ୍ଡ ପ୍ରସ୍ଫୁଟିତ ହୋଇଥାଏ ଓ ବିସର୍ଜନରେ ବିଶ୍ୱର ବିନାଶ ହୋଇଥାଏ । ତେଣୁ ତାଙ୍କର ଦୃଶ୍ୟ, ଅଦୃଶ୍ୟ, ଘଟଣ, ଅଘଟଣ କୁହୁକ ବିଦ୍ୟା ସଦୃଶ ।

ଏକାଧାରାରେ ମାଆ ହିଙ୍ଗୁଳା ହେଉଛନ୍ତି ଅଗ୍ନି ସ୍ୱରୂପିଣୀ, ଜ୍ୟୋତିର୍ମୟୀ, ସର୍ବପାପ ଓ ତାପ ହାରିଣୀ କାଳୀ, ସର୍ବ ଶୁଭଙ୍କରୀ ଦୁର୍ଗତି ନାଶିନୀ, ଶାନ୍ତି ପ୍ରଦାୟନୀ, ଅଧିଷ୍ଠାତ୍ରୀ ଦେବୀ ରୂପେ ସର୍ବଶକ୍ତି ଦାୟିନୀ । ସମ୍ପ୍ରତି ମାନବ ସମାଜ ତା'ର ଆଦି ଐତିହ୍ୟ ତଥା ଶକ୍ତି ଉପାସନାକୁ ଭୁଲିଯାଇ ସାମାଜିକ ଅବନତି ସ୍ଖଳନର ଶିକାର ହେଉଛି । ତେଣୁ ସମସ୍ତ ଜନସମାଜ ସେହି ଆଦିଶକ୍ତିଙ୍କ ଚରଣାରବିନ୍ଦରେ ନମ୍ରତାର ସହିତ ଭକ୍ତିପୂତ ଚିତ୍ତରେ ଶରଣାପନ୍ନ ହେବା ଏକାନ୍ତ କାମ୍ୟ ।

ପ୍ଲଟ ନଂ ୭୮୫/୧୨୪୦,
ଦୁର୍ଗାମାଧବ ନଗର,
ଭରତପୁର, ଭୁବନେଶ୍ୱର-୩

# ମହିମ୍ନ ମାନ୍ତ୍ରିକ ଓ ତତ୍ତ୍ୱର ତାନ୍ତ୍ରିକ ବିଦ୍ୟାବିନୋଦ ମଧୁସୂଦନ ଦାଶ

**ଡକ୍ଟର ନାରାୟଣ ପଣ୍ଡା**

Life is real! Life is earnest! And the grave is not its goal; Dust thou art, to dust returnest, was not spoken of the soul.

-H.W.Longfellow.

ବିଂଶଶତାବ୍ଦୀର ପ୍ରାରମ୍ଭରେ ତିନିଜଣ ସାରସ୍ୱତ ସାଧକ, ମହିମ୍ନ ମାନ୍ତ୍ରିକ ସେମାନଙ୍କ ବ୍ୟତିକ୍ରମ ବ୍ୟକ୍ତିତ୍ୱ ଓ ଅସାଧାରଣ ପ୍ରତିଭା ବଳରେ ପ୍ରତିଷ୍ଠା ଲାଭ କରିଥିଲେ- ଆଧୁନିକ ଉତ୍କଳର ପିତା ଉତ୍କଳଗୌରବ ମଧୁସୂଦନ, ଭକ୍ତକବି ରଷିପ୍ରାଣ ମଧୁସୂଦନ, କର୍ମବୀର ସାହିତ୍ୟ ସାଧକ ବିଦ୍ୟାବିନୋଦ ମଧୁସୂଦନ ଦାଶ । ଦେଶପ୍ରାଣ ମଧୁସୂଦନ, ବ୍ରହ୍ମବାଦୀ କବି ମଧୁସୂଦନ ଓଡ଼ିଶାର ପୁରପଲ୍ଲୀରେ ସର୍ବବାଦୀ ସମ୍ମତ । ଦୁଃଖ ଓ ପରିତାପର ବିଷୟ, ବିଶିଷ୍ଟ ଶିକ୍ଷାବିଦ୍ ଧୂରୀଣ ସାହିତ୍ୟ ସାଧକ ଅନନ୍ୟ ଅନୁବାଦକ ମଧୁସୂଦନଙ୍କ ପ୍ରତିଭା ମୂଲ୍ୟାୟନ କୌଣସି ପତ୍ର ପତ୍ରିକାରେ ବହୁଳ ଭାବରେ ହୋଇନାହିଁ କହିଲେ ସତ୍ୟର ଅପଳାପ ହେବନାହିଁ ।

ପୁରୀ ଜିଲ୍ଲାର ନିମାପଡା ନିକଟବର୍ତ୍ତୀ ଭୁବନପୁର ଗ୍ରାମରେ ପିତା ଦୀନବନ୍ଧୁ ଦାଶଙ୍କ ଔରଷରୁ ମାତା ହାରାମଣି ଦେବୀଙ୍କ ଗର୍ଭରୁ ୧୮୬୮ ଖ୍ରୀଷ୍ଟାବ୍ଦ ଜୁଲାଇ ମାସରେ ମଧୁସୂଦନ ଜନ୍ମ ଗ୍ରହଣ କରିଥିଲେ ।

ମଧୁସୂଦନ ଜନ୍ମ ହେଲାପରେ ଅତି ନିସ୍ତେଜ ଦେଖା ଯିବାରୁ ପିତାମହୀ ଯମୁନା ଦେବୀ ଆକୁଳ ହୋଇ ଇନ୍ତୁଡି ଶାଳରେ ପଶି କାନଫୁଙ୍କି ତାଙ୍କ ମୁଣ୍ଡରେ ମହୁଘଷି ଥିଲେ, ତୁଣ୍ଡରେ ମହୁ ଦେଇଥିଲେ । ତା'ପରେ ଚେତା ହେବାରୁ ପିଲାଟି କୁଆଁ କୁଆଁ ଡାକ ଦେଇଥିଲା । ସେ ଆନନ୍ଦରେ କହିପକାଇଲେ 'ମଧୁ' । ଏକୋଇଶାରେ ସତ୍ୟନାରାୟଣ ପୂଜା ପରେ ମଧ ତାଙ୍କ ନାମ ମଧୁ ରଖାଗଲା ।

ନଅଙ୍କ ଦୁର୍ଭିକ୍ଷର କରାଳଛାୟା ଗ୍ରାମେ ଗ୍ରାମେ ବିଭୀଷିକା ସୃଷ୍ଟି କରିଥାଏ । ହା-ଅନ୍ନ ଚିତ୍କାରରେ ଗଗନପବନ ମୁଖରିତ ହେଉଥାଏ । ଜୀବନ ମରଣର ପଶାଖେଳ ଭିତରେ ମଧୁସୂଦନଙ୍କ ଆବିର୍ଭାବ, ବାଗ୍‌ଦେବୀଙ୍କ ଓଡ଼ିଆ ଜାତିପ୍ରତି ସର୍ବ ଶ୍ରେଷ୍ଠ ଆଶୀର୍ବାଦ । ମଧୁସୂଦନଙ୍କ ପିତା ଗୃହରେ ଜଣେ ବ୍ରାହ୍ମଣ ପଣ୍ଡିତଙ୍କୁ ରଖି ଶିକ୍ଷା ପ୍ରଦାନ କରୁଥିଲେ । ମଧୁସୂଦନ ଅନାୟସରେ ସ୍ୱଗୃହରେ ଶିକ୍ଷକ ପରାମର୍ଶରେ ସତର ଫଳାଠାରୁ ପଣକିଆ, କଡାଗଣ୍ଡା, ପାହିଅଣା, ଗୁଣ୍ଡବିଶ୍ୱା, ଛାନ୍ଦ ଚଉପଦୀ ଆୟତ୍ତ କରିଥିଲେ । ଲେଖନ ସାହାଯ୍ୟରେ ସେ ତାଳପତ୍ରରେ ଅକ୍ଷର ଶିକ୍ଷା ଅଭ୍ୟାସ କରୁଥିଲେ, କାଗଜ କଲମର ଯଥେଷ୍ଟ ପ୍ରଚଳିତ ହୋଇ ନଥିବାରୁ ଶିଝୁପତ୍ର, ବୁଢା କଦଳୀ ପତ୍ରରେ ହାତ ତିଆରି କାଳିରେ ଲେଖୁଥିଲେ । ସେ ନିମ୍ନ ପ୍ରାଥମିକ ସ୍କୁଲରେ ବୃତ୍ତିଲାଭ କରିଥିଲେ ।

ଆଠବର୍ଷ ବୟସରେ ତାଙ୍କର ପିତୃ ବିୟୋଗ ଘଟିଥିଲା । ତାଙ୍କର ଦାୟିତ୍ୱ ଖୁଡୁତା ଓ ବୁଢୀ ମା'ଙ୍କ ଉପରେ ନ୍ୟସ୍ତ ହୋଇଥିଲା । ଖୁଡୁତା ନିଃସନ୍ତାନ ଥିବାରୁ ଓ ବୁଢୀମାଆଙ୍କର ଅନ୍ୟ ନାତି ନାତୁଣୀ ନଥିବାରୁ ସେମାନେ ଲାଳନ ପାଳନ ଭାର ଅତି ଆନନ୍ଦରେ ବହନ କରିଥିଲେ । ପ୍ରାଥମିକ ଶିକ୍ଷା ପରେ ମଧୁ ନିମାପଡା ମାଇନର ସ୍କୁଲରେ ନାମ ଲେଖାଇଥିଲେ । ସେତେବେଳେ ତାଙ୍କ ପିତା ସ୍କୁଲର ପ୍ରଧାନ ଶିକ୍ଷକ ଆର୍ତ୍ତତାଣ ତ୍ରିପାଠୀଙ୍କୁ ଅନୁରୋଧ କରିଥିଲେ 'ହେ ଆର୍ତ୍ତତାଣ ତ୍ରିପାଠୀ, ମଧୁକୁ ତୁମ ସ୍କୁଲକୁ ନେଉଛ, ଖବରଦାର ତାକୁ ସାହେବଘର ପାଠ ପଢାଇବ ନାହିଁ ।

ସେତେବେଳେ ଜଣେ ସଚେତନ ପିତାଙ୍କ ସୁପରାମର୍ଶ ଥିଲା ପ୍ରଧାନ ଶିକ୍ଷକଙ୍କ ପ୍ରତି । ଅଭିଭାବକଙ୍କ ଅଜାଣତରେ ଆର୍ତ୍ତତାଣ ମଧୁସୂଦନଙ୍କୁ ଫାଷ୍ଟବୁକ୍ ପଢାଇଲେ, କଠିନ ପରିଶ୍ରମୀ ଓ ଅଧ୍ୟବସାୟୀ ଛାତ୍ର ଭାବରେ ସେ ବିଦ୍ୟାଳୟରେ ବେଶ ଯଶ ଓ

ସୁନାମ ଅର୍ଜନ କରିଥିଲେ । ୧୮୮୪ ଖ୍ରୀଷ୍ଟାବ୍ଦରେ ମାଇନର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଓ ଛାତ୍ରବୃତ୍ତି ଲାଭ କରିଥିଲେ ।

ଅନନ୍ତ ଅଭିନିବେଶ ଓ ଗଭୀର ନିଷ୍ଠା ସଫଳତାର ଶୀର୍ଷରେ ଉପନୀତ କରାଏ । ପ୍ରତିକୂଳ ପରିବେଶ ଭିତରେ ପ୍ରତିଭା ବିକଶିତ ହୁଏ । ଫୁଲର ସୁବାସ ପରି, ଆଲୋକର ପ୍ରକାଶ ପରି ବିଦ୍‌ବତ୍ତା ତା'ର ଆଭା ଓ ବିଭାରେ ସାରା ଜଗତକୁ ଚମତ୍କୃତ କରେ । ପରିବାରର ଆର୍ଥିକ ଅନଟନ ଭିତରେ, ଶିକ୍ଷକମାନଙ୍କ ଅନୁରୋଧରେ ମଧୁ ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କଲେ । ଅଧ୍ୟୟନ ତତ୍ପରତା, ବିଚକ୍ଷଣ ପ୍ରତ୍ୟୁତ୍ପନ୍ନମତିତାକୁ ଅବଲୋକନ କରି ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ପଣ୍ଡିତ ମହାମହୋପାଧ୍ୟାୟ ସଦାଶିବ ମିଶ୍ର କାବ୍ୟକଣ୍ଠ ମଧୁଙ୍କ ଅଭିଭାବକ ଦାୟିତ୍ୱ ଗ୍ରହଣ କଲେ ।

ପଣ୍ଡିତ ମହାଶୟଙ୍କ ତତ୍ତ୍ୱାବଧାନ ଓ ନିଜସ୍ୱ ଅଧ୍ୟବସାୟ ବଳରେ ମଧୁ ବିଦ୍ୟାଳୟରେ ଜଣେ ଆଦର୍ଶ ଚରିତ୍ରବାନ ଛାତ୍ର ଭାବରେ ପରିଚିତ ହେଲେ । କବିବର ରାଧାନାଥ ରାୟ 'ଚନ୍ଦ୍ରଭାଗା' କାବ୍ୟରେ ଯଥାର୍ଥରେ ପ୍ରକାଶ କରିଛନ୍ତି–

'ଯେ ଅଟେ ଜଗତଜନର
ମନ–ନୟନ କାରା,
ଅପ୍ରକଟ ହୋଇ ରହିବା
ପାଇଁ କାହିଁ ତା ଚାରା' ?

ବିଦ୍ୟାବିନୋଦ ମଧୁସୂଦନ ଦାଶଙ୍କ ଉଦ୍ଦେଶ୍ୟରେ ରାଧାନାଥଙ୍କ ଅନବଦ୍ୟ ଲେଖନୀ ସୃତ 'ଚନ୍ଦ୍ରଭାଗା' କାବ୍ୟର ଏ ବଳିଷ୍ଠ ଉକ୍ତି ବେଶ୍ ପ୍ରଣିଧାନଯୋଗ୍ୟ । ଜଗତ ଉଦ୍ଦେଶ୍ୟରେ ଯିଏ ଅଭିପ୍ରେତ ତାକୁ କୌଣସି ଶକ୍ତି ଅଟକାଇ ପାରିବ ନାହିଁ ତା'ର ଅବାରିତ ଯାତ୍ରାପଥକୁ ରୋଧ କରିପାରିବ ନାହିଁ ।

ଅଭାବ ଅସୁବିଧା ମଧୁସୂଦନଙ୍କ ପ୍ରତିଭା ବିକଶିତ ହେବାରେ ସାହାଯ୍ୟ କରିଛି । ପୁରୀ ଜିଲ୍ଲା ସ୍କୁଲରେ ମଧୁ ଅଧ୍ୟୟନ ସମୟରେ କବି ରାଧାନାଥ ଥିଲେ ଜଣେ ଉଚ୍ଚକୋଟିର ଶିକ୍ଷକ । ସାହିତ୍ୟ, ଗଣିତ, ସଂସ୍କୃତ, ଇଂରାଜୀ, ଇତିହାସ, ଭୂଗୋଳ ଆଦି ବିଷୟରେ ମଧୁଙ୍କ ଦକ୍ଷତା ଦେଖି ଶିକ୍ଷକ ରାଧାନାଥ ମୁଗ୍ଧ ହୋଇଥିଲେ । ରାଧାନାଥଙ୍କ ଆଦର୍ଶରେ ମଧୁ ଅନୁପ୍ରାଣିତ ହେବା ସଙ୍ଗେ ସଙ୍ଗେ ତାଙ୍କ ଶିକ୍ଷାଦାନ ପଦ୍ଧତିରେ ଶ୍ରେଣୀ ପ୍ରକୋଷ୍ଠରେ ବେଶ୍ ତଲ୍ଲିନ ହୋଇଯାଉଥିଲେ । ପୁରୀ ଜିଲ୍ଲା ସ୍କୁଲରେ ରାଧା ମଧୁଙ୍କ ମିଳନ ମଣି କାଞ୍ଚନର ସଂଯୋଗ ଘଟିଥିଲା କହିଲେ ବାର୍ତ୍ତାର ଅପଳାପ ହେବନାହିଁ ।

ବିଦ୍ୟା–ବିନୟ–ସଦାଚାର ଉନ୍ନତ ଚରିତ୍ରବତ୍ତା ଯୋଗୁଁ ମଧୁ ସାଙ୍ଗସାଥୀ ଗହଣରେ ବେଶ ପ୍ରିୟପାତ୍ର ଥିଲେ । ଉଦାର ସୁଲଭ ଗୁଣ ଫଳରେ ଶ୍ରେଣୀ ଶିକ୍ଷକଙ୍କ ଦୃଷ୍ଟି ଆକର୍ଷଣ କରିବା ସଙ୍ଗେ ସଙ୍ଗେ ସ୍କୁଲ ପରିଦର୍ଶକଙ୍କ ସାନିଧ୍ୟଲାଭ କରିଥିଲେ । ସେତେବେଳେ ବ୍ରାହ୍ମଣ–ସମାଜରେ ବାଲ୍ୟବିବାହ ପ୍ରଥା ପ୍ରଚଳିତ ଥିଲା । ପରମ୍ପରା ଅନୁସାରେ ଏଣ୍ଟ୍ରାନ୍ସ୍ ପାସ୍ ପୂର୍ବରୁ ମଧୁସୂଦନଙ୍କୁ ବିବାହ କରିବାକୁ ହୋଇଥିଲା । କାକଟପୁର ନିକଟବର୍ତ୍ତୀ ମୁଗେଇଓଡ ପହଙ୍ଗା ଗ୍ରାମର ଯମେଶ୍ୱର ଦାଶଙ୍କ କନ୍ୟା କମଳାଙ୍କୁ ସେ ବିବାହ କରିଥିଲେ । ୧୮୮୮ ଖ୍ରୀଷ୍ଟାବ୍ଦରେ ମଧୁସୂଦନ ଏଣ୍ଟ୍ରାନ୍ସ ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ ।

ଅଧ୍ୟୟନ ଲିପ୍‌ସା ମଧୁସୂଦନଙ୍କର ପ୍ରବଳ ଥିଲା । ନିମ୍ନଗାମୀ ନିର୍ଝରୀଣି, ଦୃଢମନା ମନସ୍ୱୀଙ୍କୁ ଜଗତରେ କେହି ପ୍ରତିରୋଧ କରିପାରିବେ ନାହିଁ । ଦୁର୍ଗମ ପଥରେ ସ୍ଥିର ନିଶ୍ଚିତ ଲକ୍ଷ୍ୟ ନେଇ ମଧୁ ଶଗଡ ଗାଡିରେ ବୁଢୀମାଆଙ୍କୁ ସାଙ୍ଗରେ ଘେନି ଉଚ୍ଚଶିକ୍ଷା ନିମନ୍ତେ କଟକ ଯାତ୍ରା କଲେ, ବାଖରାବାଦ୍‌ରେ ଅବସ୍ଥାନ କଲେ । ଏକାଗ୍ରତା ଓ କଠିନ ପରିଶ୍ରମ ଫଳରେ ରେଭେନ୍ସା କଲେଜର ମଧୁ ବାଇଶ ବର୍ଷ ବୟସରେ ଏଫ୍.ଏ. ପାଶ୍ କଲେ ।

ଛାତ୍ରାବସ୍ଥାରେ ମଧୁ ସରଳ ନିରାଡମ୍ବର ଜୀବନ ଯାପନ କରୁଥିଲେ । ଏକନିଷ୍ଠ ସାଧନା, ଉଚ୍ଚକାମନା ତାଙ୍କ ଛାତ୍ର ଜୀବନକୁ ମହନୀୟ କରି ଗଢି ତୋଳିଥିଲା । ଆର୍ଥିକ ଦୁରବସ୍ଥା ଭିତରେ ସେ ଦୃଢ ଆତ୍ମପ୍ରତ୍ୟୟର ସହ ଜୀବନଯାପନ କରୁଥିଲେ । ସେ ଥିଲେ କାଉଁରିଆ କାଠି, ଭାଙ୍ଗିଯିବେ ପଛେ, ନଇଁବେ ନାହିଁ । ତିଳାର୍ଦ୍ଧ ଆତ୍ମ ମର୍ଯ୍ୟାଦା ଉପରେ ଆଞ୍ଚ ଆସିଲେ ତତ୍‌କ୍ଷଣାତ ସେଥିରୁ ସେ ପଶ୍ଚାତପଦ ହେଉଥିଲେ ।

ଜଗବନ୍ଧୁ ସିଂହ ଓ ଅଭିରାମ ଭଞ୍ଜଙ୍କ ସହିତ ଆଇନ୍ ଅଧ୍ୟୟନ ପାଇଁ ମଧୁ କଲିକତା ଯାତ୍ରା କରିଥିଲେ । ପରିତାପର ବିଷୟ ଟ୍ରାମ୍‌ରୁ ପଡି ତାଙ୍କର ଗୋଡ ଜଖମ ହୋଇଯାଇଥିଲା । ଫଳରେ ବାତଜ୍ୱରରେ ଆକ୍ରାନ୍ତ ହୋଇଥିଲେ । ଜଣେ ମହାପୁରୁଷଙ୍କ ପରାମର୍ଶରେ ସେ ଆରୋଗ୍ୟ ଲାଭ କଲେ । ଜଗବନ୍ଧୁ ସିଂହ ଲ ପାସ କଲେ । ମଧୁସୂଦନ ଅକୃତକାର୍ଯ୍ୟ ହୋଇ ଫେରି ଆସିଲେ ।

ଖୋର୍ଦ୍ଧା ସବ୍‌ଡିଭିଜନ୍‌ରେ ପଚାଶ ଟଙ୍କା ବେତନରେ ସ୍କୁଲ ସବ୍‌ଇନ୍ସପେକ୍ଟର ଭାବରେ ମଧୁ ନିଯୁକ୍ତି ଲାଭ କଲେ । ସେତେବେଳେ ଖୋର୍ଦ୍ଧାରେ ଛ'ଟି ମାଇନର ସ୍କୁଲ, ଛ'ଟି ଭର୍ଣ୍ଣାକୁଲାର ସ୍କୁଲ, କେତେକ ନିମ୍ନ ପ୍ରାଥମିକ ସ୍କୁଲ ଗଢି ଉଠିଥିଲା । ସବ୍‌ଇନ୍‌ସପେକ୍ଟରଙ୍କୁ ତାଙ୍କ ସ୍କୁଲ ପରିଦର୍ଶନ କାର୍ଯ୍ୟରେ ସାହାଯ୍ୟ

କରିବା ଲାଗି ତିନିଜଣ ଇନିସ୍‌ପେକ୍ଟିଂ ପଣ୍ଡିତ ନିଯୁକ୍ତ ଥିଲେ । ସେସମୟରେ ମଧୁସୂଦନ ବଳଦ ଗାଡିରେ ସ୍କୁଲ ସମୂହ ପରିଦର୍ଶନ କରିବାକୁ ଯାଉଥିଲେ । ପ୍ରତି ପଦେ ପଦେ ବିପଦର ସମ୍ମୁଖୀନ ହୋଇଥିଲେ ବି ସେ ଥିଲେ କର୍ତ୍ତବ୍ୟରେ ହିମାଳୟ ପରି ଅଚଳ ଓ ଅଟଳ । ସମୟାନୁବର୍ତ୍ତିତା, ସ୍ପଷ୍ଟବାଦୀତା ତାଙ୍କୁ ଜଣେ ଆଦର୍ଶ ପରିଦର୍ଶକ ଭାବରେ ଗଢି ତୋଳିଥିଲା ।

କବିବର ରାଧାନାଥ ରାୟ ସେତେବେଳେ ସ୍କୁଲ ଇନ୍‌ସପେକ୍ଟର । ଖୋର୍ଦ୍ଧା ସ୍କୁଲ ପରିଦର୍ଶନରେ ଯାଇ ରାଧାନାଥ, ମଧୁସୂଦନଙ୍କ ବିଦ୍‌ବତ୍ତା ପ୍ରଚଣ୍ଡ ପ୍ରତିଭା, କଠୋର କର୍ତ୍ତବ୍ୟନିଷ୍ଠାକୁ ହୃଦୟଙ୍ଗମ କରିଥିଲେ ଓ ଗଭୀର ପ୍ରୀତ ହୋଇ ତାଙ୍କୁ କଟକ ଟ୍ରେନିଂ ସ୍କୁଲକୁ ସେକେଣ୍ଡ ମାଷ୍ଟର ଭାବରେ ବଦଳି କରିଥିଲେ । ଗୁଣ ଚିହ୍ନେ ଗୁଣିଆଁ ନ୍ୟାୟରେ ରାଧାନାଥ ଥିଲେ ଅନନ୍ୟ ପ୍ରତିଭା ପୂଜକ ଓ ଗୁଣ ଚିହ୍ନରା ଗ୍ରାହକ ।

ଭକ୍ତକବି ମଧୁସୂଦନ ସେତେବେଳେ କଟକ ଟ୍ରେନିଂ ସ୍କୁଲର ପ୍ରଧାନ ଶିକ୍ଷକ । ଉଭୟ ବ୍ୟକ୍ତିଦ୍ୱୟ ମହନୀୟ ମିଳନ । ଦାଶ ମହାଶୟ ରାଓଙ୍କ ସଂସ୍ପର୍ଶରେ ଆସି ସାହିତ୍ୟ ସୃଷ୍ଟିରେ ମନୋନିବେଶ କଲେ । ଟ୍ରେନିଂ ସ୍କୁଲରେ ମଧୁସୂଦନ ଦାଶ ଶିକ୍ଷକ ଥିଲେ । ଥରେ କ୍ଲାସରେ ପିଲାମାନେ ଗୋଳମାଳ କରୁଥିବାରୁ ଭକ୍ତକବି ମଧୁସୂଦନ ବିରକ୍ତ ହୋଇ ତାଙ୍କୁ କହିଥିଲେ 'ତୁମ୍ଭେ ବଡ ମୂଢ଼' । କିନ୍ତୁ ସ୍କୁଲ ପରେ ତାଙ୍କ ମନରେ କଷ୍ଟ ହୋଇଥିବ ଭାବି ତାଙ୍କୁ କ୍ଷମା ମାଗିବା ଭଳି କହିଥିଲେ 'ଶ୍ରେଣୀ ମଧ୍ୟରେ ସେପରି କହିବା ଦ୍ୱାରା ତୁମ୍ଭେ ମୋ'ପ୍ରତି ଅସନ୍ତୁଷ୍ଟ ହୋଇଥିବ । ବାହାରେ କୋପ ଓ ଭିତରେ ଦୟା ଶିକ୍ଷକର ପ୍ରଧାନ ଗୁଣ । କିନ୍ତୁ ମୋ' ପରି ହଠାତ୍ ରାଗିବା ଠିକ୍ ନୁହେଁ ।

ଭକ୍ତକବି ମଧୁସୂଦନ ରାଓଙ୍କର ମଧୁସୂଦନ ଦାଶଙ୍କ ପ୍ରତି କିପରି ଅତୁଟ ସ୍ନେହ ଓ ସୁସମ୍ପର୍କ ଥିଲା ତାହା ନିମ୍ନ ସଂଳାପରୁ ସହଜରେ ଅନୁମାନ କରାଯାଏ । 'ମୁଁ ତୁମ୍ଭଙ୍କୁ ଦେଖିଲେ ମନେ କରେ, ମୋର ପୀଡା କମିଗଲା । 'ଆପଣ ମୋତେ ଭଲପାନ୍ତି, ତାହାହିଁ ଏହାର କାରଣ ।' ''ସ୍ୱଭାବତଃ ମୁଁ ତୁମ୍ଭ ପ୍ରତି ଆକୃଷ୍ଟ । ତୁମ୍ଭେ ବ୍ରାହ୍ମଣ, ମୁଁ ବ୍ରାହ୍ମ, ତୁମ୍ଭେ ଯୁବକ, ମୁଁ ବୃଦ୍ଧ । ଏହା କେବଳ ହୃଦୟର ଆକର୍ଷଣ'' ।

କବିବର ରାଧାନାଥ ରାୟଙ୍କ ଅସମ୍ପୂର୍ଣ୍ଣ 'ମହାଯାତ୍ରା' ଖଣ୍ଡକାବ୍ୟ ଘେନି ଶାସକ ଇଂରେଜ ସରକାର ତାଙ୍କ ଉପରେ କ୍ଷୁବ୍ଧ ହୋଇଥିଲେ । ସେହି ସଂଶୟ ଓ କ୍ଷୋଭ ଦୂର କରିବା ଲାଗି ରାଧାନାଥଙ୍କ ଅନୁରୋଧରେ ମଧୁସୂଦନ ଦାଶ 'ମହାଯାତ୍ରା'ର କେତେକାଂଶ ଇଂରାଜୀରେ ଅନୁବାଦ କରିଥିଲେ । ତାହା ସରକାରଙ୍କ ନିକଟକୁ ପ୍ରେରିତ ହୋଇଥିଲା ଓ ସଂଶୟର ବାତାବରଣ ପରିଚ୍ଛନ୍ନ ହୋଇଥିଲା ।

ରାଧାନାଥ ରାୟଙ୍କ ସୁପାରିଶ ଫଳରେ ମଧୁସୂଦନ ଏକଶତ ଟଙ୍କା ବେତନରେ ପୁରୀ ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ନିଯୁକ୍ତି ଲାଭ କଲେ । ନିଜର ପ୍ରିୟ ଛାତ୍ରକୁ ହେଡ୍‌ମାଷ୍ଟର ଭାବେ ପାଇ ପଣ୍ଡିତ ସଦାଶିବ କାବ୍ୟକଣ୍ଠ ଅତୀବ ଆନନ୍ଦିତ ହେଲେ । ଅଫିସ୍‌ଘରେ ପଣ୍ଡିତ ମହାଶୟ ପହଞ୍ଚିଲେ ମଧୁସୂଦନ ପୂର୍ବତନ ଶିକ୍ଷକ ଓ ଅଭିଭାବକଙ୍କୁ ସମ୍ମାନ ପ୍ରଦର୍ଶନ କରିବା ଲାଗି ଛିଡା ହେଉଥିଲେ । ନିଜ ବସାରେ ଗୁରୁ ଉପସ୍ଥିତ ହେଲେ ତାଙ୍କୁ ଉଚ୍ଚତର ସମ୍ମାନ ପ୍ରଦାନ କରୁଥିଲେ । ଆସନର ମର୍ଯ୍ୟାଦା ରକ୍ଷା ଲାଗି ସେ ସର୍ବଦା କହୁଥିଲେ 'ଆପଣଙ୍କ ସମ୍ମାନ ରକ୍ଷା କରିବା ମୋର କର୍ତ୍ତବ୍ୟ' । ଆପଣ କେବେ ହେଲେ ମୋର ମାନ ପ୍ରତି ମନ ଦେବେ ନାହିଁ ।

ମଧୁସୂଦନ ଜିଲ୍ଲା ସ୍କୁଲରେ ହେଡମାଷ୍ଟର ଥିଲା ବେଳେ ମୋକ୍ତାର ରାମଚନ୍ଦ୍ର ଦାଶଙ୍କ ଗୃହରେ ଗୋପବନ୍ଧୁଙ୍କ ଅନୁଷ୍ଠିତ ଆଲୋଚନା ସଭାରେ ଯୋଗ ଦେଉଥିଲେ । ସେ ବ୍ରାହ୍ମଣ ସମିତି'ର ପୃଷ୍ଠପୋଷକ ଥିଲେ । ପୁରୀରେ 'ଜଗନ୍ନାଥ ପ୍ରେସ୍' ନାମକ ଛାପାଖାନା ସ୍ଥାପନ କରିଥିଲେ । ଟ୍ରାନ୍ସଲେଟର ଚାକିରିଟି ଖାଲି ଥିଲା । ସେସମ୍ପର୍କରେ ସେ କଲିକତା ଯାଇ ଲାଟ୍ ସାହେବଙ୍କ ସାଙ୍ଗେ ସାକ୍ଷାତ କଲେ ଓ ସେହି ଚାକିରିରେ ୧୯୧୧ ଖ୍ରୀଷ୍ଟାବ୍ଦରେ ଯୋଗ ଦେଲେ ।

ମଧୁସୂଦନ ଦାଶ ୧୯୧୩ରୁ ୧୫ ମସିହା ଯାଏଁ ଉତ୍କଳ ସାହିତ୍ୟ ସମାଜର ସମ୍ପାଦକ ଥିଲେ । ନିଜର ଦାୟିତ୍ୱ ସୁଚାରୁ ରୂପେ ସେ ସମ୍ପାଦନ କରୁଥିଲେ । ସଂସ୍କୃତି ପ୍ରତି ଉତ୍କଳୀୟମାନଙ୍କ ଉଦାସୀନତା ଓ ଉତ୍କଳ ସାହିତ୍ୟ ସମାଜର ଦୁରବସ୍ଥା ଦେଖି ସେ ପ୍ରକାଶ କରିଥିଲେ–

''ସମାଜର ଉଦ୍ଦେଶ୍ୟ ସାଧନପକ୍ଷେ ଅର୍ଥ ଓ ଅଧ୍ୟବସାୟ ଏ ଦୁଇ ପ୍ରଧାନ ଅବଲମ୍ବନ । ଯେବେ ଜାତୀୟ ଜୀବନ ଓ ସଭ୍ୟତାରେ ଜାତୀୟ ସାହିତ୍ୟ ଉଚ୍ଚତମ ଆସନ ଲାଭ କରିବାର ଉପଯୁକ୍ତ ବୋଲି ବିବେଚିତ ହୁଏ ଏବଂ ସମବେତ ଚେଷ୍ଟାରେ ଜାତୀୟ ସାହିତ୍ୟର ଉନ୍ନତି ସମ୍ଭବପର ବୋଲି ସ୍ୱୀକାର କରାଯାଏ, ତେବେ ଦେଶର ଶିକ୍ଷିତ ବ୍ୟକ୍ତିମାନେ ଉଦାସୀନତା ପରିହାର କରି ଏହି ସମାଜକୁ ଅର୍ଥ ସାହାଯ୍ୟ କରନ୍ତୁ ଏବଂ ଅଧ୍ୟବସାୟ ସହକାରେ ସାହିତ୍ୟର ଉନ୍ନତି କରିବା ନିମନ୍ତେ ବଦ୍ଧପରିକର ହୁଅନ୍ତୁ ।''

'ଉତ୍କଳ ସାହିତ୍ୟ ସମାଜ'ର ସ୍ଥାୟୀଗୃହ ଓ ପାଠାଗାରର ଅଭାବ ଅନୁଭବ କରି ସେ ଲେଖିଥିଲେ –

'କେବଳ କେତେଗୁଡ଼ିଏ ଅଧିବେଶନ କରି ତହିଁରେ କେତେଗୁଡ଼ିଏ ପ୍ରବନ୍ଧ ପାଠ କଲେ ଉଦ୍ଦେଶ୍ୟ ସିଦ୍ଧ ହେବନାହିଁ । ସାହିତ୍ୟାଲୋଚନା ଲାଗି ବର୍ତ୍ତମାନ ଅବସ୍ଥାରେ ଏହି କଟକ ନଗରରେ ଗୋଟିଏ କେନ୍ଦ୍ରସ୍ଥଳ ଆବଶ୍ୟକ ଏବଂ ସେଠାରେ କେତେଜଣ ଲୋକ ନିୟମିତ ଭାବରେ ସମବେତ ହେବା ଏବଂ ନାନାପ୍ରକାର ସାହିତ୍ୟିକ ଆଲୋଚନା କରିବା ମଧ୍ୟ ପ୍ରୟୋଜନୀୟ । ଏହି କେନ୍ଦ୍ର ନିମିତ୍ତ ଗୋଟିଏ ସ୍ୱତନ୍ତ୍ର ଗୃହ ଏବଂ ତହିଁ ସଙ୍ଗେ ଏକ ପୁସ୍ତକାଗାର ରହିବା ଏକାନ୍ତ ଆବଶ୍ୟକ । ଶିକ୍ଷିତ ଯୁବକ ସଭ୍ୟମାନଙ୍କୁ ଘେନି କେତେଜଣ ପ୍ରବୀଣ ଏବଂ ବିଜ୍ଞ ବ୍ୟକ୍ତିଙ୍କର ବିବିଧ ସାହିତ୍ୟିକ ବିଷୟରେ ଆଲୋଚନା କରିବା ବାଞ୍ଛନୀୟ । ଯେବେ ଭବିଷ୍ୟତରେ ଏହି ପନ୍ଥା ଅନୁସୃତ ହୁଏ, ତେବେ ଉଦ୍ଦେଶ୍ୟଗୁଡ଼ିକ ସାଧିତ ହେବା ସମ୍ଭବପର ।

ଏହି କ୍ଷୋଭ ପ୍ରକାଶ ପରେ ପରେ ୧୯୧୬ରେ ଉତ୍କଳ ସାହିତ୍ୟ ସମାଜ'ର ଗୃହ ଓ ଶ୍ରୀରାମଚନ୍ଦ୍ର ଭବନ ନିର୍ମାଣର ଆୟୋଜନ ହୋଇଥିଲା ।

ପ୍ରଜ୍ଞାଦୀପ୍ତ ପ୍ରତିଭା ଓ ପ୍ରତିଭାଦୀପ୍ତ ପ୍ରଜ୍ଞା ବହୁଶାସ୍ତ୍ର ଦର୍ଶିତା, ଜ୍ଞାନର ଗଭୀରତା, ଚିନ୍ତାର ମୌଳିକତା ଓ ମନସ୍ୱିତା, ବିନୟ ଯୋଗୁଁ ସେସମୟର ସଜ୍ଜନମଣ୍ଡଳୀ ମଧୁସୂଦନଙ୍କୁ ଉଚ୍ଚସ୍ଥାନ ଦେଇଥିଲେ । ସେ ଭକ୍ତକବି ମଧୁସୂଦନଙ୍କ ଗ୍ରନ୍ଥାବଳୀ ଓ ଐତିହାସିକ କୃପାସିନ୍ଧୁ ମିଶ୍ରଙ୍କ କୋଣାର୍କ ପରି ଶ୍ରେଷ୍ଠ ଗ୍ରନ୍ଥମାନଙ୍କରେ ପାଣ୍ଡିତ୍ୟପୂର୍ଣ୍ଣ ମୁଖବନ୍ଧମାନ ଲେଖି ନିଜସ୍ୱ ବିଦ୍‌ବତ୍ତା ଓ ପ୍ରତିଭାର ପରିଚୟ ପ୍ରଦାନ କରିଥିଲେ ।

ମଧୁସୂଦନ ରାଓଙ୍କ ରଚନାର ବୈଶିଷ୍ଟ୍ୟ ଓ ମହତ୍ତ୍ୱ ସରଳ ଓ ସୁନ୍ଦର ଭାବରେ ସେ ମୁଖବନ୍ଧରେ ଉପସ୍ଥାପନ କରିଥିଲେ । ତାଙ୍କ ଗଦ୍ୟ ରଚନା କିପରି ସାରଗର୍ଭକ, ଉଚ୍ଚାଙ୍ଗ ଭାବଦ୍ୟୋତକ, ଶୈଳୀ କିପରି ସଂଯତ ଓ ପ୍ରାଞ୍ଜଳ ତାହା ନିମ୍ନ ଉଦ୍ଧୃତିରୁ ସ୍ପଷ୍ଟ ଅନୁମିତ । ମଧୁସୂଦନଙ୍କ ଭାଷାରେ– ''ଉପନିଷଦ କହେ ଅସୀମ ବା ଅନନ୍ତଙ୍କୁ ଆମ୍ଭେମାନେ ପ୍ରତ୍ୟକ୍ଷ କରି ପାରୁନାହିଁ । ବାକ୍ୟ ଓ ମନ ତାହାଙ୍କୁ ନପାଇ ଫେରିଆସେ ।'' କିନ୍ତୁ ଏହି ଫେରି ଆସିବା କଥା ଯଦି ଶେଷ କଥା ହୋଇଥାନ୍ତା, ତେବେ ଅନନ୍ତ ସହିତ ଆମ୍ଭମାନଙ୍କର କୌଣସି ସମ୍ପର୍କ ନଥାନ୍ତା, କେବେ ହେଁ ତାଙ୍କ ସହିତ କୌଣସି କାରବାର ଚଳନ୍ତା ନାହିଁ । ସେହି ହେତୁରୁ ଉପନିଷଦ ଖୋଜି ଖୋଜି ତାକୁ ଧରିବା ଲାଗି ଏକ ପନ୍ଥା ପାଇଅଛି । ସେ ପନ୍ଥାଟି କ'ଣ ? ତାହା ଆନନ୍ଦ ଅର୍ଥାତ ପ୍ରେମ । ପ୍ରୀତି ବା ପ୍ରେମ ବଳରେ ଆମ୍ଭେମାନେ ଅନନ୍ତଙ୍କୁ ଏକାବେଳକେ ଅନ୍ତରତମ ସ୍ୱରୂପରେ ଉପଲବ୍ଧ କରୁଁ । ଯୁକ୍ତିତର୍କ ପ୍ରଭୃତି ଅନ୍ୟ ଯେକୌଣସି ମାର୍ଗରେ ଯାଅ, ଅନନ୍ତର ଉପଲବ୍ଧି ହେବନାହିଁ । ଏକ ପର୍ଦାପରେ ଅନ୍ୟ ପର୍ଦା ଆସି ଉପସ୍ଥିତ ହୋଇ ଦୃଷ୍ଟିପଥକୁ ଅବରୋଧ କରିବ । କିନ୍ତୁ ପ୍ରୀତି ମାର୍ଗରେ ଗଲେ ଆମ୍ଭେମାନେ ଦେଖିବା, ଗୋଟିଏ ପର୍ଦାଆସି ପଡ଼ିଲା ବେଳକୁ ତାହାର ଏକ ପାଖରେ ସୀମା, ଅନ୍ୟ ପାଖରେ ଅସୀମ । ଯେଉଁ ପାଖଟିରେ ସୀମାଅଛି, ସେଠାରେ ଆମ୍ଭେମାନେ ଚକ୍ଷୁରେ ରୂପ ଦେଖିବା, ଅନ୍ୟତ୍ର ଭାବଦ୍ୱାରା ରସର ଉପଲବ୍ଧି କରିପାରିବା । ରୂପକୁ ଖଣ୍ଡବିଖଣ୍ଡ କରାଯାଇପାରେ, କିନ୍ତୁ ରସ କେବେ ଖଣ୍ଡବିଖଣ୍ଡ ହୋଇପାରେ ନାହିଁ । ଏହି ରସର ଯଥାର୍ଥ ଆସ୍ୱାଦନ ଲାଭ କରିବା ନିମିତ୍ତ ଅର୍ଥାତ୍ ଅନନ୍ତ ଲାଭ ଲାଗି ମନୁଷ୍ୟ ଅସାଧ ସାଧନ କରିବାକୁ ପ୍ରସ୍ତୁତ ହୁଏ, କାରଣ ସେ ସେଠାକୁ ଗଲେ ସ୍ୱୟଂ ଭୂମାଙ୍କୁ ଲାଭକରେ– ଯତୋବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ ।'

(ମଧୁସୂଦନ ଗ୍ରନ୍ଥାବଳୀ 'ଭୂମିକା'୨୪.୧୧.୧୯୧୫)

ସତ୍ୟବାଦୀ ପଞ୍ଚସଖା ଗୋଷ୍ଠୀର ଗବେଷକ କୃପାସିନ୍ଧୁ ମିଶ୍ରଙ୍କ 'କୋଣାର୍କ' ପୁସ୍ତକରେ ସେ ୨୧ ପୃଷ୍ଠାବ୍ୟାପୀ ଏକ ଗବେଷଣାମୂଳକ ମୁଖବନ୍ଧ ପ୍ରକାଶ କରିଥିଲେ । ଗଭୀର ଅଧ୍ୟୟନ, ସୂକ୍ଷ୍ମ ବିଶ୍ଳେଷଣ ତାଙ୍କ ପରିପକ୍ୱ ପ୍ରଜ୍ଞା ଓ ଗବେଷଣାର ସୁସ୍ପଷ୍ଟ ପରିଚୟ ଯଥାର୍ଥରେ ଶେଷୋକ୍ତ ପ୍ରବନ୍ଧରେ ସେ ପ୍ରକାଶ କରିଛନ୍ତି ।

''ପ୍ରତାପରୁଦ୍ରଙ୍କ ସମୟରୁ ଉତ୍କଳ ଭଗବତ–ପ୍ରେମର ଯେଉଁ ଉତ୍ତୁଙ୍ଗ ଲହରୀ ଉତ୍କଳର ସର୍ବଜାତିକୁ ପ୍ଲାବିତ କରି ଆସୁଥିଲା, ଓଡ଼ିଶାର ସ୍ୱାଧୀନତା ବିଲୁପ୍ତ ହେବା ସଙ୍ଗେ ସଙ୍ଗେ ତାହା ଅଜ୍ଞାନ ତମୋମୟ ସମୁଦ୍ର ଗର୍ଭରେ ବିଲୀନ ହୋଇଗଲା । ସର୍ବସାଧାରଣରେ ଆଧ୍ୟାତ୍ମିକ ଭାବର ପ୍ରଚାର ସେହି ସମୟରୁ ବିଲୋପ ଭଜିଲା ଏବଂ ତହି ସଙ୍ଗେ ସାଧାରଣ ଶିକ୍ଷା ପ୍ରସାରର ମାର୍ଗ ସମ୍ପୂର୍ଣ୍ଣ ହୋଇଆସି ମୁସଲମାନ–ରାଜତ୍ୱର ଶେଷ ସମୟକୁ ଉତ୍କଳର ଜନସାଧାରଣ ଘୋର ଅଜ୍ଞାନ ତିମିର କୂପରେ ମଣ୍ଡୁକବତ୍ ଆବଦ୍ଧ ରହିଲେ ।''

'ଓଡ଼ିଆ ଭାଷା ଓ ଓଡ଼ିଆ ସାହିତ୍ୟ' ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶିତ ତାଙ୍କର ଏକ ଦୀର୍ଘ ପ୍ରବନ୍ଧ । ଓଡ଼ିଆ ସାହିତ୍ୟର ବହୁ ଇତିହାସ ରଚିତ ହେବା ପରେ ଶ୍ରୀ ଦାଶଙ୍କ ମତର ମୌଳିକତା ଏବେ ବି ପ୍ରଣିଧାନଯୋଗ୍ୟ । ଯଥାର୍ଥରେ ପ୍ରାବନ୍ଧିକ ମଧୁସୂଦନଙ୍କ ଭାଷାରେ– ପାଶ୍ଚାତ୍ୟ ସାହିତ୍ୟ ପାଠ କଲେ ଦେଖାଯାଏ ଯେ ଜଣେ କବି ଯେଉଁ ପନ୍ଥା ଅବଲମ୍ବନ କରିଛନ୍ତି,

ଅନ୍ୟଜଣେ ତାହାର ଅନୁସରଣ କରିନାହାଁନ୍ତି । ସେରଙ୍କ ପଦ୍ୟର ଭାବ ସ୍ପେନ୍ସରଙ୍କର ନାହିଁ କିମ୍ବା 'ଫେୟାରକ୍ୱିନ୍'ର ସୌନ୍ଦର୍ଯ୍ୟ' 'ପାରାଡାଇଜ୍ ଲଷ୍ଟ'ରେ ନାହିଁ । ମାତ୍ର ଓଡ଼ିଆ କବିମାନଙ୍କର ବିଶେଷ ଲକ୍ଷଣ ଏହି ଯେ ସେମାନେ ପୂର୍ବ ପ୍ରଦର୍ଶିତ କୌଣସି ପଥ ନପାଇ ଅଗ୍ରସର ହୋଇନାହାନ୍ତି । କେବଳ ଓଡ଼ିଆ କବିମାନଙ୍କ ସମ୍ବନ୍ଧରେ ନୁହେଁ, ଆଧୁନିକ ଭାରତୀୟ ସମସ୍ତ ଭାଷାର ପୁରୁଣା କବିମାନଙ୍କ ସମ୍ବନ୍ଧରେ ଉକ୍ତ ମନ୍ତବ୍ୟ ପ୍ରଯୁଜ୍ୟ ।

ଦ୍ୱିତୀୟରେ ସମସ୍ତ ପୁରାତନ କବିତା ପ୍ରାୟ ଧର୍ମ ଭାବରେ ଅନୁପ୍ରାଣିତ । ଧର୍ମଭାବ ବ୍ୟତୀତ ଅନ୍ୟ ଭାବଯୁକ୍ତ ରଚନା ଅତ୍ୟଳ୍ପ ଦୃଷ୍ଟିଗୋଚର ହୁଏ । ତୃତୀୟରେ ସମସ୍ତ ପୁରାତନ କବିତା ସଂସ୍କୃତ ଆଦର୍ଶରେ ଲିଖିତ । ସଂସ୍କୃତ ଅଳଙ୍କାର ଗ୍ରନ୍ଥର ନିୟମ ଲଙ୍ଘନ କରି କେହି ଅନ୍ୟ ପଥରେ ଗମନ କରିନାହାନ୍ତି । ଚତୁର୍ଥରେ ସେ ସେହି ସମୟର ଲୋକମାନଙ୍କର ରୀତିନୀତି , ଭାବ ନିଜ କବିତାରେ ସମ୍ୟକ ଭାବରେ ପ୍ରକାଶ କରିନାହାନ୍ତି । ଅତଏବ ସାହିତ୍ୟ ପାଠ ଦ୍ୱାରା ଦେଶର ତଦାନିନ୍ତନ ଅବସ୍ଥା ଜାଣିବା ବିଷୟରେ ଅତିଅଳ୍ପ ସାହାଯ୍ୟ ମିଳୁଅଛି, ସ୍ଥୂଳରେ କହିବାକୁ ଗଲେ ଅନୁକରଣ ପ୍ରିୟତା ଓଡ଼ିଆ କବିମାନଙ୍କର ଗୋଟିଏ ପ୍ରଧାନକର୍ମ ଏହାର କାରଣ ଏହି ଯେ ଆଧୁନିକ ଭାରତୀୟ ଭାଷାଗୁଡ଼ିକ ସଂସ୍କୃତରେ ଯାହା ଥିଲା, ତାହାକୁ ଆପଣାର କରିବା ଲାଗି ଚେଷ୍ଟା କରିଛନ୍ତି ଏବଂ ସେହି ଚେଷ୍ଟାରେ ବହୁତ କାଳ ଅତିବାହିତ ହୋଇଯାଇଅଛି । 'ଓଡ଼ିଆ ଭାଷାର କ୍ରମବିକାଶ' ପ୍ରବନ୍ଧରେ ଓଡ଼ିଆ ଭାଷାର ଉତ୍ପତ୍ତି ଓ ବିକାଶ ସମ୍ବନ୍ଧରେ ସେ ସୁନ୍ଦର ଭାବରେ ସୂଚନା ପ୍ରଦାନ କରିଛନ୍ତି, ଓଡ଼ିଆ ଭାଷା ଆଲୋଚନା ପ୍ରସଙ୍ଗରେ ତାହା ଏବେ ବି ଦ୍ରଷ୍ଟବ୍ୟ । 'ମାଦଳାପାଞ୍ଜି' ଅଧ୍ୟୟନ ପରେ ମଧୁସୂଦନ ପନ୍ଦର ସର୍ଗ ବିଶିଷ୍ଟ 'ନୀଳାଚଳ' କାବ୍ୟ ରଚନା କରିଥିଲେ । ପିତାମହୀଙ୍କ ବିୟୋଗଜନିତ ଦାରୁଣ ଦୁଃଖରେ ମ୍ରିୟମାଣ ହୋଇ 'ନୀଳାଚଳ' କାବ୍ୟଟିକୁ ସମ୍ପୂର୍ଣ୍ଣ କରିପାରି ନଥିଲେ । ଦୀର୍ଘଦିନ ପରେ ଦୁଇଟି ସର୍ଗ ରଚନା କରି କାବ୍ୟଟିକୁ ଶେଷ କରିଥିଲେ । ଯଥାର୍ଥରେ ମଧୁସୂଦନ 'ନୀଳାଚଳ' କାବ୍ୟର ଉତ୍ସର୍ଗ ପତ୍ରରେ ପ୍ରକାଶ କରିଥିଲେ–

''ପରଂବ୍ରହ୍ମ ହେଲେ ହେଁ ଲୀଳାମୟ ଦାରୁବ୍ରହ୍ମ ନିଖିଳ ବ୍ରହ୍ମାଣ୍ଡର ନାଥ ପରମପିତା ପରମେଶ୍ୱର ଶ୍ରୀଶ୍ରୀଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଚରଣାବିନ୍ଦରେ ବହୁ ଆୟାସ ଗ୍ରଥିତ ଏହି ଅକିଞ୍ଚିତକର ପୁଷ୍ପଦାମ ସୌରଭବିହୀନ ହେଲେ ହେଁ, ହୃଦୟର ପ୍ରଗାଢ ଅନୁରାଗ ଓ ଭକ୍ତି ସହକାରେ ଗ୍ରନ୍ଥକାର ଅର୍ପଣ କରୁଅଛି ।' ଯେବେ ଏହା ସହୃଦୟ ପାଠକମାନଙ୍କ ଦ୍ୱାରା ଆଦୃତ ହେବାର ଦେଖେଁ ତେବେ ଏହାର ସଂଶୋଧିତ ଭବିଷ୍ୟତ ସଂସ୍କରଣ କରିବାକୁ ସାହସୀ ହେବି'' ।

ମଧୁସୂଦନଙ୍କ ଅନବଦ୍ୟ ଲେଖନୀସୃତ 'ନୀଳାଚଳ' କାବ୍ୟ ଓଡ଼ିଆ ଭାଷା ସାହିତ୍ୟକୁ ଅନ୍ୟତମ ଅନୁପମ ଅଭିନଭ ଅର୍ଘ୍ୟ । ଧର୍ମ ଓ ମୋକ୍ଷ ଭାବର ସଂବାହକ 'ନୀଳାଚଳ' କାବ୍ୟ । କାବ୍ୟର ଭାଷା ସ୍ୱତନ୍ତ୍ର ଭାବ ଗୁରୁଗମ୍ଭୀର । ଭାରତୀୟ ଧର୍ମ, ସଂସ୍କୃତି, ଅବବୋଧର କମନୀୟ କଳା କୋଣାର୍କ 'ନୀଳାଚଳ' । 'ଜୀବନୀ ଓ ଜୀବନ' ଗ୍ରନ୍ଥରେ ପ୍ରଫେସର ଡକ୍ଟର କୁଞ୍ଜବିହାରୀ ଦାଶ ମଧୁସୂଦନଙ୍କ 'ନୀଳାଚଳ' କାବ୍ୟ ସମ୍ପର୍କରେ ଯଥାର୍ଥରେ ପ୍ରକାଶ କରିଛନ୍ତି । କେଉଁଠି କାବ୍ୟ ଭାବୋତ୍କର୍ଷରେ ଅତି ଉର୍ଦ୍ଧ୍ୱକୁ ଉଠିଯାଇନାହିଁ, କେଉଁଠି ଅପକର୍ଷ ହେତୁରୁ ପଡ଼ିଯାଇନାହିଁ । ଏହାକୁ ଏକ ବୌଦ୍ଧିକ କାବ୍ୟ ଶ୍ରେଣୀର ଅନ୍ତର୍ଭୁକ୍ତ କରାଯାଇପାରେ । ଶେଷ ଦୁଇଟି ସର୍ଗ ପ୍ରୟାସକ୍ଲିଷ୍ଟ ପରେ ଗଦ୍ୟ ହୋଇଯାଇଅଛି, କେବଳ ଯାହା ପଦ ପକାଯାଇଛି ମାତ୍ର ।

ଦାଶ କାବ୍ୟ ରଚନାରେ ରାଓପଚ୍ଛୀ । କିନ୍ତୁ ଦାଶଙ୍କ ପରି ରାଓଙ୍କର ଏତାଦୃଶ ବୃହତ କାବ୍ୟ ନାହିଁ । ରାଓ ଖଣ୍ଡ କବିତାର କବି । ଦାଶ କାବ୍ୟର କବି । ଦାଶ ରାଓଙ୍କ ପରି ବିଦ୍ୱାନ ଓ ବିଦ୍‌ଗ୍‌ଧ । ଉଭୟେ ଜ୍ଞାନ କର୍ମ ସମ୍ବଳିତ ପ୍ରାଚୀନ ଭାବଧାରାର ଉଦ୍‌ବୋଧକ, ମାନବ ଚରିତ୍ରକୁ ସେହି ଦିଗରେ ଉନ୍ନତ ଓ ମହାନ୍ କରିବାରେ ବ୍ରତୀ ।

ବୃଦ୍ଧ ଶବର ବୈଷ୍ଣବ ବିଶ୍ୱାବସୁଙ୍କ ଶବରଦ୍ୱୀପରେ ବାସ, ବ୍ରାହ୍ମଣ ବିଦ୍ୟାପତିଙ୍କ ଉକ୍ତ ସ୍ଥାନରେ ଉପସ୍ଥିତ ଓ ଲଳିତା ସହ ବିବାହ, ନୀଳମାଧବଙ୍କ ମଥା ବ୍ୟଥାରେ ବିଶ୍ୱାବସୁଙ୍କ ସେବା ଓ ମାଧବୀର ମାଧବଙ୍କ ଆରୋଗ୍ୟ ଲାଭ ଲାଗି ପ୍ରାଣ ପ୍ରତିଦାନ, ନୃସିଂହ ମୂର୍ତ୍ତିଙ୍କ ଭୀଷଣ ରୂପଧାରଣ ଓ ସଂହୃତି, ଇନ୍ଦ୍ରଦ୍ୟୁମ୍ନଙ୍କ ଅଶ୍ୱମେଧଯଜ୍ଞ ଅନୁଷ୍ଠାନରେ ଦେଶ ଦେଶାନ୍ତରରେ ଅଶ୍ୱମୋଚନ, ଅଶ୍ୱମେଧର ପୂର୍ଣ୍ଣାହୂତି କାଳରେ ବାଙ୍କି ମୁହାଁଣରେ ଦାରୁବ୍ରହ୍ମର ଉପସ୍ଥିତି, ବୃଦ୍ଧ ମହାରଣାଙ୍କ ମୂର୍ତ୍ତି ନିର୍ମାଣ, ସୁଭଦ୍ରାଙ୍କ ବିଗ୍ରହରେ ଗୁଣ୍ଡିଚା ଦେବୀଙ୍କ ଲୟ, ବୃଦ୍ଧଦେବଙ୍କର ଜଗନ୍ନାଥ ରୂପ ଧାରଣ ପ୍ରଭୃତି 'ନୀଳାଚଳ' କାବ୍ୟର ଉପଜୀବ୍ୟ ବିଷୟବସ୍ତୁ ।

କିମ୍ବଦନ୍ତୀକୁ ଗ୍ରହଣ କରି ରାଧାନାଥ, ଗୋଦାବରୀଶ, ଗୋପବନ୍ଧୁ, ନୀଳକଣ୍ଠ ପ୍ରଭୃତି କବି ମନୀଷୀ ଗାଥାକବିତା ରଚନା କରିଛନ୍ତି । କବି ମଧୁସୂଦନ ଦାଶ ସେହି ପରମ୍ପରାର ପୋଷକ । ଜଗନ୍ନାଥ ସଂସ୍କୃତିକୁ ବୁଝିବାକୁ ହେଲେ ସମଗ୍ର ଭାବରେ ଉତ୍କଳୀୟ ସଂସ୍କୃତିର ଧାରା ଉତ୍କଳୀୟ ପ୍ରାଣପ୍ରବାହ ଓ ପ୍ରାଣ ପ୍ରାଚୁର୍ଯ୍ୟକୁ ମର୍ମେମର୍ମେ ଅନୁଭବ କରିବାକୁ ହେବ ବୋଲି କବି ମଧୁସୂଦନ କାୟ ମନୋବାକ୍ୟରେ ହୃଦୟଙ୍ଗମ କରିଥିଲେ । ଭାରତୀୟ ଧର୍ମ

ଓ ଦର୍ଶନର ପରିପ୍ରେକ୍ଷୀରେ କବି ଉତ୍କଳୀୟ ସଂସ୍କୃତିର ସ୍ୱରୂପ ବିଶ୍ଳେଷଣ କରିଛନ୍ତି । 'ନୀଳାଚଳ' କାବ୍ୟର ଆରମ୍ଭରେ ମଙ୍ଗଳାଚରଣରେ କବି ପ୍ରକାଶ କରିଛନ୍ତି–

'ଉତ୍କଳଧରଣୀ ବାଣୀ ସ୍ୱରୂପିଣୀ
ବସ ମା' ସାରଳେ ମୋ କଣ୍ଠେ ଆସି
ସ୍ଫୁରୁ ନିରନ୍ତର ରସନାରୁ ମୋର
ପୁରାଣ ନୀଳାଦ୍ରି କୀରତି ରାଶି ।'

ସର୍ବଧର୍ମ ସମନ୍ୱୟର କ୍ଷେତ୍ର ନୀଳାଚଳ ଧାମ । ଜଗତର ନାଥ ଜଗନ୍ନାଥ ସର୍ବ ସଂସ୍କୃତିର ଏକ ସାରଭୂତ ଦେବତା । କବି ମଧୁସୂଦନ 'ନୀଳାଚଳ' କାବ୍ୟରେ ଯଥାର୍ଥରେ ପ୍ରକାଶ କରିଛନ୍ତି–

ଅନାର୍ଯ୍ୟ ଦେଖଇ ଯା କନ୍ଦରେ ହରି
ଶିଳାରୂପଧାରୀ ନୀଳମାଧବ
ଅର୍ଦ୍ଧ ଧରଣୀର ବଉଦ୍ଧ ଭକତେ
ବୃଦ୍ଧ ଶୌଦ୍ଧୋଦନ ଗୋପାବଲ୍ଲଭ ।
ବ୍ରହ୍ମବାଦୀ ଯହିଁ ନିୟତେ ଚିନ୍ତଇ
ନିରୁଗୁଣ ନିତ୍ୟ ସଚ୍ଚିଦାନନ୍ଦ
ବେଦ ଅନ୍ତବାଦୀ ଶ୍ରୁତି ତତ୍ତ୍ୱଦର୍ଶୀ
ପ୍ରଣବ ସ୍ୱରୂପୀ ଶ୍ରୀ ଆଦିକନ୍ଦ ।
ସୁରଗଣ ପତି ଶିବ ଶକ୍ତି ବିଷ୍ଣୁ–
ରୂପେ ଭଗବାନ ରାଜନ୍ତି ଯହିଁ
ଯେ ଯଥାଭାବଇ ସେ ତଥା ଦେଖଇ
ଅନୁରୂପ ସିଦ୍ଧି ଲଇଭ ତହିଁ ।

ମଧୁସୂଦନ ବିଭିନ୍ନ ଛନ୍ଦରେ 'ନୀଳାଚଳ' କାବ୍ୟ ରଚନା କରିଛନ୍ତି । ଈଶ୍ୱରଭକ୍ତି, ପରାର୍ଥପରତା, ଆତ୍ମପ୍ରତ୍ୟୟ, ଦୃଢ଼ନିଷ୍ଠା କାବ୍ୟର ପ୍ରତି ଛତ୍ରେ ଛତ୍ରେ ପ୍ରତିଭାତ । ଭକ୍ତ ଜୀବନର ସ୍ୱରୂପକୁ କବି କାବ୍ୟରେ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଆଧ୍ୟାତ୍ମିକ ଚେତନାକୁ ପୁଙ୍ଖାନୁପୁଙ୍ଖ ଭାବରେ ଉପସ୍ଥାପନ କରିଛନ୍ତି । ବିଶିଷ୍ଟ ଗବେଷକ ପ୍ରଫେସର ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି 'ନୀଳାଚଳ' କାବ୍ୟ ସମ୍ପର୍କରେ ପ୍ରକାଶ କରିଛନ୍ତି– 'ଏହି କାବ୍ୟ ସର୍ବଜନାଦୃତ । କାରଣ ଚରିତ୍ର ଚିତ୍ରଣ, ବର୍ଣ୍ଣନା ଓ ଭାବନାର ସମାବେଶରେ କବି ଏ କାବ୍ୟକୁ ଏକ ଅଭିନବ ରୂପରେ ଉପସ୍ଥାପିତ କରିଛନ୍ତି । କବି ଅତି ସଂଜତ ଭାବରେ ବିଦ୍ୟାପତି ଓ ଲଳିତାଙ୍କ ବିବାହ ଓ ପ୍ରୀତି ବିଷୟ କହି ଆଧୁନିକ ଅଶ୍ଳୀଳତା ବିରୋଧୀ ଯୁଗର ଅନୁକୂଳ କରିଛନ୍ତି । କବି ଷଡଋତୁର ବର୍ଣ୍ଣନାରେ ପଟୁତା ଓ ଅରଣ୍ୟ ପ୍ରକୃତିର ଚିତ୍ରଣରେ ସିଦ୍ଧହସ୍ତତା ଦେଖାଇ କାବ୍ୟକୁ ରମଣୀୟ କରିଅଛନ୍ତି । ଓଡ଼ିଆ ଭାଷା ସାହିତ୍ୟର ବରେଣ୍ୟ ବିଦଗ୍ଧ ଗବେଷକ ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟ 'ନୀଳାଚଳ' କାବ୍ୟ ସମ୍ପର୍କରେ ଆଲୋଚନା କରିବାକୁ ଯାଇ ପ୍ରକାଶ କରିଛନ୍ତି– ଭକ୍ତ ହିଁ ଜଗନ୍ନାଥ ଐତିହ୍ୟର ପ୍ରଥମ ଓ ପ୍ରଧାନ ମୂଳପିଣ୍ଡ । ପୁରାଣ ବର୍ଣ୍ଣିତ ଜଗନ୍ନାଥ ଇତିହାସ ଏଇ ଭକ୍ତି ଉପରେ ପ୍ରତିଷ୍ଠିତ, ନୀଳାଚଳ କାବ୍ୟରେ ଜ୍ଞାନର ଆଲୋଚନା କରାଯାଇଥିଲେ ହେଁ ଏଥିରେ ଭକ୍ତିର ଜୟ ଘୋଷଣା କରାଯାଇଛି । ତେଣୁ ବୃଦ୍ଧ ବିଶ୍ୱାବସୁ, ଲଳିତା, ରାଜା ଇନ୍ଦ୍ରଦ୍ୟୁମ୍ନ ପ୍ରଭୃତି ଭକ୍ତମାନଙ୍କ ପରି ପୁରାଣ କଥିତ ଶ୍ରେଷ୍ଠ ବୈଷ୍ଣବ ଭକ୍ତ ନାରଦ ମଧ୍ୟ ଏଇ କାବ୍ୟରେ ସ୍ୱଚ୍ଛନ୍ଦ ଭାବରେ ବିଚରଣ କରୁଅଛନ୍ତି । 'ନୀଳାଚଳ' ରାଧାନାଥଙ୍କ ପରମ୍ପରାକୁ ଅନୁସରଣ କରିଥିଲେ ମଧ୍ୟ ଏହା ସ୍ୱତନ୍ତ୍ର ସାହିତ୍ୟ ଗୌରବରେ ମହିମାନ୍ୱିତ । 'ନୀଳାଚଳ' ଅମର, ତହିଁ ସଙ୍ଗେ ସଙ୍ଗେ ଏହାର କବି ମଧୁସୂଦନ ।

ମଧୁସୂଦନ ୧୯୪୯ ମସିହାରେ ଇହଧାମ ତ୍ୟାଗ କଲେ । ଜୀବନ ଥିଲା ତାଙ୍କର ବିଦ୍ୟାଳୟ । ଅଧ୍ୟୟନ ଥିଲା ନିଶା, ଶିକ୍ଷକତା ଥିଲା ପେଶା । ଦର୍ଶନରେ ଥିଲେ ଏକାନ୍ତ ଅନୁରକ୍ତ, ମନନ ଓ ଚିନ୍ତନରେ ସଦା ଜାଗ୍ରତ । ସେ ଏକ ଅନିର୍ବାଣ ପ୍ରଜ୍ୱଳିତ ଦୀପଶିଖା, ଆଧ୍ୟାତ୍ମିକ ଚେତନାର ଚିନ୍ମୟ ଚିନ୍ତକ ଭାବରେ ସେ ଯେପରି ଦେଦୀପ୍ୟମାନ, ରହସ୍ୟବାଦୀ ଭାବୋଚ୍ଛ୍ୱାସରେ ସେ ସେପରି ଚିର ଭାସ୍ୱର । ତାଙ୍କ ଜୀବନ ପୁଷ୍ପ ସତତ ସୁରଭିତ ଓ ପ୍ରସନ୍ନ । ଐହିକ ତେଜୋଦୀପ୍ତ ପାରତ୍ରିକ ଉଦ୍ଦୀପ୍ତ । ପାଶ୍ଚାତ୍ୟ କବି ମନୀଷୀଙ୍କ ଭାଷାରେ ' Indeed, a small innovative spark in the prosaic darkness of indolence can light up the entire universe'.

ସ୍ନାତକୋତ୍ତର
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଫକୀର ମୋହନ ବିଶ୍ୱବିଦ୍ୟାଳୟ

**ସହାୟକ ଗ୍ରନ୍ଥସୂଚୀ**

୧. ଡକ୍ଟର କୁଞ୍ଜବିହାରୀ ଦାଶ: ଜୀବନୀ ଓ ଜୀବନ ।
୨. ଶ୍ରୀ ଉଦୟ ନାଥ ଦାସ: ଭକ୍ତ କବି ମଧୁସୂଦନ ।
୩. ଶ୍ରୀ ଚିନ୍ତାମଣି ମିଶ୍ର: ଅର୍ଦ୍ଧଶତାବ୍ଦୀର ଅନୁଭୂତି
୪. ଶ୍ରୀ ଦୁର୍ଗାଚରଣ ରାୟ: ରାଧାନାଥ ଜୀବନୀ
୫. ଶ୍ରୀ କେଶବ ଚନ୍ଦ୍ର ମେହେର: ସୃଷ୍ଟିର ସ୍ୱର
୬. ପଣ୍ଡିତ ମୃତ୍ୟୁଞ୍ଜୟ ରଥ: ବ୍ରହ୍ମଙ୍କ ମଧୁସୂଦନ

# ଦୁର୍ଗା ଦେବୀଙ୍କ ନବରାତ୍ରୀ ଓ ଷୋଡଶ ଦିବସ ପୂଜା

**ଶିବସୁନ୍ଦର ପଟ୍ଟନାୟକ**

ଆମ୍ଭେମାନେ ରାମାୟଣରୁ ଜାଣିଅଛେ ଯେ ମର୍ଯ୍ୟାଦାପୁରୁଷ ଶ୍ରୀରାମଚନ୍ଦ୍ର ନବରାତ୍ର କାଳ ଦୁର୍ଗାଦେବୀଙ୍କୁ ଆରାଧନା କରି ରାବଣଙ୍କୁ ସଂହାର କରିଥିଲେ । ସେହିପରି ଦେବୀ ପୁରାଣମାନଙ୍କରୁ ଜଣାଯାଏ, ଦେବୀ ଦୁର୍ଗାଙ୍କୁ ନବଦିନ ଧରି ଦେବତାମାନେ ଆରାଧନା କଲାପରେ ମହିଷାସୁରକୁ ବଧ କରାଯାଇଥିଲା ।



ରାମଚନ୍ଦ୍ର ଚୈତ୍ର ଶୁକ୍ଳ ପ୍ରତିପଦାଠାରୁ ନବମୀ ତିଥି ପର୍ଯ୍ୟନ୍ତ ଦୁର୍ଗାଦେବୀଙ୍କୁ ଆରାଧନା କରିଥିଲେ ଏବଂ ଦେବୀଙ୍କ ଶୁଭଦୃଷ୍ଟି ଚୈତ୍ର ଶୁକ୍ଳ ଦଶମୀ ତିଥିରେ ପ୍ରାପ୍ତ ହୋଇ ରାବଣକୁ ବଧ କରିପାରିଥିଲେ । ତା'ଛଡା ରାମଚନ୍ଦ୍ର ଅଗସ୍ତି ଋଷିଙ୍କଠାରୁ ଅକ୍ଷୟ ତୁଣୀ ପାଇଥିଲେ ଏବଂ ଅନୁସୂୟା ମଧ୍ୟ ସୀତା ଦେବୀଙ୍କୁ ଅମ୍ଳାନ ବସ୍ତ୍ର ପ୍ରଦାନ କରିଥିଲେ । ରାମଚନ୍ଦ୍ରଙ୍କ ପ୍ରତ୍ୟେକ ଯୁଦ୍ଧରେ ଅଗସ୍ତି ପ୍ରକଟ ହୋଇ ପ୍ରଭୁଙ୍କୁ ଉପଦେଶ ଦେଉଥିଲେ । ରାବଣ ନିଧନ ନିମନ୍ତେ ଅଗସ୍ତି ଋଷି ରାମଚନ୍ଦ୍ରଙ୍କୁ ଆଦିତ୍ୟ ହୃଦୟ ସ୍ତୋତ୍ର ପାଠ କରିବାକୁ କହିଥିଲେ । ଏହି ସ୍ତୋତ୍ର ରବି ଗ୍ରହର ଉପାସନା ଅଟେ । ରାମଚନ୍ଦ୍ର ମଧ୍ୟ ରବି ଗ୍ରହଙ୍କଠାରୁ ବରପ୍ରାପ୍ତ ହୋଇଥିଲେ ।

ସାଧାରଣତଃ ଆମ୍ଭେମାନେ ଦୁର୍ଗା ଦେବୀଙ୍କ ଶାରଦୀୟ ପୂଜା କରିଥାଉ । ଏହା ଆଶ୍ୱିନ ଶୁକ୍ଳ ପ୍ରତିପଦାଠାରୁ ଆରମ୍ଭ ହୁଏ । ନବଦିନ ପୂଜା ନବମୀ ତିଥିରେ ଶେଷ କରି ଆମ୍ଭେମାନେ ଦଶମୀ ତିଥିରେ ସିଦ୍ଧିପ୍ରାପ୍ତ ହେଲା ବୋଲି ମନେକରୁ । ଏହି ଦଶହରା ଦିନରେ ଆମ୍ଭେମାନେ ମହିଷାସୁର ନିଧନ ହୋଇଥିଲା ବୋଲି ଆନନ୍ଦ ଉଲ୍ଲାସରେ ମଜ୍ଜି ଯାଉ । ଏହି ଦଶହରା ଦିବସକୁ ବିଜୟ ଉତ୍ସବ ବୋଲି ମଧ୍ୟ କୁହାଯାଏ ।

ଦୁର୍ଗାଦେବୀଙ୍କର ନବଦିନ ପୂଜାରେ ଭିନ୍ନ ଭିନ୍ନ ନାମରେ ତାଙ୍କୁ ଆରାଧନା କରାଯାଇ ଦେବୀଙ୍କଠାରୁ ସିଦ୍ଧି ପ୍ରାପ୍ତ ହୁଅନ୍ତି । ଏହି ନବଦିନର ଦୁର୍ଗା ଦେବୀଙ୍କର ରୂପ ଯଥାକ୍ରମେ ଶୈଳପୁତ୍ରୀ, ବ୍ରହ୍ମଚାରିଣୀ, ଚନ୍ଦ୍ରଘଣ୍ଟା, କୁଷ୍ମାଣ୍ଡ, ସ୍କନ୍ଦମାତା, କାତ୍ୟାୟନୀ, କାଳରାତ୍ରୀ, ମହାଗୌରୀ ଓ ସିଦ୍ଧିଦାତ୍ରୀ ଅଟେ । ନବରାତ୍ରର ପ୍ରତ୍ୟେକ ଦିନରେ ଦେବୀଙ୍କର ଏହି ଭିନ୍ନ ଭିନ୍ନ ରୂପ କଳ୍ପନା କରି ଦୁର୍ଗା ଦେବୀଙ୍କ ସେହି ବିଗ୍ରହଙ୍କ ସ୍ତୁତି କରାଯାଏ ।

ଦେବୀଙ୍କ ସିଦ୍ଧିପ୍ରାପ୍ତ ନିମନ୍ତେ କେବଳ ଦେବୀଙ୍କ ଉପରୋକ୍ତ ରୂପକୁ ଆରାଧନା କରାଯାଏ ନାହିଁ, ଉତ୍ତମ ଫଳ

ପ୍ରାପ୍ତି ନିମନ୍ତେ ବିଭିନ୍ନ ଦିବସରେ ବିଭିନ୍ନ ଗ୍ରହଙ୍କୁ ମଧ୍ୟ ଆରାଧନା, ପୂଜା, ଜପ, ତପ, ଧ୍ୟାନ ଓ ଯଜ୍ଞ କରାଯାଏ ।

ବିଭିନ୍ନ ଗ୍ରହମାନଙ୍କର ପୀଠାଧିଶ ଅଧିଷ୍ଠାତ୍ରୀଦେବୀ ସ୍ୱତନ୍ତ୍ର ଅଟନ୍ତି । ରବି, ଚନ୍ଦ୍ର, ସୋମ, ମଙ୍ଗଳ, ବୁଧ, ବୃହସ୍ପତି(ଗୁରୁ) ଶୁକ୍ର, ଶନି, ରାହୁ ଓ କେତୁ ଗ୍ରହମାନଙ୍କର ଅଧିଷ୍ଠାତ୍ରୀ ଦେବୀ ନିମ୍ନ କ୍ରମରେ ବର୍ଣ୍ଣନା କରାଗଲା ଯଥା-ମାତଙ୍ଗୀ, ଭୁବନେଶ୍ୱରୀ, ବଗଳାମୁଖୀ, ତ୍ରିପୁରାସୁନ୍ଦରୀ, ତାରା, କମଳାତ୍ମିକା, ଦକ୍ଷିଣକାଳୀ, ଛିନ୍ନମସ୍ତା ଓ ଧୂମାବତୀ । ସେସବୁ ଗ୍ରହଙ୍କ ଆରାଧନା କରିବା ସଙ୍ଗେ ସଙ୍ଗେ ସେହି ଦେବୀମାନଙ୍କୁ ମଧ୍ୟ ପୂଜା କରାଯାଏ ।

ଆମ୍ଭମାନଙ୍କ ଉପରେ ନବଗ୍ରହମାନଙ୍କର ପ୍ରଭାବ ରହିଅଛି । ଏହି ଗ୍ରହମାନେ ଆମ୍ଭମାନଙ୍କୁ ଭଲ ଫଳ ଦିଅନ୍ତି ଏବଂ ଅନେକ ସମୟରେ ମନ୍ଦ ଫଳ ମଧ୍ୟ ଦିଅନ୍ତି । ଏହି ମନ୍ଦ ଫଳ ଆମ୍ଭମାନଙ୍କୁ ଭୋଗ ନକରିବା ପାଇଁ ଆମ୍ଭେମାନେ ସେହି ଗ୍ରହମାନଙ୍କ ପାଇଁ ପୂଜା କରିବା ଆବଶ୍ୟକ ।

ଗ୍ରହମାନଙ୍କ ସଂଖ୍ୟା ନଅ ଅଟେ । ଯଥା: ରବି, ସୋମ(ଚନ୍ଦ୍ର) ମଙ୍ଗଳ, ବୁଧ, ବୃହସ୍ପତି(ଗୁରୁ), ଶୁକ୍ର, ଶନି, ରାହୁ ଓ କେତୁ । ମାତ୍ର ସପ୍ତାହରେ ସାତଦିନ-ରବି, ସୋମ, ମଙ୍ଗଳ, ବୁଧ, ଗୁରୁ, ଶୁକ୍ର, ଓ ଶନି । ଯେଉଁ ନିର୍ଦ୍ଦିଷ୍ଟ ଦିନରେ ଯେଉଁବାର ପଡୁଅଛି ଆମ୍ଭେମାନେ ସେହି ବାରରେ ସେହି ଗ୍ରହକୁ ପୂଜା କରିବାକୁ ହୁଏ ଏବଂ ସେହି ଗ୍ରହ ସାଥୀରେ ସେହି ଦିବସର ଅଧିଷ୍ଠାତ୍ରୀ ଦେବୀ ବା ଦୁର୍ଗାଙ୍କ ରୂପକୁ ଆରାଧନା ଜପ, ତପ, ଯଜ୍ଞ ଓ ପୂଜା କରିବାକୁ ହୁଏ । ରାହୁ ଓ କେତୁଙ୍କର ସ୍ୱତନ୍ତ୍ର ବାର ନଥିବାରୁ ସେମାନଙ୍କ ପାଇଁ ସେହି ଗ୍ରହ ଦ୍ୱୟଙ୍କ ଅଧିଷ୍ଠାତ୍ରୀ ଦେବୀ ଯଥାକ୍ରମେ ଛିନ୍ନମସ୍ତା ଓ ଧୂମାବତୀଙ୍କୁ ଆମ୍ଭେମାନେ ଶୁକ୍ରବାର ଓ ଶନିବାରରେ ଆରାଧନା କରିଥାଉ ।

ଏହି ଗ୍ରହମାନଙ୍କ ପୂଜା କରିବା ସଙ୍ଗେ ସଙ୍ଗେ ସେହି ଗ୍ରହମାନଙ୍କ ଅଧିଷ୍ଠାତ୍ରୀ ଦେବୀମାନଙ୍କୁ ଅର୍ଥାତ୍ ଦୁର୍ଗାଦେବୀଙ୍କ ସେହି ରୂପକୁ ଆରାଧନା କଲାବେଳେ ଦେବୀମାନଙ୍କ ପୂଜା ସେହିମାନଙ୍କ ନିର୍ଦ୍ଦିଷ୍ଟ ବାର ଅନୁକ୍ରମରେ କରାଯାଏ । ଅର୍ଥାତ୍ ଯଦି ନବରାତ୍ରୀର ପ୍ରଥମ ଦିନ (ଆଶ୍ୱିନ ଶୁକ୍ଳ ପ୍ରତିପଦା) ବୁଧବାର ପଡେ ବୁଧ ଗ୍ରହର ଅଧିଷ୍ଠାତ୍ରୀ ଦେବୀ ତ୍ରିପୁରା ମୋହିନୀଙ୍କୁ ଆରାଧନା, ପୂଜା କରାଯାଏ ଏବଂ ଦ୍ୱିତୀୟ ତିଥି ଗୁରୁବାର ପଡୁଥିବାରୁ ବୃହସ୍ପତି ଗ୍ରହଙ୍କ ଅଧିଷ୍ଠାତ୍ରୀ ଦେବୀ ତାରାଦେବୀଙ୍କୁ ଆରାଧନା କରାଯାଏ । ସେହିପରି କ୍ରମରେ ସେହି ବାରରେ ବା ଗ୍ରହର ଅଧିଷ୍ଠାତ୍ରୀ ଦେବୀଙ୍କୁ ଆରାଧନା, ପୂଜା କରାଯାଏ । ଆଗରୁ କୁହାଯାଇଅଛି ଯେ, ଶୁକ୍ରବାରରେ ବା ଶନିବାରରେ ରାହୁ ବା କେତୁ ଗ୍ରହର ପ୍ରଭାବ ଉପଶମ ପାଇଁ ଶୁକ୍ର ବା ଶନିଗ୍ରହର ଅଧିଷ୍ଠାତ୍ରୀ ଦେବୀ ଯଥାକ୍ରମେ କମଳାତ୍ମିକା ବା ଦକ୍ଷିଣକାଳୀଙ୍କ ସହିତ ରାହୁ ଗ୍ରହ ବା କେତୁ ଗ୍ରହର ଅଧିଷ୍ଠାତ୍ରୀ ଦେବୀ ଛିନ୍ନମସ୍ତା ବା ଧୂମାବତୀଙ୍କୁ ମଧ୍ୟ ଆରାଧନା କରାଯାଏ ।

ଦୁର୍ଗା ଦେବୀଙ୍କର ହସ୍ତ କଳ୍ପନା ନାନା ଯୁଗରେ ନାନା ପ୍ରକାର କରାଯାଇଅଛି । କେବଳ ଓଡ଼ିଶାରେ ଏହାର ହସ୍ତ ଦୁଇଟିରୁ କୋଡିଏ ପର୍ଯ୍ୟନ୍ତ କଳ୍ପନା କରାଯାଇଅଛି । ଦୁଇ ହସ୍ତ ଥିବା ଦୁର୍ଗା ସିଂହବାହିନୀ ସିଂହ ଉପରେ ଦଣ୍ଡାୟମାନ ହୋଇ ଦକ୍ଷିଣ ହସ୍ତରେ ମହିଷାସୁରର ବକ୍ଷସ୍ଥଳ ତ୍ରିଶୂଳ ବିଦ୍ଧ କରିବା ସମୟରେ ଅନ୍ୟ ହସ୍ତରେ ମହିଷାସୁରର ଲାଞ୍ଜ (ବାମ ହସ୍ତରେ) ଧରିଅଛନ୍ତି । ବାଣପୁର ଭଗବତୀ ଅଷ୍ଟଭୁଜା ଦୁର୍ଗା ଅଟନ୍ତି । ସାଧାରଣତଃ ମହିଷାସୁର ମର୍ଦ୍ଦିନୀ ଦଶଭୁଜା ଦୁର୍ଗା ଅଟନ୍ତି । ସେ ବିଭିନ୍ନ ହସ୍ତରେ ଦେବଦତ୍ତ ବିଭିନ୍ନ ଅସ୍ତ୍ର ଧରି ତ୍ରିଶୂଳରେ ମହିଷାସୁର ବକ୍ଷବିଦ୍ଧ କରୁଅଛନ୍ତି । ଏହି ମୂର୍ତ୍ତି ସାଧାରଣତଃ ମହିଷାସୁର ମର୍ଦ୍ଦିନୀ, ସିଂହବାହିନୀ, ଦଶଭୁଜା ଦୁର୍ଗା ଅଟନ୍ତି । ଏହି ମୂର୍ତ୍ତି ସାଧାରଣତଃ ଓଡ଼ିଶା ସାରା ଦେଖାଯାଏ, ଯଦିଓ ଦ୍ୱିଭୁଜା, ଚର୍ତୁଭୁଜା, ଷଡ଼ଭୁଜା, ଅଷ୍ଟଭୁଜା, ଦଶଭୁଜା ଓ ଦ୍ୱାଦଶ ଭୁଜା ଏବଂ ବିଂଶ ଭୁଜା ଦୁର୍ଗା ଦେଖିବାକୁ ମିଳେ । ଏହି ଦେବୀଙ୍କ ପାର୍ଶ୍ୱ ଦେବାଦେବୀ ରୂପେ ଦକ୍ଷିଣ ଦିଗରେ ମହାଲକ୍ଷ୍ମୀ ଓ ଗଣେଶ ଏବଂ ବାମ ଦିଗରେ ସରସ୍ୱତୀ ଓ କାର୍ତ୍ତିକେୟ ବିଦ୍ୟମାନ ଅଛନ୍ତି । ଏହିପରି ପଞ୍ଚଦେବାଦେବୀ ପ୍ରସିଦ୍ଧି ଲାଭ କରିଅଛନ୍ତି ।

ଓଡ଼ିଶାର ଘରେ ଘରେ ଦୁର୍ଗାମାଧବ ଫଟୋଚିତ୍ର ବା ରଥ କାଠରେ ତୂଳୀରେ ଅଙ୍କିତ ଚିତ୍ର ସାଧାରଣତଃ ପୂଜା କରାଯାଏ । ଏହି ଦୁର୍ଗାମାଧବ ଚିତ୍ରକୁ ସ୍ଥାପନା କରାଯାଇ ବିବାହ, ବ୍ରତ, ଗୃହ ପ୍ରତିଷ୍ଠା ଓ ଅନ୍ୟାନ୍ୟ ମାଙ୍ଗଳିକ କାର୍ଯ୍ୟରେ ଆରାଧନା କରି ପୂଜା କରାଯାଇଥାଏ । ତେଣୁ କୁହାଯାଇଅଛି -

ଦୁର୍ଗାମାଧବ ସଂଚିନ୍ତ୍ୟ ସର୍ବକାମ ସମାଚରେତ୍
ଦୁର୍ଗା ବିଘ୍ନହୃତା ଦେବୀ ମାଧବଃ ଶୁଭଦାୟକ ॥

(ଦୁର୍ଗାମାଧବଙ୍କୁ ଚିନ୍ତା କଲେ ସର୍ବକାମ ସୁରୁଖୁରୁରେ ହୋଇପାରିବ । ଦୁର୍ଗାଦେବୀ ବିଘ୍ନନାଶିନୀ ଓ ମାଧବ ଶୁଭଦାୟକ ଅଟନ୍ତି ।)

କେତେକ ଜାଗାରେ ନବଦିନ ବ୍ୟାପୀ ଦୁର୍ଗୋତ୍ସବ ହେଉଥିଲେ ହେଁ ସାଧାରଣତଃ ଓଡ଼ିଶାରେ ଷୋଡଶ ଦିନ ବ୍ୟାପି ପୂଜା କରାଯାଏ । ଏହି ଷୋଡଶ ଦିନ ଗ୍ରାମର ବିଭିନ୍ନ ବ୍ୟକ୍ତି ପାଳିକରି ପୂଜା କରନ୍ତି ଓ ଦୁର୍ଗା ବା ଠାକୁରାଣୀଙ୍କ ନିକଟରେ ଜନ୍ତାଳ ବା ଭୋଗ କରନ୍ତି । ଅଷ୍ଟମୀ ତିଥି ପର୍ଯ୍ୟନ୍ତ ବ୍ୟକ୍ତିଗତ ଜନ୍ତାଳ ହୁଏ । ଆଶ୍ୱିନ, ଶୁକ୍ଳ ସପ୍ତମୀ, ଅଷ୍ଟମୀ ଓ ନବମୀ ତିଥିରେ ସ୍ୱତନ୍ତ୍ର ପୂଜା ଓ ହୋମ କରାଯାଏ ଏବଂ ଦଶହରା ତିଥିରେ ଗ୍ରାମର ଲୋକମାନେ ନିଜ ନିଜର କାରିଗରୀ ଉପକରଣ ଓ ଅସ୍ତ୍ରଶସ୍ତ୍ର ନେଇ ଦଶଦୋଳ ପଡିଆକୁ ଯାଇ ଅନୁକୂଳ କରନ୍ତି । ଦଶହରାରେ ଏକ ମାଙ୍ଗଳିକ ଦିବସ ରୂପେ ସମସ୍ତ କାର୍ଯ୍ୟ କରାଯାଏ ।

ବାଣପୁରର ମା' ଭଗବତୀଙ୍କ ଦୁର୍ଗାପୂଜା ଉତ୍ସବ ଭାଦ୍ରବ ଶୁକ୍ଳ ସପ୍ତମୀ ତିଥିରୁ କରାଯାଏ । ସେଦିନ ଠାକୁରାଣୀଙ୍କ ପାଣିତୋଳା ହୁଏ ଓ କାଠି ଠାକୁରାଣୀ ସେଥିପାଇଁ ବିଜେ କରିଥାନ୍ତି ଓ ଚିଲିକା ମଧ୍ୟସ୍ଥ କାଳିଜାଈଙ୍କୁ ନିମନ୍ତ୍ରଣ କରିଥାନ୍ତି । ଏହାପରେ ଶୟନପର୍ବ ଭାଦ୍ରବ ଶୁକ୍ଳ ଶ୍ରୀରାଧାଷ୍ଟମୀଠାରୁ ଆରମ୍ଭ ହୋଇ ଆଶ୍ୱିନ କୃଷ୍ଣ ଅଷ୍ଟମୀ(ମୂଳାଷ୍ଟମୀ)ରେ ଦେବୀଙ୍କ ଉତ୍‌ଥାନ ପର୍ବ ହୁଏ । ଏହି ଦିନ ଷୋଡଶ ପୂଜା ଆରମ୍ଭ । ଏହି ଉତ୍ସବ ତିନୋଟି ସ୍ତରରେ ହୁଏ– ଭିତର ପୂଜା, ବାହାର ପୂଜା ଓ ସନ୍ଧିପୂଜା ।

ପୁରୀ ଶ୍ରୀମନ୍ଦିରର ବିମଳା ମନ୍ଦିରରେ ଷୋଡଶ ଦିବସ ଦୁର୍ଗୋତ୍ସବ ଆଶ୍ୱିନ କୃଷ୍ଣ ଅଷ୍ଟମୀଠାରୁ ଶୁକ୍ଳ ଅଷ୍ଟମୀ ପର୍ଯ୍ୟନ୍ତ ଷୋଡଶ ପୂଜା ହୁଏ । ଶ୍ରୀମନ୍ଦିରର ରତ୍ନଭଣ୍ଡାରରୁ ମାଧବ ଆସି ଏହି ପୂଜାରେ ଯୋଗ ଦିଅନ୍ତି । ପ୍ରତ୍ୟହ ମାଧବ ରଥରେ ବିମାନବଡୁଙ୍କ କାନ୍ଧରେ ବିମଳା ମନ୍ଦିରକୁ ବିଜେ କରନ୍ତି । ମାଧବ ବିମଳା ମନ୍ଦିରର ନାଟ୍ୟ ମନ୍ଦିରରେ ଏକ ପଲଙ୍କରେ ବିଜେ କରନ୍ତି ଓ ଭୋଗ ସମର୍ପଣ ପରେ ରାତ୍ରିରେ ଶ୍ରୀମନ୍ଦିରକୁ ଫେରିଆସନ୍ତି ଏବଂ ଏହି ନୀତି ଆଶ୍ୱିନ ଅମାବାସ୍ୟା ପର୍ଯ୍ୟନ୍ତ ଚାଲେ । ଆଶ୍ୱିନ ଶୁକ୍ଳ ପ୍ରତିପଦା ଦିନ ଦୁର୍ଗାମାଧବ ରଥରୂପୀ ବିମାନରେ ବିମାନବଡୁଙ୍କ କାନ୍ଧରେ ଦୋଳମଣ୍ଡପ ସାହି ନାରାୟଣୀ ମନ୍ଦିରକୁ ବିଜେ କରନ୍ତି । ରାତ୍ରିରେ ଶ୍ରୀମନ୍ଦିରକୁ ଫେରି ଆସନ୍ତି । ଏହିପରି ଆଠଦିନ ନାରାୟଣୀ ମନ୍ଦିରରେ ପର୍ବ ହୁଏ । ଏହି ପର୍ବକୁ ଗୁପ୍ତ ରଥଯାତ୍ରା ବା ଶାକ୍ତ ବା ଗୁଣ୍ଡିଚା ଯାତ୍ରା ବା ଦୁର୍ଗାମାଧବ ଉପାସନା କୁହାଯାଏ । ମହାସପ୍ତମୀ, ମହାଅଷ୍ଟମୀ ଓ ମହାନବମୀରେ ବିମଳା ଠାକୁରାଣୀଙ୍କ ମନ୍ଦିରରେ ସ୍ୱତନ୍ତ୍ର ଉତ୍ସବ ହୁଏ । ଏହି ପର୍ବବେଳେ ମହିଳାମାନଙ୍କୁ ବିମଳା ମନ୍ଦିରକୁ ଯିବା ପାଇଁ ମନା ଥାଏ ।

ବିମଳା ଠାକୁରାଣୀଙ୍କର ଏହି ଷୋଡଶ ପୂଜା ବେଳେ ପ୍ରତିଦିନର ସ୍ୱତନ୍ତ୍ର ବେଶ ହୁଏ । ଯଥା– ବନଦୁର୍ଗା, ଭୁବନେଶ୍ୱରୀ, ନାରାୟଣୀ, ମାତଙ୍ଗିନୀ, ଦଶଭୁଜା, ହରଚଣ୍ଡୀ, ରାଜ ରାଜେଶ୍ୱରୀ, ସିଂହବାହିନୀ, ଜୟ ଦୁର୍ଗା, ବଗଳା, ଉଗ୍ରତାରା ଓ ଶୂଳୀଦୁର୍ଗା । ଅନ୍ୟାନ୍ୟ ଦେବୀ ମନ୍ଦିରମାନଙ୍କରେ ମଧ୍ୟ ସ୍ୱତନ୍ତ୍ର ବେଶ ହୁଏ ।

ଆମ୍ଭେମାନେ ସମାଜରେ ପ୍ରତ୍ୟେକ ବ୍ୟକ୍ତି ସହ ସଦ୍‌ଭାବ ରଖିବାକୁ ଚାହୁଁ । ଶ୍ରୀ ଦୁର୍ଗାଦେବୀଙ୍କ ଆଶୀର୍ବାଦ ପ୍ରାପ୍ତ କଲେ ଏହା ସମ୍ଭବପର ହେବ ।

କନକ ମୃଗ
କାରାଗାରପଥ, ଖୋର୍ଦ୍ଧା



# ଶକ୍ତି ସ୍ୱରୂପିଣୀ ମା’ ଦୁର୍ଗା

**ସରୋଜ ରଞ୍ଜନ ପଟ୍ଟନାୟକ**

ଶ୍ରୀଦୁର୍ଗା ହେଉଛନ୍ତି ଶକ୍ତି ସ୍ୱରୂପିଣୀ ତଥା ଶକ୍ତିର ଅଧିଷ୍ଠାତ୍ରୀ ଦେବୀ । ଦୁର୍ଗତି କାଳରେ ବିଶ୍ୱକୁ ରକ୍ଷା କରିବା ପାଇଁ ମା’ ଦୁର୍ଗତି ନାସିନୀଙ୍କ ଆବିର୍ଭାବ । ଶକ୍ତି ସ୍ୱର୍ଗରେ ଦେବ ଦେବ ମହାଦେବ ମଙ୍ଗଳମୟ ହୋଇ ଏବଂ ଶକ୍ତିହୀନ ହେଲାପରେ ଶିବ ଶବରେ ପରିଣତ ହୋଇଥା’ନ୍ତି । ଆଦି ଶଙ୍କରାଚାର୍ଯ୍ୟଙ୍କ ଦେବୀ ଅପରାଧ କ୍ଷମାପନସ୍ତୋତ୍ରରୁ ଶକ୍ତିର ମହାତ୍ମ୍ୟ ବେଶ ହୃଦୟଙ୍ଗମ ହୋଇଥାଏ ।

କପାଳୀ ଭୂତେଶୋ ଭଜତି
ଜଗଦୀଶୈକ ପଦବୀ
ଭବାନୀତ୍ୱତ୍ ପାଣିଗ୍ରହଣ
ପରିପାଟୀଫଳ ମିଦମ୍

ଅର୍ଥାତ୍– ହେ ମା ଭବାନୀ ! କପାଳୀ ଭୂତେଶ ଶିବ ଯେ ଏକମାତ୍ର ଜଗଦୀଶଙ୍କ ପଦବୀକୁ ଧାରଣ କରିଛନ୍ତି ବା ଜଗଦୀଶ୍ୱର ଆଖ୍ୟା ଲାଭ କରିଛନ୍ତି । ଏକଦା ପରମହଂସ ପରି ବାଜକାଚାର୍ଯ୍ୟ ଭଗବାନ ଶଙ୍କର କାଶୀରୁ ମଣିକର୍ଣ୍ଣିକା ଘାଟକୁ ସ୍ନାନ କରିବା ନିମନ୍ତେ ଗମନ କଲେ । ଏହି ସମୟରେ ଦେବୀ ତାଙ୍କର ଶକ୍ତି ହରଣ କଲେ । ଶଙ୍କରାଚାର୍ଯ୍ୟ ଶବବତ୍ ଗଙ୍ଗା ନିକଟରେ ପଡି ରହିଲେ । କିଛି ସମୟ ପରେ ଭଗବତୀ ଭବାନୀ ଶିବଙ୍କ ଅନୁରୋଧକ୍ରମେ କୃପା କରି ନାରୀରୂପ ଧାରଣପୂର୍ବକ ସେ ସ୍ଥାନକୁ ଜଳ ନେବା ଛଳରେ ଗମନ କଲେ । ମା’ ଶକ୍ତି ଦେବୀଙ୍କ କଟାକ୍ଷରେ ଆଚାର୍ଯ୍ୟ ଶଙ୍କରଙ୍କର ଅଳ୍ପ ମାତ୍ର କଥା କହିବାର ସାମର୍ଥ୍ୟ ହେଲେ । ଆଚାର୍ଯ୍ୟ କହିଲେ ମା’ ମୋତେ ଟିକିଏ ଜଳଦିଅ ମୋର ତୃଷା ମେଣ୍ଟିବ । ଦେବୀ କହିଲେ କ’ଣ ବତ୍ସ ? ତୁମ୍ଭେ ଏହି ଜଳ ଘାଟ ନିକଟରେ ଶୟନ କରିଛ, ତୁମ୍ଭର ହସ୍ତ ଅଛି । ନିଜେ ଜଳ ନେଇ ପାନ କରୁନାହଁ କାହିଁକି ? ଆଚାର୍ଯ୍ୟ ଉତ୍ତର ଦେଲେ ମା’ ମୋର ଶକ୍ତି ନାହିଁ । ଦେବୀ କହିଲେ ତୁମେ କ’ଣ ଶକ୍ତିକୁ ମାନିଥାଏ ? ଏହା କହି ଦେବୀ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ଏଥିରେ ଶଙ୍କରଙ୍କର ଜ୍ଞାନ ଉଦୟ ହେଲା । ସେ ପ୍ରକୃତିସ୍ଥିତ ହେଲେ । ଶକ୍ତି ନଥିଲେ ଶିବ ଶବରେ ପରିଣତ ହୁଏ । ନିଜେ ଶଙ୍କର ହୃଦୟଙ୍ଗମ କଲେ– ଶକ୍ତି ଦ୍ୱାରା ହିଁ ସୃଷ୍ଟି, ସ୍ଥିତି, ପ୍ରଳୟ, ବନ୍ଧନ ଓ ମୋକ୍ଷାଦି ସକଳ ବ୍ୟାପାର ଜଗତରେ ଘଟୁଅଛି । ଶିବ ଯଦି ଶକ୍ତିଯୁକ୍ତ ହୁଅନ୍ତି ତା’ହେଲେ ସେ ପ୍ରଭାବଶାଳୀ ହୋଇ ସୃଷ୍ଟି, ସ୍ଥିତି, ଲୟ ପ୍ରଭୃତି ସମୁଦାୟ କାର୍ଯ୍ୟ ସାଧନ କରିପାରନ୍ତି । ନଚେତ୍ ସେ ସ୍ୱୟଂ ସ୍ପନ୍ଦିତ ହେବାକୁ ସମର୍ଥ ହୁଅନ୍ତି ନାହିଁ । ଜଗତର ସୃଷ୍ଟି, ସ୍ଥିତି ସଂହାର କରିବା ନିମିତ୍ତ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଦେବତା ପ୍ରଭୃତି ଆରାଧନା କରିଥା’ନ୍ତି । ଭଗବାନଶଙ୍କର ସେହିଦିନଠାରୁ ହେଲେ ଶକ୍ତି ଉପାସକ ।

ବୌଦ୍ଧତନ୍ତ୍ର ଶାସ୍ତ୍ର ସାଧନମାଳା ଓ ନିଷ୍ପନ୍ନ ଯୋଗାବଳୀ ଗ୍ରନ୍ଥରେ ଶକ୍ତିମୟୀ ଦେବୀଙ୍କର ନାମ ଓ ଚାପ ଏଭଳି ଉଲ୍ଲେଖ କରାଯାଇଛି ଯେ ତଦ୍‌ଦ୍ୱାରା ଶକ୍ତି ଶବ୍ଦର ପ୍ରୟୋଗ କେବଳ ଯେ ଦୁର୍ଗା ଦେବୀଙ୍କଠାରେ ପ୍ରଯୁଜ୍ୟ ବୋଲି ଅନୁଭବ କରିହୁଏ । ତେବେ ଶକ୍ତି ଦର୍ଶନର ପୂର୍ଣ୍ଣାଙ୍ଗ ଅବୟବ ତନ୍ତ୍ର ଶାସ୍ତ୍ରରେ ଯେପରି ପ୍ରତିଷ୍ଠାଲାଭ କରିପାରିଛି ଅନ୍ୟ ଗ୍ରନ୍ଥମାନଙ୍କରେ ତା’ର ସାରମର୍ମ ଏପରି ଦେଖାଯାଇନାହିଁ । ବିଶେଷ କରି ମାର୍କଣ୍ଡେୟ ପୁରାଣରେ ତନ୍ତ୍ର ଶାସ୍ତ୍ରର ସାରମର୍ମ ଅତି ସୁଲଭ ଭାବରେ ବର୍ଣ୍ଣିତ । ଯଥା– ‘‘ଯାଦେବୀ ସର୍ବଭୂତେଷୁ ଶକ୍ତିରୂପେଣ ସଂସ୍ଥିତା’’, ସତ୍ତ୍ୱ, ରଜ ଓ ତମ ଗୁଣର ପ୍ରତୀକ ଭାବରେ ଏହି ଦେବୀ ସରସ୍ୱତୀ, ଲକ୍ଷ୍ମୀ ଓ କାଳୀଙ୍କର ଅନବଦ୍ୟ ରୂପ । କାଳିକା ପୁରାଣରେ ଦେବୀଙ୍କର ଅତି ମାନସ ଶକ୍ତିର ଅପ୍ରତିମ ସ୍ୱଭାବ ଅତି ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି ।

ଜୈନଧର୍ମ ଗ୍ରନ୍ଥ ରତ୍ନ ସାଗରରେ ଦେବୀଙ୍କ ଶକ୍ତିରୂପ ଏପରି ବର୍ଣ୍ଣିତ ହୋଇଛି ଯେ ତା’ର ବର୍ଣ୍ଣନା ଅନ୍ୟକୌଣସି ସ୍ଥାନରେ

ଦୃଷ୍ଟିଗୋଚର ହୁଏ ନାହିଁ । ବିଶେଷକରି ପଥର ଖୋଦିତ ଶିଳାପାତ୍ର ବା ମନ୍ଦିରରେ ଦେବୀ ମୂର୍ତ୍ତିଙ୍କ ଚିତ୍ର ଏବେ ବି ଶକ୍ତି ଶବ୍ଦର ପ୍ରାଧାନ୍ୟ ବିସ୍ତାର କରୁଛି ଏବଂ ମହାବୀର ଜୈନଙ୍କ ଦୀର୍ଘଦିନ ସାଧନାର ପଥରେ ଯେଉଁ ଅଲୌକିତ ଦିବ୍ୟଶକ୍ତି ପ୍ରକଟିତ ହୋଇଛି, ତାହା ହିଁ କେବଳ ଶକ୍ତି ସାଧକଙ୍କ ପାଇଁ ନୂତନ ଖୋରାକ ଯୋଗାଇଛି ।

ଐତିହାସିକ ତଥ୍ୟାନୁସାରେ ଚୈତ୍ୟ ବଂଶ ରାଜାଭାବେ ସୁରଥ ବହୁ କ୍ଷମତାର ଅଧିକାରୀ ସମ୍ଭବତଃ ଖାରବେଳଙ୍କ ପୂର୍ବରୁ ଏହି ବଂଶର ସୃଷ୍ଟି । ଅନ୍ୟ ପକ୍ଷରେ ମୌର୍ଯ୍ୟ ଶାସକ ଅଶୋକଙ୍କ ସମୟରେ କାରୁବାକୀଙ୍କ ଲଲାମ ସୁନ୍ଦରୀ ରୂପର ବର୍ଣ୍ଣନା ଓ ତାଙ୍କର ମାୟାରେ ମୁଗ୍ଧ ହୋଇଥିବା ଅଶୋକଙ୍କ ପରି ଜଣେ ଅସାମାନ୍ୟ ବ୍ୟକ୍ତି ବୋଧହୁଏ ପରବର୍ତ୍ତୀ ସମୟରେ ଶୁମ୍ଭାସୁରର ପ୍ରତୀକ ଭାବେ ବିରାଜମାନ । ଏହା ସତ୍ୟ ଯେ, କାରୁବାକୀ କଳିଙ୍ଗର ରାଣୀ ସମର କୁଶଳ ନାରୀ, ସେ ଶକ୍ତି ସ୍ୱରୂପିଣୀ ଦୁର୍ଗାଙ୍କ ବିକଳ୍ପ ପ୍ରତୀକ ।

ଆଜି ସମଗ୍ର ଭାରତରେ ଦୁର୍ଗାପୂଜା ସପ୍ତମୀଠାରୁ ଦଶମ ପର୍ଯ୍ୟନ୍ତ ମହାସମାରୋହରେ ପାଳିତ ହୁଏ । ତେବେ ଅଷ୍ଟମୀ ଓ ନବମୀ ତିଥି ସନ୍ଧିକ୍ଷଣରେ ବିଶେଷ ପୂଜା କରାଯାଇଥାଏ । ଦେବୀ ପୀଠରେ ଷୋଡଶ ଉପଚାର ପଦ୍ଧତିରେ ଦ୍ୱିତୀୟା ଓଷା ପରଠାରୁ ଦେବୀ ପୂଜା ଆରମ୍ଭ ହୋଇଥାଏ । ନବଦୁର୍ଗାଙ୍କ ପ୍ରତୀକ ଯଥା: ଶୈଳପୁତ୍ରୀ–ବ୍ରହ୍ମଚାରିଣୀ, ଚନ୍ଦ୍ରଘଣ୍ଟା, କୁଷ୍ମାଣ୍ଡା, ସ୍କନ୍ଦମାତା, କାତ୍ୟାୟନୀ, କାଳରାତ୍ରୀ, ମହାଗୌରୀ ଓ ସିଦ୍ଧାଦେବୀ, ମୂଳାଷ୍ଟମୀ ଠାରୁ ମହାଷ୍ଟମୀ ପର୍ଯ୍ୟନ୍ତ ୧୬ଦିନ ଧରି ଶକ୍ତି ପୀଠରେ ପୂଜା ପାଆନ୍ତି । ଗଜପତି କପିଳେଶ୍ୱର ଦେବ କୃଷ୍ଣାନଦୀ ତଟଦେଶରେ କନକଦୁର୍ଗା ସ୍ଥାପନ କରି ନିଜର ଶକ୍ତି ପ୍ରଦର୍ଶନରେ ଗୌରବାନ୍ୱିତ ହୋଇଥିଲେ ।

ସର୍ବଶେଷରେ ଏତିକି କୁହାଯାଇପାରେ ଶକ୍ତି ସ୍ୱରୂପିଣୀ ଦୁର୍ଗା ଦେବୀ ଓଡ଼ିଶାର ବିଭିନ୍ନ ସ୍ଥାନରେ ଯଥା– ଝଙ୍କଡରେ ମା' ଶାରଳା, କାକଟପୁରରେ ମା' ମଙ୍ଗଳା, କୋଣାର୍କରେ ରାମଚଣ୍ଡୀ, ପୁରୀରେ ବିମଳା, ବାଙ୍କୀରେ ଚର୍ଚ୍ଚିକା, ସମ୍ବଲପୁରରେ ସମଲାଇ, ଯାଜପୁରରେ ବିରଜା, ଭୁବନେଶ୍ୱରରେ ଗୌରୀ, ବାଣପୁରରେ ଭଗବତୀ, କଟକରେ ମା' ଚଣ୍ଡୀ ରୂପରେ ପୂଜା ପାଉଛନ୍ତି ।

କ୍ୱାର୍ଟର ନଂ–ଟୁ.ଆର୍.ଏଫ୍. ୪/୧,
କୋ. ଅପରେଟିଭ୍, ହାଉସିଂ କଲୋନୀ,
ୟୁନିଟ୍–୩, ଭୁବନେଶ୍ୱର

# ମା'ଗୋ କରୁଣାମୟୀ

ଡକ୍ଟର ଲକ୍ଷ୍ମୀକାନ୍ତ ଖୁଣ୍ଟିଆ

ମା'ଗୋ କଲ୍ୟାଣମୟୀ
ଜଗତଜନଙ୍କୁ ବରାଭୟ ଦାନେ
କର ମା' ମଙ୍ଗଳମୟୀ... ।

ତୁମରି ଆଶିଷେ ବିକଶିତ ହେଉ
ଏ ଜୀବନ ଶତଦଳ
ପ୍ରତିଟି ଅନ୍ତରେ ପୂରିଉଠୁ ମା'
ଶୁଭମୟ ଶୁଭଫଳ
ଅଭୟଦାୟିନୀ ଜ୍ଞାନ ପ୍ରଦାୟିନୀ
ହୁଅ ସଦା ଶୁଭମୟୀ
ମା'ଗୋ କଲ୍ୟାଣମୟୀ... ।



ଏ ଶୁଭ ଲଗନେ କରୁଛି ବନ୍ଦନା
ଜନନୀଗୋ ବାରେ ଘେନ
ଜାଣେନା ମୁଁ ପୂଜା ଜାଣେନାହିଁ ମନ୍ତ୍ର
ଅରପୁଛି ଟିକି ମନ
ହସିଉଠୁ ଧରା ତୁମ କରୁଣାରେ
ହେ ମା' କରୁଣାମୟୀ
ମା'ଗୋ କଲ୍ୟାଣମୟୀ... ।

କ୍ୱାର୍ଟର ନଂ–ଏଫ୍ –୧୧/୨,
ୟୁନିଟ୍–୯(ଫ୍ଲାଟ୍)
ଭୋଇ ନଗର, ଭୁବନେଶ୍ୱର–୨୨

# ଭାରତୀୟ ସଂସ୍କୃତିରେ ଶକ୍ତିମୟୀ ଦୁର୍ଗା

**ଉମା ଶଙ୍କର ପ୍ରସାଦ**

ଆମ ଜନ୍ମଭୂମି ଭାରତବର୍ଷ ସ୍ୱୀୟ ପ୍ରାକ୍ତନୀ ସଂସ୍କୃତି, ସମୃଦ୍ଧା, ସଭ୍ୟତା, ପୁରାଣସିଦ୍ଧା, ସଦାଚାରିସିଦ୍ଧା ଓ ନାରୀ ସମ୍ମାନିତା ଯୋଗୁ ସମଗ୍ର ବିଶ୍ୱ ଦରବାରରେ ଏକ ସ୍ୱତନ୍ତ୍ର ଆସନ ଅଧିକାର କରିପାରିଛି । ଏହି ଉତ୍କଳ ଭୂମିର ମହତ୍ତ୍ୱକୁ ମୁକ୍ତ କଣ୍ଠରେ ଗାନ କରିଛନ୍ତି ତତ୍ତ୍ୱଦର୍ଶୀ କପିଳ ମହର୍ଷି–

‘ବର୍ଷାଣାଂ ଭାରତଃ ଶ୍ରେଷ୍ଠଃ
ଦେଶନାମୁତ୍କଳଃ ସ୍ମୃତଃ
ଉତ୍କଳସ୍ୟ ସମୋଦେଶୋ
ଦେଶୋନାସ୍ତି ମହୀତଳେ’

ଏହି ସଂସ୍କୃତି ସମ୍ପନ୍ନ ଉତ୍କଳୀୟ ଭୂଖଣ୍ଡରେ କେଉଁ ପ୍ରାଚୀନ କାଳରୁ ଶକ୍ତି ପୂଜାର ପରମ୍ପରା ଅଦ୍ୟାବଧି ପ୍ରଚଳିତ । ଯଦି ଆମେ ବିଭିନ୍ନ ଶାସ୍ତ୍ରର ସ୍ୱର୍ଣ୍ଣମୟୀ ପୃଷ୍ଠା ଓଲଟାଇବା ତେବେ ଆମେ ଉପଲବ୍ଧି କରିବା ଯେ ସମସ୍ତ ଶକ୍ତିର ମୂଳମନ୍ତ୍ର ଦେବୀ ଦୁର୍ଗା ସେ ବିଭିନ୍ନ ନାମ ଓ ରୂପରେ ବନ୍ଦିତା, ଯଥା:–

‘ପ୍ରଥମଂ ଶୈଳପୁତ୍ରୀଞ୍ଚ
ଦ୍ୱିତୀୟମ୍ ବ୍ରହ୍ମଚାରିଣୀ
ତୃତୀୟମ୍ ଚନ୍ଦ୍ରଘଣ୍ଟେତି
କୁଷ୍ମାଣ୍ଡେତି ଚତୁର୍ଥକମ
ପଞ୍ଚମମ୍ ସ୍କନ୍ଦମାତେତି
ଷଷ୍ଠଂ କାତ୍ୟାୟନୀ ତଥା
ସପ୍ତମ୍ କାଳରାତ୍ରେତି
ମହାଗୌରିତି ଚାଷ୍ଟମମ୍
ନବମ୍ ସିଦ୍ଧଦାତ୍ରିଚ
ନବଦୁର୍ଗା ପ୍ରକିର୍ତ୍ତିତା’

ଏହି ମହାଶକ୍ତି ହିଁ ଗୋଲକରେ ଶ୍ରୀରାଧା, ସାକେତରେ ଶ୍ରୀସୀତା, କ୍ଷୀରୋଦ ସାଗରରେ ଲକ୍ଷ୍ମୀ, ଦକ୍ଷକନ୍ୟା ସତୀ, ଦୁର୍ଗତିନାଶିନୀ ମେନକାପୁତ୍ରୀ ଦୁର୍ଗା ଅଟନ୍ତି । ସେ ମଧ୍ୟ ବାଣୀ ବିଦ୍ୟା ସରସ୍ୱତୀ, ସାବିତ୍ରୀ ଏବଂ ଗାୟତ୍ରୀ ଅଟନ୍ତି । ଏହି ମହାଶକ୍ତି ହିଁ ସର୍ବକାରଣ ରୂପା ପ୍ରକୃତିର ଆଧାର ଭୂତ ହେବାର ମହାକାରଣ ଅଟେ । ସେ ମାୟାଧିଶ୍ୱରୀ ଅଟନ୍ତି । ସେ ହିଁ ସର୍ଜନ-ପାଳନ ସଂହାରକାରିଣୀ ଆଦ୍ୟା ନାରାୟଣୀ ଶକ୍ତି ଅଟନ୍ତି । ସେ ପ୍ରକୃତିର ବିସ୍ତାର ସମୟରେ ଭର୍ତ୍ତା, ଭୋକ୍ତା ଓ ମହେଶ୍ୱର ଅଟନ୍ତି । ପରା ଓ ଅପରା ଦୁଇ ପ୍ରକୃତିର ସର୍ଜନା ତାଙ୍କରି ! ଯେଉଁଥିରେ ଦ୍ୱୈତ, ଅଦ୍ୱୈତର ସମାବେଶ ପ୍ରକୃତିରେ ସେ ପ୍ରକାଶିତ ହୁଅନ୍ତି ।

ସେହି ଶକ୍ତିମୟୀ ଦୁର୍ଗାଙ୍କର ଉତ୍ପତ୍ତି ସମ୍ପର୍କରେ ବିଭିନ୍ନ ମତ ପ୍ରକାଶ ପାଉଥିଲେ ସୁଦ୍ଧା ବାସ୍ତବିକ ଦେବୀ ହେଉଛନ୍ତି ତ୍ରିଗୁଣାତ୍ମିକା, ପତିତ ଜନଙ୍କ ବିଘ୍ନ, ଦୁଃଖ, ଶୋକ, ଯଥା ନରକ ଯନ୍ତ୍ରଣାରୁ ତାରଣ କରନ୍ତି ବୋଲି ସେ ଦୁର୍ଗା । ଏହାଛଡ଼ା ଦେବତାମାନଙ୍କର ଦୁର୍ଗତି ସମୟରେ ସେମାନଙ୍କ ତେଜରୂପୀ ଅନଳରୁ ଜନ୍ମ ନେଇଥିବା ନାରୀ ମୂର୍ତ୍ତିକୁ ବ୍ରହ୍ମା ଦୁର୍ଗା ରୂପେ ଆରାଧନା କରିଥିଲେ । ଅନେକଙ୍କ ମତରେ, ଦୁର୍ଗା ନାମକ ରାକ୍ଷସକୁ ବଧ କରିଥିବାରୁ ସେ ଦୁର୍ଗା ନାମରେ ଅଭିହିତା । ସେ ସୃଷ୍ଟି, ସ୍ଥିତି ଓ ପ୍ରଳୟକାରିଣୀ, ତେଣୁ ପୁରାତନ କାଳରୁ ଶକ୍ତିର ବୈଶିଷ୍ଟ୍ୟତା ଯୁଗେ ଯୁଗେ ମହାନ୍ ଭାବେ ପ୍ରତିପାଦିତ ହୋଇ ଆସୁଛି । ନାରୀ ସୃଷ୍ଟିକର୍ତ୍ତା ସେ ଯଦିଓ ଅବଳା, ଦୁର୍ବଳା, ମାତୃତୁଲ୍ୟା ସହନଶୀଳନୀ ସତ୍ୟ କିନ୍ତୁ ତାର ସୃଷ୍ଟି ଯେତେବେଳେ କୌଣସି ଆସୁରିକ ଶକ୍ତି ଦ୍ୱାରା ଅତ୍ୟାଚାରିତ ଓ ପୀଡ଼ିତ ହୁଏ, ସେତେବେଳେ ଦେବୀଶକ୍ତିର ଆବିର୍ଭୁତ ହୋଇ ମାତୃଶକ୍ତି ଭାବେ ଆସୁରିକ ଶକ୍ତିକୁ ବିନାଶ କରିଥାଏ । ତେଣୁ ସେ ଦୁର୍ଗତିନାଶିନୀ ଅଟନ୍ତି । ସେହି ଶକ୍ତିମୟୀ ମା'ଦୁର୍ଗାଙ୍କର ଧ୍ୟାନ ଏହିପରି ନିରୂପିତ ହୋଇଛି:-

କାଳାଭ୍ରାଭାଂ କଟାକ୍ଷୈରରୀ କୁଳଭୟଦାଂ
ମୌଳି ବଦ୍ଧେନ୍ଦୁ ରେଖାଂ
ଶଙ୍ଖ ଚକ୍ରଂ କୃପାଣାଂ ତ୍ରିଶିଖମପି
କରୌ ରୁଦ୍ଧହନ୍ତୀ ତ୍ରିନେତ୍ରାମ୍
ସିଂହସ୍କନ୍ଧାଧି ରୂଢ଼ାଂ ତ୍ରିଭୁବନ ମଖିଳଂ
ତେଜସା ପୂରୟନ୍ତୀ
ଧ୍ୟାୟେଦ୍ ଦୁର୍ଗା ଜୟାଖ୍ୟାଂ ତ୍ରିଦଶାପରିବୃତାଂ
ସେବିତାଂ ସିଦ୍ଧିକାମୈଃ ॥

ସିଦ୍ଧିଲାଭ ଇଚ୍ଛା କରୁଥିବା ପୁରୁଷ ଯାହାର ସେବା କରନ୍ତି ଯଥା ଦେବତା ଯାହାଙ୍କୁ ସର୍ବଦିଗରୁ ଘେରି ରହନ୍ତି, ସେହି ଜୟା ନାମ୍ନୀ ଦୁର୍ଗା ଦେବୀଙ୍କ ଧ୍ୟାନ କରି ତାଙ୍କର ଶ୍ରୀଅଙ୍ଗର ଆଭା କଳାମେଘ ପରି ଶ୍ୟାମ ଅଟେ । ସେ ନିଜ କଟାକ୍ଷରେ ଶତ୍ରୁ ସମୁଦାୟକୁ ଭୟ ଦେଖାଉଥିବା ତାଙ୍କ ମସ୍ତକରେ ଆବଦ୍ଧ ଚନ୍ଦ୍ରମାର ରେଖା ଶୋଭା ପାଇଥାଏ । ସେ ନିଜ ହସ୍ତରେ ଶଙ୍ଖ, ଚକ୍ର, କୃପାଣ ଓ ତ୍ରିଶୂଳ ଧାରଣ କରି ସିଂହ କାନ୍ଧରେ ଆରୂଢ଼ ହୋଇ ନିଜ ତେଜର ତିନିଲୋକଙ୍କୁ ପରିପୂର୍ଣ୍ଣ କରୁଛନ୍ତି ।

ଅତୀତର ଯଦି ପୁରାଣ ପୃଷ୍ଠାକୁ ରୋମନ୍ଥନ କରାଯାଏ ତେବେ ଦୁଇଟି ନାରୀ ଯୋଗୁଁ ଦୁଇଟି ମହାକାବ୍ୟର ସୃଷ୍ଟି । ଏକପକ୍ଷରେ ରାମାୟଣରେ ଗୋଟିଏ ନାରୀକୁ ରାବଣ ଅପରହରଣ କଲା । ଫଳରେ ଲଙ୍କା ଧ୍ୱଂସ ଓ ବଂଶ ନାଶ । ଅନ୍ୟ ପଟେ ମହାଭାରତରେ ମହାନୁଭବ ଦିଗ୍‌ଦର୍ଶୀ ବିଦୁଷମାନଙ୍କ ସଭାରେ ନାରୀକୁ ଉଲଗ୍ନ କରାଗଲା । ଫଳ ହେଲା ବଂଶ ନିପାତ ।

ମା'ଶକ୍ତିମୟୀ ସକଳ ଶକ୍ତିର ମୂଳମନ୍ତ୍ର । ଏ ସମାଜ ଆଜି କଳୁଷିତ, ପୃଥିବୀ ଆଜି ଧ୍ୱଂସାଭିମୁଖୀ ତୁମର କରୁଣାର ବାରି ସିଞ୍ଚନପୂର୍ବକ ଏ ସମାଜ ତଥା ପଥଭ୍ରଷ୍ଟା ଯୁବଗୋଷ୍ଠୀ, ରାଜନେତା, ଅଶୋଭନୀୟା ନାରୀ ଏ ସମସ୍ତଙ୍କ ମନରେ ସଦ୍‌ବୁଦ୍ଧି ପ୍ରଦାନ କରି ସେମାନଙ୍କୁ ସତ୍‌ମାର୍ଗରେ ପରିଚାଳିତ କର ମା' । ତୁମେ ମଙ୍ଗଳ ପ୍ରଦାୟିନି, ଶକ୍ତି ପ୍ରଦାୟନି....ସତ୍ୟ ପଥରେ ଆଗକୁ ବଢ଼ିଯିବା ପାଇଁ ତୋର ଶରତର ମହାପାର୍ବଣ ପୂଜାରେ, ସନ୍ତାନମାନଙ୍କୁ ଶକ୍ତି ପ୍ରଦାନ କର ମା' । ନୂତନ ସୃଷ୍ଟିର ସୃଜନା ପାଇଁ ଆଶୀର୍ବାଦ ଦିଅ ମା' ଏତିକି ପାଦରେ ନିବେଦନ ।

ସମ୍ପାଦକ, 'ମାର୍ଗଦର୍ଶୀ'
ଭଗଦ୍ ଲେନ୍,
ମେନ୍ ରୋଡ୍, ଖୋର୍ଦ୍ଧା



# ଶ୍ରୀଭୁବନେଶ୍ୱରୀ ଦେବୀଙ୍କ ତାତ୍ତ୍ୱିକ ରହସ୍ୟ

**ପଣ୍ଡିତ ଚକ୍ରଧର ଦାଶ**

ଅନନ୍ତକୋଟି ବ୍ରହ୍ମାଣ୍ଡ ଜନନୀ, ପରବ୍ରହ୍ମ ସ୍ୱରୂପିଣୀ ଅଭୟଦାୟିନୀ ମା ଭୁବନେଶ୍ୱରୀଙ୍କୁ ଜାଣିବା ପୂର୍ବରୁ ଦେବାଧିଦେବ ଭଗବାନ ଶିବଶଙ୍କର ଭୁବନେଶ୍ୱର ସର୍ବପ୍ରଥମ ଦୃଷ୍ଟିକୁ ଆସିଥାନ୍ତି । ଯେଉଁ ମନ୍ଦିର ମାଳିନୀ ନଗରୀ ସମଗ୍ର ବିଶ୍ୱରେ କଳା ସ୍ଥାପତ୍ୟ, ଧର୍ମ, ସଂସ୍କୃତି ଓ ବୀରତ୍ୱର ଗୌରବ ଗାରିମାମୟ ବୈଜୟନ୍ତୀକୁ ଉଡାଇ ଚାଲିଛି ଏବଂ ସମଗ୍ର ଭାରତରେ ଅଦ୍ୱିତୀୟ ପ୍ରସିଦ୍ଧ ଶୈବ ପୀଠ ଭାବରେ ପ୍ରସିଦ୍ଧି ଲାଭ କରିଛି– ସେହି ହିଁ ସର୍ବଜନବିଦିତ ଭୁବନେଶ୍ୱର ।

ଏକାମ୍ର ପୁରାଣ ଅନୁସାରେ ପ୍ରଥମ ଅଂଶର ଦ୍ୱିତୀୟ ଅଧ୍ୟାୟରେ କ୍ଷେତ୍ରରାଜ ଭୁବନେଶ୍ୱରରେ କୋଟିଏ ତେଜମୟ ଲିଙ୍ଗ ସଦୃଶ ଭଗବାନ ଲିଙ୍ଗରାଜଙ୍କ ପ୍ରାଦୁର୍ଭାବର ବର୍ଣ୍ଣନା ରହିଛି । ଏକାମ୍ର ପୁରାଣର ଦ୍ୱିତୀୟ ଅଂଶର ପ୍ରଥମ ଅଧ୍ୟାୟରେ ଏକାମ୍ରବନ ବା ଏକାମ୍ର କ୍ଷେତ୍ର ଭୁବନେଶ୍ୱରର ଅପୂର୍ବ ବର୍ଣ୍ଣନା ଦେଖିବାକୁ ମିଳେ । ପୂର୍ବେ ଏହି ଏକାମ୍ର କ୍ଷେତ୍ର ଦେବ ଦୁର୍ଲଭ ବୃକ୍ଷଲତା ଫଳ ଓ ପୁଷ୍ପରେ ପରିପୂର୍ଣ୍ଣ ଥିଲା । ଏଠାରେ ଏକ ଆମ୍ର ବୃକ୍ଷ ମୂଳରେ ଲିଙ୍ଗରାଜ ସ୍ଫଟିକ ଲିଙ୍ଗ ରୂପରେ ଆବିର୍ଭାବ ହୋଇଥିଲେ । ଏଠାରେ ଷୋହଳ ଦିନ ବ୍ରହ୍ମା ଦର୍ଶନ କରି ଭଗବାନ ଶଙ୍କରଙ୍କର ଦର୍ଶନ ପାଇଥିଲେ । ଭଗବାନ ସୂର୍ଯ୍ୟ ମଧ୍ୟ ଆସି ଶିବଙ୍କ ଆଦେଶରେ ଭାସ୍କରେଶ୍ୱର ରୂପେ ଏହି ମନ୍ଦିରରେ ଅବସ୍ଥାନ କରିଛନ୍ତି । ଧର୍ମରାଜ ମଧ୍ୟ ଏହି କ୍ଷେତ୍ରକୁ ଆସିଛନ୍ତି । ମେଘ ମଧ୍ୟ ଏହି କ୍ଷେତ୍ରକୁ ଆସିଥିବାରୁ ଭାସ୍କରେଶ୍ୱର ମନ୍ଦିର ନିକଟରେ ମେଘେଶ୍ୱର ଅବସ୍ଥାନ କରନ୍ତି ।

ଭଗବାନ ଶ୍ରୀ ରାମଚନ୍ଦ୍ର ଲଙ୍କା ବିଜୟ ପରେ ଅଶ୍ୱମେଧ ଯଜ୍ଞ କରି ତୀର୍ଥ ଯାତ୍ରାରେ ଆସି ବଶିଷ୍ଠ ଆଦି ମୁନିଋଷିଙ୍କ ସହିତ ଏହି କ୍ଷେତ୍ରରେ ପହଞ୍ଚି ଭଗବାନ ଲିଙ୍ଗରାଜଙ୍କର ପୂଜା ଅର୍ଚ୍ଚନା କରିଥିଲେ ।

ସ୍କନ୍ଦ ପୁରାଣାନୁସାରେ ଦିନେ ଚକ୍ରଧର ନାରାୟଣ କାଶୀରାଜାଙ୍କର କାର୍ଯ୍ୟକଳାପରେ କ୍ଷୁବ୍ଧ ହୋଇ ତାଙ୍କୁ ମାରିବା ନିମନ୍ତେ ଚକ୍ର ପ୍ରେରଣ କରିଥିଲେ । ଶିବ କାଶୀରାଜାଙ୍କୁ ରକ୍ଷା କରିବା ପାଇଁ ପାଶୁପତ ଅସ୍ତ୍ର ପ୍ରୟୋଗ କଲେ । ସୁଦର୍ଶନ ଚକ୍ର ପ୍ରଭାବରେ ତାହା ବ୍ୟର୍ଥ ହେବାରୁ ଶିବ ନିଜ ଭୁଲ ପାଇଁ ଭଗବାନଙ୍କୁ ସ୍ତୁତି କଲେ । ବିଷ୍ଣୁଙ୍କ ଆଦେଶରେ ଭଗବାନ ଶିବ ଏକାମ୍ର କ୍ଷେତ୍ରରେ ଅବସ୍ଥାନ କଲେ । ପୁରୁଷୋତ୍ତମ ମହାତ୍ମ୍ୟରୁ ଜଣାଯାଏ ଯେ ବିଷ୍ଣୁ ଗୟାସୁରକୁ ବଧ କରି ନିଜର ବିଜୟ ଗୌରବ ସ୍ୱରୂପ ପୁରୀରେ ଶଙ୍ଖ, ଭୁବନେଶ୍ୱରରେ ଚକ୍ର, ଯାଜପୁରରେ ଗଦା ଏବଂ କୋଣାର୍କରେ ପଦ୍ମ ସ୍ଥାପିତ କରିଥିଲେ । ସେଥିପାଇଁ ପୁରୀ ଶଙ୍ଖକ୍ଷେତ୍ର, ଭୁବନେଶ୍ୱର ଚକ୍ର କ୍ଷେତ୍ର, ଯାଜପୁର ଗଦା କ୍ଷେତ୍ର ଏବଂ କୋଣାର୍କ ପଦ୍ମକ୍ଷେତ୍ର ନାମରେ ପରିଚିତ ।

ବହୁ ପୌରାଣିକ ଐତିହାସିକ ଏବଂ କିମ୍ବଦନ୍ତୀ ଉପରେ ପ୍ରତିଷ୍ଠିତ ବହୁ ତଥ୍ୟ ସମ୍ବଳିତ ଭୁବନେଶ୍ୱର କଳା, ସ୍ଥାପତ୍ୟ, ଧର୍ମ, ସଂସ୍କୃତି ଆଦି କ୍ଷେତ୍ରରେ ବିଶ୍ୱବାସୀଙ୍କ ଦୃଷ୍ଟି ଆକର୍ଷଣ କରିପାରିଛି । ଓଡ଼ିଶାର ରାଜଧାନୀର ମାନ୍ୟତା ଲାଭ କରିପାରିଛି । ପୂର୍ଣ୍ଣାଙ୍ଗ ମନ୍ଦିର କେଶରୀ ବଂଶର ରାଜାଙ୍କ ଦ୍ୱାରା ନିର୍ମିତ ହୋଇ ଶୋଭା ପାଉଛି । ୧୬୦ଫୁଟ ଉଚ୍ଚତା ବିଶିଷ୍ଟ ଏହି ମନ୍ଦିରରେ ଯେଉଁ ଲିଙ୍ଗ ପୂଜା ପାଉଛନ୍ତି, ତାହା ଏକ ପ୍ରାକୃତିକ ରେଖା ଦ୍ୱାରା ଦୁଇ ଭାଗରେ ବିଭକ୍ତ ହୋଇଥିବାରୁ ଦୁଇ ଅଂଶକୁ ଶିବ ଓ ବିଷ୍ଣୁଙ୍କ ପ୍ରତୀକ ରୂପେ ପୂଜା କରାଯାଏ । ତେଣୁ ଲିଙ୍ଗରାଜ ହରିହର ରୂପେ ପୂଜା ପାଉଥିବାରୁ ତୁଳସୀ ଓ ବେଲପତ୍ର ଉଭୟ ଲାଗି ହୋଇଥାଏ । ମନ୍ଦିର ପ୍ରାଙ୍ଗଣର ୭୦ଟି ମନ୍ଦିର ବିଦ୍ୟମାନ । ମନ୍ଦିର ନିର୍ମାଣର କଳାକୃତି ଉନ୍ନତମାନର ହୋଇଥିବାରୁ ଅସଂଖ୍ୟ ଦର୍ଶକ ଏଥିପ୍ରତି ଆକର୍ଷିତ । ମନ୍ଦିରମାନଙ୍କ ମଧ୍ୟରେ ପାର୍ବତୀ ମନ୍ଦିର, ଭୁବନେଶ୍ୱରୀ ମନ୍ଦିର ଏବଂ ନୃସିଂହ ମନ୍ଦିର ପ୍ରଧାନ ।

ଭଗବାନ ଲିଙ୍ଗରାଜ ହିଁ ଭୁବନର ଈଶ୍ୱର ହୋଇଥିବାରୁ ଭୁବନେଶ୍ୱର ନାମରେ ପ୍ରସିଦ୍ଧ ଅଟନ୍ତି । ମନ୍ଦିରର ବାମ ପାର୍ଶ୍ୱରେ ତ୍ରିଭୁବନ ପାଳିନୀ ମାତା ଭୁବନେଶ୍ୱରୀଙ୍କ ମନ୍ଦିର ବିଦ୍ୟମାନ । ଭୁବନେଶ୍ୱର ଅଧିଷ୍ଠାତା ଦେବ ହୋଇଥିବାରୁ ଭୁବନେଶ୍ୱରୀ ଦେବୀ ମଧ୍ୟ ଏକାମ୍ର କ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀ ରୂପେ ପରିପୂଜିତା ।

ଲିଙ୍ଗ ପୁରାଣ ଅନୁସାରେ ଅତୀତରେ ଏହି ଏକାମ୍ର କ୍ଷେତ୍ର ରାକ୍ଷସମାନଙ୍କ ଚରାଭୂମି ଥିଲା । ଏଠାରେ ମୁନିଋଷିମାନେ ଶାନ୍ତିରେ ଯାଗ ଯଜ୍ଞାଦି କରିପାରୁ ନଥିଲେ । କୀର୍ତ୍ତି ଏବଂ ବାସ ନାମକ ଅସୁରଦ୍ୱୟଙ୍କ ଅତ୍ୟାଚାରରେ ସମସ୍ତେ ଅତିଷ୍ଠ ହୋଇପଡିଥିଲେ । ସେ ଦୁହିଁଙ୍କୁ ବଧ କରିବା ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ପକ୍ଷରେ ସମ୍ଭବ ନଥିଲା । ବିନା ଶକ୍ତିଙ୍କ ସହାୟତାରେ ରାକ୍ଷସ ବଧ ଅସମ୍ଭବ ଜାଣି ଭଗବାନ ଶିବ ଦେବୀଙ୍କୁ ଡାକି ସ୍ଥାନର ପବିତ୍ରତା ରକ୍ଷା ଏବଂ ଅସୁର ଦ୍ୱୟଙ୍କ ବିନାଶ କଥା ଜଣାଇଲେ । ଦେବୀ ସେଠାରେ କିଛିଦିନ ଅବସ୍ଥାନ କରି ଲିଙ୍ଗ ପୂଜା ପୂର୍ବକ ଆନନ୍ଦରେ ରହୁଥିଲେ । ଦିନେ ଦେବୀ ଦେଖିଲେ ଗୋଟେ ଶୁକ୍ଳ ବର୍ଣ୍ଣର ଗାଈ ଲିଙ୍ଗ ଉପରେ ପହ୍ନାରୁ ଦୁଗ୍ଧ ଧାର ଦେଇ ପ୍ରଦକ୍ଷିଣ କରି ଫେରିଯାଉଛନ୍ତି । ତାହା ପରଠାରୁ ଦେବୀ ଗୋପାଳୁଣୀ ବେଶ ଧରି ଗାଈମାନଙ୍କର ରକ୍ଷଣାବେକ୍ଷଣ କଲେ । ଏକଦା ଦେବୀ ବନ ମଧ୍ୟରୁ ଫୁଲ ତୋଳୁଥିବା ସମୟରେ କୀର୍ତ୍ତି ଏବଂ ବାସ ରାକ୍ଷସଦ୍ୱୟ ଦେବୀଙ୍କୁ ଦେଖି କାମୋନ୍ମତ ହୋଇ ବିବାହ କରିବା ପାଇଁ ନିବେଦନ କଲେ । ଦେବୀ କହିଲେ ମୋର ଏକ ବ୍ରତ ଅଛି । ଯିଏ ମୋର ପାଦକୁ ଧରି ମସ୍ତକରେ ରଖିବ ମୁଁ ତାକୁ ହିଁ ବିବାହ କରିଛି । ଅସୁରଦ୍ୱୟ ଦେବୀଙ୍କ ସର୍ତ୍ତରେ ରାଜି ହୋଇଗଲେ । ଦେବୀଙ୍କ ପାଦକୁ ଧରି କୀର୍ତ୍ତି ଓ ବାସ ନିଜ ନିଜ ମୁଣ୍ଡ ଉପରେ ରଖିଦେଲେ । ଦେବୀଙ୍କ ପଦାଘାତରେ ରାକ୍ଷସଦ୍ୱୟ ପୋତି ହୋଇଗଲେ । ଦେବତାମାନେ ଆକାଶରୁ ଜୟଧ୍ୱନୀ କଲେ । ଦେବୀ କ୍ଳାନ୍ତ ହୋଇ ଏକାମ୍ର କ୍ଷେତ୍ରରେ ବିଶ୍ରାମ କରୁଥିବା ସମୟରେ ଭଗବାନ ଶିବଙ୍କର ଉପସ୍ଥିତ ହୋଇ ଦେବୀଙ୍କ ତୃଷା ଦୂର ନିମନ୍ତେ ତ୍ରିଶୂଳ ଭେଦ କରି ଏକ ତଡାଗ ସୃଷ୍ଟି କଲେ । ସେଥିରୁ ଜଳ ଆଣି ଦେବୀଙ୍କୁ ପାନ କରାଇଲେ । ସେହି ତଡାଗ ବିନ୍ଦୁସାଗର ନାମରେ ପରିଚିତ । ସେହି ଗୋପାଳୁଣୀ ଦେବୀ ହିଁ ଭୁବନେଶ୍ୱରୀ ରୂପରେ ପରିପୂଜିତା । ଲିଙ୍ଗରାଜ ମନ୍ଦିରର ବାମ ପାର୍ଶ୍ୱରେ ଭୁବନେଶ୍ୱରୀ ମନ୍ଦିର ଅବସ୍ଥିତ ।

ଭୁବନେଶ୍ୱରୀ ଦେବୀଙ୍କ ମହିମା, ନିବାସ, ସ୍ୱରୂପ ଓ ପରାକ୍ରମ ଭଗବାନ ବେଦବ୍ୟାସ ଶ୍ରୀମଦ୍ ଦେବୀ ଭାଗବତରେ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ଶ୍ରୀମଦ୍ ଦେବୀ ଭାଗବତ ଉତ୍ତରାର୍ଦ୍ଧ ୧୨ଶ ସ୍କନ୍ଦର ୧୦ମ ଏବଂ ୧୧ଶ ଅଧ୍ୟାୟରେ ବର୍ଣ୍ଣିତ ଯେ ବ୍ରହ୍ମଲୋକଠାରୁ ଊର୍ଦ୍ଧ୍ୱରେ ସର୍ବଲୋକ ଅବସ୍ଥିତ । ସେହି ମଣିଦ୍ୱୀପ ଭଗବତୀଙ୍କ ଆବାସସ୍ଥାନ । ସୁବର୍ଣ୍ଣ ଜଟିତ ନାନାଦି ରତ୍ନ ଖଚିତ, ହଜାରେ ସ୍ତମ୍ଭ ବିଶିଷ୍ଟ, ଅନେକ ଯୋଜନ ବିସ୍ତୃତ, ନାନାଦି ବୃକ୍ଷଲତା ଦ୍ୱାରା ଆଚ୍ଛାଦିତ ପକ୍ଷୀମାନଙ୍କ କାକଳି ଶବ୍ଦରେ ମୁଖରିତ, ଦିବ୍ୟ ଚିନ୍ତାମଣି ଗୃହରେ ସମସ୍ତ ଶୃଙ୍ଗାର ବେଶରେ ସମ୍ପନ୍ନ, ସମସ୍ତ ସୌନ୍ଦର୍ଯ୍ୟର ଆଧାରଭୂତା, କରୁଣାରେ ଓତପ୍ରୋତଃ ଦେବୀ ପରିଶୋଭିତ । ଦେବୀ କୋଟି କୋଟି ସୂର୍ଯ୍ୟ ଏବଂ ଚନ୍ଦ୍ରମାର କାନ୍ତି ଧାରଣ କରିଥାନ୍ତି । ଅସଂଖ୍ୟ ସଖିଗଣ, ଦାସୀଗଣ, ଦେବାଙ୍ଗନା ଗଣ ତଥା ଅନେକ ଦେବତା ଦେବୀଙ୍କ ଚାରିପାଖରେ ଘେରି ରହିଥାନ୍ତି ଏବଂ ଦେବୀଙ୍କ ଉପାସନାରେ ତତ୍ପର ରହିଥାନ୍ତି ।

ଜଗଦୀଶ୍ୱରୀ ଭୂଲୋକ, ଭୁବଲୋକ, ସ୍ୱର୍ଗଲୋକ ଆଦିକୁ ସଞ୍ଚାଳନ କରିଥାନ୍ତି । ଦେବୀ ମଧ୍ୟ ଜଗତର ରକ୍ଷଣ, ପୋଷଣ ଏବଂ ନିୟନ୍ତ୍ରଣ କରିଥାନ୍ତି । ଭଗବତୀ ଉଦୀୟମାନ ସୂର୍ଯ୍ୟବତ କାନ୍ତିମତୀ, ତ୍ରିନେତ୍ରା ଓ ଉନ୍ନତ କୁଚ ଯୁଗଳ ଦ୍ୱାରା ସୁଶୋଭିତ । ଜଗଦମ୍ବା ଭୁବନେଶ୍ୱରୀଙ୍କ ସ୍ୱରୂପ ସୌମ୍ୟ ଓ ଅଙ୍ଗକାନ୍ତି ଅରୁଣ ଅଟେ । ତାଙ୍କ ମୃଦୁ ହାସ୍ୟରୁ କୃପା ଦୃଷ୍ଟିର ସୂଚନା ମିଳେ । ଶାସନ ଶକ୍ତିର ସୂଚନା ସ୍ୱରୂପ ଅଙ୍କୁଶ ପାଶ ଆଦିକୁ ସେ ଧାରଣ କରିଛନ୍ତି । ଭକ୍ତମାନଙ୍କୁ ଅଭୟ ଏବଂ ସମସ୍ତ ସିଦ୍ଧି ପ୍ରଦାନ କରିବା ତାଙ୍କର ସ୍ୱାଭାବିକ ଗୁଣ, ଦେବୀଙ୍କ ସ୍ୱରୂପ ହ୍ରୀଂ, ଏହି ବୀଜମନ୍ତ୍ରରେ ସର୍ବଦା ବିଦ୍ୟମାନ ।

ଶକ୍ତିର ମାତୃ ଉପାସନା ବହୁ ପ୍ରାଚୀନ । ପ୍ରକୃତି ଓ ପୁରୁଷ ମଧ୍ୟରେ ପ୍ରକୃତି ହିଁ ମାର୍ଗ ହୋଇଥିବାରୁ ତିନିଲୋକଙ୍କ ପିତାଙ୍କଠାରୁ ସେ ଗରୀୟସୀ । ଗୁରୁ ମଧ୍ୟରେ ମାତାହିଁ ପରମ ଗୁରୁ । ବ୍ରହ୍ମମୟୀ ମାତାଙ୍କ ଉପାସନା ଦ୍ୱାରା ମନୁଷ୍ୟ ଅସୀମ ଶକ୍ତିର ଅଧିକାରୀ ହୋଇଥାଏ । ବିଶ୍ୱରେ ଯେତେ ବଡ ବଡ ପଦାର୍ଥ ରହିଛି, ସେ ସମସ୍ତ ନିଜ ନିଜ ଶକ୍ତିରେ ହିଁ ନିଜ ଅସ୍ତିତ୍ୱକୁ ରଖିଛନ୍ତି । ଏଣୁ ଶକ୍ତି ବିଶ୍ୱଧର, ବିଶ୍ୱାଧାର । ଶକ୍ତି ବିନା ଜଗତ ମୃତ ସଦୃଶ । ମାତୃଶକ୍ତି ବିନା ସୃଷ୍ଟି ସଂରକ୍ଷଣ ଅସମ୍ଭବ । ଦକ୍ଷ ପ୍ରଜାପତି ଶିବଙ୍କୁ ଅବଜ୍ଞା କରି ଯଜ୍ଞାହୂତି ଦେବାରୁ ସ୍ୱାମୀଙ୍କ ଏତାଦୃଶ ଅବମାନନାକୁ ସହ୍ୟ କରିନପାରି ସତୀ ଯଜ୍ଞକୁ ଧ୍ୱଂସ କରି ଆତ୍ମାହୂତି ଦେଲେ । ତାଙ୍କର ଦେହାବଶେଷ ଯେଉଁ ୫୧ଟି ସ୍ଥାନରେ ପଡିଲା ସେ ସ୍ଥାନମାନଙ୍କରେ ପବିତ୍ର ଶକ୍ତିପୀଠର ପ୍ରାଦୁର୍ଭାବ ହେଲା । ତନ୍ମଧ୍ୟରେ ଓଡ଼ିଶାର ଯାଜପୁରର ବିରଜା ଏବଂ ଶ୍ରୀକ୍ଷେତ୍ରର ବିମଳା ଅନ୍ୟତମ ଶକ୍ତିପୀଠ ରୂପେ ପରିଗଣିତ । ଶକ୍ତି ସ୍ୱରୂପ ଭଗବତୀଙ୍କର ଅନେକ ରୂପ ।

ଦଶମହାବିଦ୍ୟା ରୂପେ ସେ କାଳୀ, ତାରା, ଶୋଡଶୀ, ଭୁବନେଶ୍ୱରୀ, ଛିନ୍ନମସ୍ତା, ଭୈରବୀ, ଧୂମାବତୀ, ବଗଳା, ମାତଙ୍ଗୀ ଏବଂ କମଳା । ସେହି ନବଦୁର୍ଗା-ଶୈଳପୁତ୍ରୀ, ବ୍ରହ୍ମଚାରିଣୀ, ଚନ୍ଦ୍ରଘଣ୍ଟା, କୁଷ୍ମାଣ୍ଡା, ସ୍କନ୍ଦମାତା, କାତ୍ୟାୟିନୀ, କାଳରାତ୍ରି ଏବଂ ସିଦ୍ଧିଦାତ୍ରୀ । ବ୍ରହ୍ମା, ବିଷ୍ଣୁ ଏବଂ ଶିବଙ୍କ ପରି ସେ ହେଉଛନ୍ତି ତ୍ରିଶକ୍ତି ମହାକାଳୀ, ମହାଲକ୍ଷ୍ମୀ ଓ ମହା ସରସ୍ୱତୀ । ସୃଷ୍ଟିରେ ବିଭିନ୍ନ ରୂପରେ ମାତୃଶକ୍ତିର ଅନୁପମ ସ୍ନେହପୂର୍ଣ୍ଣ ଦୟା ପୂର୍ଣ୍ଣମାତ୍ରାରେ ନିହିତ । ଅନନ୍ତ କୋଟି ବ୍ରହ୍ମାଣ୍ଡର ଜନନୀ କରୁଣାମୟୀ, ପୁତ୍ରବତ୍ସଳା ଜଗତଜନନୀଙ୍କର ଅହୈତୁକୀ କରୁଣା ବିନା ଜୀବର ବ୍ୟାବହାରିକ ତଥା ପାରମାର୍ଥିକ କଲ୍ୟାଣ ସମ୍ଭବ ନୁହେଁ, କୌଣସି କ୍ଷେତ୍ରରେ ଶକ୍ତିପୂଜାର ଅଭାବରେ ଜୀବର ଅନ୍ୟଗତି ନାହିଁ । ଦେବୀ ବିଶ୍ୱେଶ୍ୱରୀ ଭାବେ ବିଶ୍ୱକୁ ପାଳନ କରିଥାନ୍ତି । ବିଶ୍ୱରୂପା ଭାବରେ ବିଶ୍ୱକୁ ଧାରଣ କରିଥାନ୍ତି ଏବଂ ରୁଦ୍ରାଣୀ ରୂପରେ ବିଶ୍ୱକୁ ସଂହାର କରିଥାନ୍ତି । ତାଙ୍କଠାରେ ରହିଛି ସୃଷ୍ଟି, ପାଳନ ଓ ବିନାଶର ଶକ୍ତି । ସେ ବ୍ରହ୍ମାଙ୍କର ଶକ୍ତିଭାବେ ବ୍ରହାଣୀ ନାରାୟଣଙ୍କ ଶକ୍ତିଭାବେ ନାରାୟଣୀ, ମହେଶ୍ୱରଙ୍କ ଶକ୍ତିଭାବେ ମାହେଶ୍ୱରୀ ଅଟନ୍ତି । ସେ ସର୍ବ ଦେବମୟୀ, ଅଦ୍ୱିତୀୟା, ପରମେଶ୍ୱରୀ, ଅରୂପା, ଅନାଦି, ଅଜନ୍ମା, ଅଯୋନୀସମ୍ଭୁତା, ସାକ୍ଷୀରୂପା । ଶରଣଗତ ସନ୍ତାନଙ୍କ ପାଇଁ ଜଗତ୍‌ଜନନୀ ଦିବ୍ୟରୂପ ଧାରଣ କରି ଅନିର୍ବଚୀୟ ଲୀଳା ପ୍ରକଟ କରିଥାନ୍ତି ।

ବିଭିନ୍ନ ପୁରାଣରେ ଦେବୀଙ୍କ ଦିବ୍ୟ ଚରିତ ଅବତାରଣା କରାଯାଇ ଶରତ କାଳରେ ବିଶେଷ ମହୋତ୍ସବର ପ୍ରବର୍ତ୍ତନ କରାଯାଇଛି । ଭିନ୍ନ ଭିନ୍ନ ପୁରାଣରେ କୁହାଯାଇଛି ଯେ ମହାଦେବୀ ପ୍ରବଳପରାକ୍ରମୀ ଲଙ୍କେଶ୍ୱର ରାବଣ, ମହିଷାସୁର, ଶୁମ୍ଭ ନିଶୁମ୍ଭ, ଚଣ୍ଡମୁଣ୍ଡ, ରକ୍ତବୀର୍ଯ୍ୟ ଆଦି ଅସୁର ବିନାଶ କରିବା ପାଇଁ ଶରତ କାଳରେ ଦେବତାଙ୍କ ଦ୍ୱାରା ବୋଧିତ ହୋଇଥିବାରୁ ଦେବୀଙ୍କ ବାର୍ଷିକ ମହୋତ୍ସବ ପାଳନ ତଥା ମହାତ୍ମ୍ୟ ଶ୍ରବଣ ଦ୍ୱାରା ସକଳ ବାଧା ପ୍ରଶମନ ହୋଇ ଧନଧାନ୍ୟ ଓ ପୁତ୍ର ଲାଭ ହୋଇଥାଏ । ଓଡ଼ିଶାର ସମସ୍ତ ଦେବୀପୀଠମାନଙ୍କରେ ଶାରଦୀୟ ଦୁର୍ଗାପୂଜା ଅବସରରେ ଶାସ୍ତ୍ରୋକ୍ତ ବିଧିରେ ଦେବୀଙ୍କର ପୂଜାଅର୍ଚ୍ଚନା, ହୋମଯଜ୍ଞ, ଚଣ୍ଡୀପାଠ ଆଦି କରାଯାଇଥାଏ । ସ୍ଥଳ ବିଶେଷରେ ଦେବୀ ମହାତ୍ମ୍ୟ ପ୍ରବଚନ, ଭଜନ ଓ ସାଂସ୍କୃତିକ କାର୍ଯ୍ୟକ୍ରମ କରାଯାଇଥାଏ ।

ସର୍ବୋପରି ବିଚାର କଲେ ଆସୁରିକ ଶକ୍ତିର ବିନାଶ ତଥା ଧର୍ମ, ଅର୍ଥ, କାମ, ମୋକ୍ଷାଦି ପ୍ରାପ୍ତି ନିମନ୍ତେ ଦେବୀପୀଠ ସମୂହରେ ଶ୍ରଦ୍ଧା ଓ ଭକ୍ତିର ସହିତ ଶତାବ୍ଦୀ ଶତାବ୍ଦୀ ଧରି ସାରଦୀୟ ଦୁର୍ଗୋତ୍ସବ ପାଳନ ହୋଇ ଆସୁଛି । ଦୁର୍ଗତିର ଦୁର୍ଗମ ଦୁର୍ଗରେ ସମ୍ପ୍ରତି ବନ୍ଦୀ ମାନବ ଜଗଜ୍ଜନନୀଙ୍କ କୃପା ଭିକ୍ଷା କରିବା ସହିତ ହିଂସା, ଅଭିମାନ, କ୍ରୋଧ, ଈର୍ଷା, ଆତ୍ମଗ୍ଲାନି ପ୍ରଭୃତିକୁ ବଳିଦେଇ ଶରଣାପନ୍ନ ହେବାହିଁ ଯଥାର୍ଥ ଉପାସନା ଅଟେ । ଏହି ବିଶାଳବିଶ୍ୱ ଏକ ସୀମାରେଖା ବିହୀନ ମାୟାଜାଲ ଘେରା ଅଞ୍ଚଳ । ଏଠାରେ ବସ୍ତୁବାଦ ଓ ବାସ୍ତୁବାଦକୁ ନେଇ ଚାଲିଛି ନିରନ୍ତର ସଂଘର୍ଷ । ଇତିହାସ ଓ ପୁରାଣ ପୃଷ୍ଠାରେ ଏହାର ଦୃଷ୍ଟାନ୍ତ କିଛି କମ୍ ନୁହେଁ । ପାର୍ଥିବ ମୋହ ମାୟାରେ ମୋହଗ୍ରସ୍ତ ଆସୁରିକ ଚରିତ୍ରଗଣ ଯେତେବେଳେ ମାନବ ଜୀବନର ମୂଲ୍ୟବୋଧକୁ ନଷ୍ଟଭ୍ରଷ୍ଟ କରି ଇନ୍ଦ୍ରିୟସୁଖ ଓ ଭୋଗବିଳାସକୁ ଆମନ୍ତ୍ରିତ କରେ, ସେତେବେଳେ ସେ ଜାଣେନା ଏହାର ପରିଣାମ କେତେ ଭୟଙ୍କର ଓ ଯନ୍ତ୍ରଣା ଜର୍ଜରିତ । ହିଂସା, ଦ୍ୱେଷ, ଗର୍ବ, ଅହଙ୍କାର, କାମୁକତା, ନିଷ୍ଠୁରତା, ସ୍ୱାର୍ଥପରତା ଓ ନୃଶଂସତା ଏ ସମସ୍ତ ଆସୁରୀ ସମ୍ପଦା ତଥା ଅଜ୍ଞାନର ଦ୍ୟୋତକ ଏବଂ ଅବିଦ୍ୟା, ଯାହାକି ଥିଲା ମହିଷାସୁରର । ଭକ୍ତି, ସତ୍ୟ, କ୍ଷମା, ଦୟା, ପରୋପକାରିତା, ସରଳତା, ଉଦାରତା, ସଂଯମ, ଧୈର୍ଯ୍ୟ, ପବିତ୍ରତା ଆଦି ଦିବ୍ୟଗୁଣଗୁଡ଼ିକ ଦୈବୀ ସମ୍ପଦା ଅନ୍ତର୍ଗତ ହୋଇଥିବାରୁ ମୁକ୍ତିଦାୟିନୀ ବିଦ୍ୟା, ଅବିଦ୍ୟା ବିନାଶକାରିଣୀ । ଈଶ୍ୱର ପରାୟଣତା, ଆଧ୍ୟାତ୍ମିକତା ପାଇଁ ସାରା ବିଶ୍ୱରେ ଭାରତ ଯେଉଁଠି ପ୍ରତିଷ୍ଠା ଲାଭ କରିଥିଲା- ଆଜି କିନ୍ତୁ ସେଠାରେ ଭୌତିକ ବିଜ୍ଞାନର ଚରମ ବିକାଶ, ପାଶ୍ଚାତ୍ୟ ସଂସ୍କୃତିର ଚାଲିଚଳନ, ବେଶଭୂଷା, ଭୋଗବିଳାସ, ଖାଦ୍ୟପେୟ, ରୀତିନୀତି ଆପଣାର ହୋଇପାରିଛି । ବାହ୍ୟାଡମ୍ବର, ବିଳାସପୂର୍ଣ୍ଣ ଜୀବନ, କାମିନୀକାଞ୍ଚନର ଆସକ୍ତିରେ ଅନ୍ଧମଣିଷ ମରୁ ମରିଚିକା ପଥରେ ଚାଲିଛି । ଚାରିଆଡେ ସୃଷ୍ଟି ହୋଇଥିବା ଅଶାନ୍ତ ବାତାବରଣ ଶାନ୍ତିପ୍ରିୟ ପ୍ରାଣୀମାନଙ୍କ ବଞ୍ଚିବା ଅଧିକାର ପ୍ରତି ବିପଦ ସୃଷ୍ଟି କରିଛି । ଦେବୀଙ୍କ ନାମରେ ସ୍ୱାର୍ଥପର ମଣିଷ ନିଷ୍ଠୁର ନିରୀହ ପଶୁପକ୍ଷୀଙ୍କୁ ବଳିଦେଇ ନିଜର ଜିହ୍ୱା ଲାଳସା ମେଣ୍ଟାଇ ଚାଲିଛି । ବଳିର ଅର୍ଥ ନୁହେଁ ନିରୀହ ପଶୁପକ୍ଷୀଙ୍କୁ ବଧ କରି ନିଜର ପଶୁ ପ୍ରବୃତ୍ତିକୁ ଚରିତାର୍ଥ କରି ଜଗଜ୍ଜନନୀଙ୍କ କୃପା ଲାଭ କରିବା । କେଉଁ ଜନନୀ କେବେ ତାର ସନ୍ତାନର ରକ୍ତ, ମାଂସ ଚାହେଁ କି ? ଯେଉଁ ନାରୀ ଆମ ସଂସ୍କୃତିରେ ଜାୟା ଜନନୀ ଓ ଭଗିନୀର ଅଧିକାରିଣୀ ସେମାନେ ଆଜି ନିଷ୍ଠୁର କାମୁକର ଭୋଗ୍ୟ ବସ୍ତୁ । ବିଭିନ୍ନ ସମାଚାର ଅନୁଧ୍ୟାନ କଲେ ଜଣାଯାଏ- ଅସଂଖ୍ୟ କନ୍ୟା ଶିଶୁଙ୍କର ଭ୍ରୁଣ ହତ୍ୟା ପରି ଜଘନ୍ୟ କାର୍ଯ୍ୟ ରାକ୍ଷସ ରାଜର ପ୍ରମାଣ ଦିଏ । ମାତାଙ୍କ ନିକଟରେ ବଳିଦେବା ମନା ନାହିଁ । ନିଜର ଗର୍ବ, ଅହଙ୍କାର, ହିଂସା, କାମୁକତା, ନିଷ୍ଠୁରତା ଆଦି ଦୁର୍ଗୁଣକୁ ବଳି ଦେଇ

ଦେବୀଙ୍କ ଶରଣପନ୍ନ ହେଲେ ତାହାହିଁ ହେବ ଦେବୀଙ୍କ ଯଥାର୍ଥ ପୂଜା ଉପାସନା । ମାତୃଶକ୍ତି ହିଁ ମହାଶକ୍ତି । ଜୀବନର ସୃଷ୍ଟି କାରିଣୀ, ଜ୍ଞାନଦାୟିନୀ, ପ୍ରେରଣାଦାୟିନୀ, ଅସୀମ ଶକ୍ତିଦାୟିନୀ ଏବଂ କରୁଣାକାରିଣୀର ଉତ୍ସ ।

ମାନବ ଜୀବନରେ ଏପରି ସମୟ ଆସିନାହିଁ, ଯେଉଁ ସମୟରେ ସର୍ବବ୍ୟାପିନୀ, ଦୁର୍ଗତିନାଶିନୀ ମାତୃଶକ୍ତି ଭଳି ମହାଶକ୍ତିର ଏକାନ୍ତ ଉପସ୍ଥିତିକୁ ଉପଲବ୍ଧ କରାଯାଇପାରିନାହିଁ । ସମାଜର ପରିବର୍ତ୍ତନ ବା ଆବର୍ତ୍ତନ ପାଇଁ ଯେଉଁ ବୈଦିକ ଧର୍ମଧାରା ପ୍ରଚଳିତ ତାହା ମଧ୍ୟରେ ମାତୃ ବନ୍ଦନାର ତାତ୍ତ୍ୱିକ ରହସ୍ୟ ପ୍ରଚ୍ଛନ୍ନ ଭାବରେ ନିହିତ । ଏହା ହିଁ ଭାରତର ମହାନ ଶକ୍ତି ତତ୍ତ୍ୱର ପରମ ଆଦର୍ଶ ।

ଆମ ଭାରତୀୟ ସଂସ୍କୃତିର ଶକ୍ତିତତ୍ତ୍ୱର ଅମୃତମୟ ଦିଗନ୍ତକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ମାତୃ ବନ୍ଦନାର ଆଧ୍ୟାତ୍ମିକ ଧର୍ମଧାରା ମଧ୍ୟରେ ଯେଉଁ ଅସୀମ ମହାମାନବୀୟ ପୀୟୁଷମୟ ଭାବଧାରା ଅନୁଭବ ହୋଇଛି ତାହା ହେଉଛି 'ବ୍ରହ୍ମ ସତ୍ୟ ଜଗତ୍ ମିଥ୍ୟା' । ସୃଷ୍ଟି ବିନାଶଶୀଳ କିନ୍ତୁ ବ୍ରହ୍ମ ଅବିନାଶୀ, ଅଜର, ଅମର ।

ଜଗଜ୍ଜନନୀ ଶ୍ରୀଭୁବନେଶ୍ୱରୀ ଦେବୀଙ୍କଠାରୁ ସମସ୍ତ ଦେବାଦେବୀଙ୍କର ଆବିର୍ଭାବ ହୋଇଥିବାରୁ ସେ ସମଗ୍ର ଭୁବନର ଈଶ୍ୱରୀ ଅଟନ୍ତି । ପବିତ୍ର ଶାରଦୀୟ ଦୁର୍ଗାପୂଜା ଅବସରରେ ପବିତ୍ର ଭାବରେ ଭକ୍ତି ସହକାରେ ମା' ଭଗବତୀଙ୍କର ପୂଜାର୍ଚ୍ଚନା କଲେ ସକଳ ବାଧାବିଘ୍ନ ମାତାଙ୍କ କୃପାରୁ ଦୂର ହେବା ସହିତ ସୁଖ, ଶାନ୍ତି, ଐଶ୍ୱର୍ଯ୍ୟ ଲାଭ ହେବ । ଧର୍ମ, ଅର୍ଥ, କାମ, ମୋକ୍ଷାଦି ଚତୁର୍ବର୍ଗ ପ୍ରାପ୍ତ ହେବ । ଏହା ହିଁ ହେଉଛି ଶ୍ରୀଭୁବନେଶ୍ୱରୀ ଦେବୀଙ୍କ ତାତ୍ତ୍ୱିକ ରହସ୍ୟ ।

ଗୁରୁକୃପା ଭବନ
କଳିଙ୍ଗ ନଗର-୭, ଭୁବନେଶ୍ୱର

# ମାତୃ ରୂପେଣ ସଂସ୍ଥିତା

**ଗୋଲକ ବିହାରୀ ନାୟକ**

ସର୍ବ ବିଭା ବିମଣ୍ଡିତା ଭୁବନ ମୋହିନୀ ମା'
ଶାରଳା ଶଙ୍କରୀ ଗୋ
ଅପରୂପା ସ୍ନେହମୟୀ ସ୍ୱୟଂସିଦ୍ଧା ଅନସୂୟା
ଭୂମା କ୍ଷେମଙ୍କରୀ ଗୋ
ଯେତେ ଶାନ୍ତ ସେତେ କାନ୍ତ କମନୀୟ ତୁହି ମା' ।
ଦୟାକର ସନ୍ତାନରେ ଏତିକି ଗୁହାରି ମା'
ସୌମ୍ୟା ସ୍ନିଗ୍ଧା ସନାତନୀ ସଂକଟ ମୋଚନୀ ମା'
ହାସ୍ୟ ଲାସ୍ୟମୟୀ ଗୋ
ଦୃଷ୍ଟ ସଂହାରିଣୀ ଭୀମା ଉଗ୍ରଚଣ୍ଡୀ ମହାମାୟା
ରୂପ ରସମୟୀ ଗୋ
ସୌର୍ଯ୍ୟବତୀ ଶାକମ୍ଭରୀ ପ୍ରଳୟଙ୍କରୀ ତୁ ମା'
ଜଣାଏଁ ଦଇନି ମୋର ତୋର ପଦେ ଧ୍ୟାୟୀ ମା'... ।

ତୁହି ଗୋ ଶାରଦେ ଅମ୍ଭେ ବୁଦ୍ଧି ପ୍ରଦାୟିନୀ ମା'
ଶିବାନୀ ଭବାନୀ ଗୋ
ତୁହି ଗୋ ପରମେଶ୍ୱରୀ ଭୈରବୀ ତୁ ମହାକାଳୀ
ଜଗତ ଜନନୀ ଗୋ
ନାଶି ଖଳ ଛଳ ଲୋଳ ଢମ ଆଚରଣ ମା'
ପାଳ ତୋ' ସନ୍ତାନେ ସୁଖେ ଏତିକି ଦଇନି ମା' ।

ଖଦିବୋର୍ଡ କାର୍ଯ୍ୟାଳୟ,
ଖାରବେଳ ନଗର,
ଭୁବନେଶ୍ୱର-୭୫୧୦୦୧





# ଶକ୍ତି ସ୍ୱରୂପିଣୀ ମା' ଭଟ୍ଟାରିକା

**କୃଷ୍ଣ ଚନ୍ଦ୍ର ସୁଆର**

ଓଡ଼ିଶାର ପ୍ରସିଦ୍ଧ ଓ ପ୍ରାଚୀନ ଶକ୍ତିପୀଠମାନଙ୍କ ମଧ୍ୟରେ କଟକ ଜିଲ୍ଲା ଅନ୍ତର୍ଗତ ବଡମ୍ବାର ମା' ଭଟ୍ଟାରିକାଙ୍କ ପୀଠ ଅନ୍ୟତମ । ଏହା ଏକ ଉଡ୍‌ଡୀୟମାନ ତନ୍ତ୍ରପୀଠ । ଶ୍ରୀକ୍ଷେତ୍ର ବିମଳା, ନାଭିକ୍ଷେତ୍ର ବିରଜା ପୀଠରେ ମହାଶକ୍ତିଙ୍କର ଅବୟବ ରହିଥିବା ବେଳେ ଏଠି ସତୀଙ୍କର ଆତ୍ମା ବିରାଜିତ ବୋଲି କଥିତ ଅଛି । ସମଗ୍ର ରାଜ୍ୟରେ ଏହା ଏକ ପର୍ଯ୍ୟଟନସ୍ଥଳୀ ଓ ବଣଭୋଜି ପାଇଁ ଖୁବ୍ ପରିଚିତ ।

ମା' ଭଟ୍ଟାରିକା ହେଉଛନ୍ତି ପ୍ରସନ୍ନ ବଦନା, ପରଂବ୍ରହ୍ମ ସ୍ୱରୂପୀ, ଆଦ୍ୟାଶକ୍ତି, ମହିଷାମର୍ଦ୍ଦିନୀ, ଦୁର୍ଗା ଓ ତ୍ରିପୁରା ସୁନ୍ଦରୀ । ସେ ଶ୍ରୀଚକ୍ର ଉପରେ ଅଧିଷ୍ଠିତା । ସେ ଚକ୍ରେଶ୍ୱରୀ । ଦେବୀଙ୍କୁ ତ୍ରିପୁରସୁନ୍ଦରୀ, ତ୍ରିପୁରବାସିନୀ, ତ୍ରିପୁରାଶ୍ରୀ, ତ୍ରିପୁରମାଳିନୀ, ତ୍ରିପୁରା ସିଦ୍ଧି, ତ୍ରିପୁରା ଜନନୀ, ତ୍ରିପୁର ଭୈରବୀ, ସର୍ବକାମସିଦ୍ଧି ନାମରେ ଅଭିହିତ କରାଯାଇଛି ।

ବଡମ୍ବା ଥାନାର ଶଶାଂଗ ଗ୍ରାମ ନିକଟରେ ଓ ମହାନଦୀର ଉତ୍ତର ପାର୍ଶ୍ୱସ୍ଥ ରତ୍ନଗିରି ପର୍ବତର ପଶ୍ଚିମ ଦିଗରେ ଦେବୀଙ୍କ ମନ୍ଦିର ଅବସ୍ଥିତ । ନଦୀର ଅପର ପାର୍ଶ୍ୱରେ ହନୁମନ୍ତ ପ୍ରସାଦ ପାହାଡମାଳା ଦଣ୍ଡାୟମାନ । ପଶ୍ଚିମକୁ କଣ୍ଟିଲୋର ନୀଳମାଧବ ମନ୍ଦିର ଭଟ୍ଟାରିକା ମନ୍ଦିରର ପ୍ରଥମ ପାହାଚମାନ କ୍ରମେ ନଦୀ ମଧ୍ୟକୁ ପ୍ରବେଶ କରିଛି । ମା'ଙ୍କ ମୂଳ ମନ୍ଦିର ଜଣେ କନ୍ଧ ନିର୍ମାଣ କରିଥିଲେ ବୋଲି ଅନୁମାନ କରାଯାଏ । ଶଉରୁଣୀର କଥିତ ମୁତାବକ ୧୩୦୫ରୁ ୧୩୨୭ ମସିହା ରାଜତ୍ୱକାଳ ମଧ୍ୟରେ ରାଜା ହଟ୍ଟକିଶୋର ଦେବୀ ଭଟ୍ଟାରିକା ଓ ଖାରଡର ଅଧିଷ୍ଠାତ୍ରୀ ଦେବୀ ମା' ମହାକାଳୀଙ୍କୁ ପ୍ରଥମେ ପୂଜା କରିଥିଲେ । ରାଜା କାହ୍ନୁ ଚରଣ ରାଉତ ମା' ଭଟ୍ଟାରିକାଙ୍କର ମୂଳ ମନ୍ଦିରକୁ ଭାଙ୍ଗି ବଡ କରି ନିର୍ମାଣ କରିଥିଲେ । ପ୍ରାୟ ଦୁଇ ଏକର ସ୍ଥାନରେ ଉକ୍ତ ମନ୍ଦିରଟି ବିଦ୍ୟମାନ । ଆଉ ଦୁଇ ଏକର ଜାଗା ନଦୀ ଗର୍ଭରେ ବିଲୀନ । ପାହାଡକୁ ମିଶାଇ ସମୁଦାୟ କ୍ଷେତ୍ରର ଆୟତନ ପ୍ରାୟ ୧୦ହେକ୍ଟର ହେବ । ମୁଖ୍ୟ ମନ୍ଦିରର ଉଚ୍ଚତା ପ୍ରାୟ ୮୦ଫୁଟ । ୩୦୦୦ବର୍ଗ ଫୁଟ ପରିମିତ ସ୍ଥାନ ଉପରେ ହିଁ ମନ୍ଦିର ପ୍ରତିଷ୍ଠିତ । ରାଜା କାହ୍ନୁଚରଣଙ୍କ ସମୟରେ ମୂଳ ମନ୍ଦିରରେ ବୌଦ୍ଧ ଯୁଗୀୟ ଭାସ୍କର୍ଯ୍ୟ ଓ ବିଭିନ୍ନ କାରୁକାର୍ଯ୍ୟ ଫୁଟି ଉଠିଥିଲା । ଏହି ସ୍ଥାନର ପ୍ରାକୃତିକ ସୌନ୍ଦର୍ଯ୍ୟ ଅତ୍ୟନ୍ତ ମନୋରମ । ଏଠାକୁ ପର୍ଯ୍ୟଟକମାନେ ବୁଲିବା ସହିତ ମା'ଙ୍କ ଦର୍ଶନ ନିମନ୍ତେ ଆସିଥାନ୍ତି ।

ଭଗବାନ ମହାପୁରୁଷ ପର୍ଶୁରାମ ଏହି ପୀଠର ପ୍ରତିଷ୍ଠାତା । ତେଣୁ ଏହାକୁ ପର୍ଶୁରାମଙ୍କ ପୀଠ ମଧ୍ୟ କୁହାଯାଇଥାଏ । କିମ୍ବଦନ୍ତୀ ଅନୁଯାୟୀ ପୃଥିବୀକୁ ନିକ୍ଷତ୍ରିୟ କରିବା ପାଇଁ ଭଗବାନ ପର୍ଶୁରାମ ଏଠାରେ ମାଆ ଭଟ୍ଟାରିକାଙ୍କୁ ପ୍ରାର୍ଥନା କରି ତାଙ୍କଠାରୁ ବରଲାଭ କରିଥିଲେ । ବିଷ୍ଣୁକଳା ପ୍ରାପ୍ତି ପାଇଁ ମାଆ ତାଙ୍କୁ କଣ୍ଟିଲୋର ପଦ୍ମକ୍ଷେତ୍ରରେ ନୀଳମାଧବଙ୍କୁ ପୂଜା କରିବା ଲାଗି ଉପଦେଶ ଦେବା ସହ ସହସ୍ରାର୍ଜୁନ ନିଧନ ନିମନ୍ତେ ଦିବ୍ୟାସ୍ତ୍ର ପ୍ରଦାନ କରିଥିଲେ । ସେ ଦେବୀଙ୍କର ନାମ ରଖିଥିଲେ 'ଭଟ୍ଟାରିକା' । ବର୍ଣ୍ଣିତ ଅଛି – ତାଙ୍କ ପିତା ମହର୍ଷି ଯମଦଗ୍ନି ପତ୍ନୀ ରେଣୁକାଙ୍କ ବ୍ୟଭିଚାର ଘଟଣା ଧ୍ୟାନ ବଳରେ ଜାଣି କ୍ରୋଧାନ୍ୱିତ ହୋଇ ହତ୍ୟା କରିବା ନିମନ୍ତେ ତାଙ୍କର ଚାରିପୁଅକୁ ଆଦେଶ କରିବାରେ ତାଙ୍କର ତିନିଜଣ ପୁଅ ମା'ଙ୍କୁ ମାରିବା ପାଇଁ ରାଜି ହୋଇନଥିଲେ । କିନ୍ତୁ ସାନପୁଅ ପର୍ଶୁରାମ ପିତୃ ଆଦେଶ ପାଳନ କରି କୁଠାର ସାହାଯ୍ୟରେ ମାତାଙ୍କ ଶିର ଛେଦନ କରିଥିଲେ । କିନ୍ତୁ ବଡ ଆଶ୍ଚର୍ଯ୍ୟର ବିଷୟ ପିତାଙ୍କର ଗଭୀର ଶ୍ରଦ୍ଧାଭାଜନ ହୋଇ ପିତୃଦତ୍ତ ବରରେ ମାତାଙ୍କୁ ବଞ୍ଚାଇ ପାରିଥିଲେ । ମାତ୍ର ମାତୃହତ୍ୟାର ମହାପାପ ସ୍ୱରୂପ ରକ୍ତାକ୍ତ କୁଠାରଟି ପର୍ଶୁରାମଙ୍କ ଦକ୍ଷିଣ ହସ୍ତରେ ଲାଗି ରହିଲା । ବହୁ ଚେଷ୍ଟା

ସତ୍ତ୍ୱେ ମଧ୍ୟ ଛାଡିଲା ନାହିଁ । ଏଥି ନିମନ୍ତେ ସେ ଅନେକ ଦେବ ମନ୍ଦିର, ତୀର୍ଥକ୍ଷେତ୍ର, ପବିତ୍ର ଆଶ୍ରମ ସ୍ଥଳୀକୁ ଯାଇ ପ୍ରାର୍ଥନା ଓ ଶରଣାପନ୍ନ ହେଲେ ହେଁ ତାଙ୍କ ହାତରୁ ଛାଡିନଥିଲା । କିନ୍ତୁ ସବୁଆଡେ ବୁଲି ବୁଲି ଶେଷରେ ମା' ଭଟ୍ଟାରିକାଙ୍କ ପୀଠରେ ପହଞ୍ଚିଲାକ୍ଷଣି ପର୍ଶୁରାମଙ୍କ ହାତରୁ କୁଠାରଟି ତଳେ ପଡିଗଲା । ତେଣୁ ଏହି ମହାନ୍ ପବିତ୍ର ପୀଠରେ ମହାତ୍ମ୍ୟ ରହିଥିବା ଅନୁଭବ କରି ଧ୍ୟାନସ୍ଥ ହୁଅନ୍ତେ ମହାମାୟୀ ତାଙ୍କ ମାନସ ପଟରେ ଦେଖାଦେଇ ତତ୍‌କ୍ଷଣାତ୍ ଅନ୍ତର୍ଦ୍ଧାନ ହୋଇଗଲେ । ତା'ପରେ ପର୍ଶୁରାମ ଶର ମୁନରେ ମା' ଭଟ୍ଟାରିକାଙ୍କ ମୂର୍ତ୍ତି ପ୍ରସ୍ତରରେ ଖୋଦନ କରି ପୁନଶ୍ଚ ତପସ୍ୟାରେ ମଗ୍ନ ହୋଇଥିଲେ । ଏବେ ବି ସିଦ୍ଧସାଧକ ଋଷି ପ୍ରବର ଭଗବାନ ପର୍ଶୁରାମଙ୍କର ତପସ୍ଥଳୀରେ ସୁବିଶାଳ ପ୍ରସ୍ତର ପଡି ରହିଛି ।

ମହାମାୟା ଭଟ୍ଟାରିକା ବଡମ୍ବା ରାଜବଂଶର ଆରାଧ୍ୟ ଦେବୀ ଅଟନ୍ତି । ଇତିହାସ ଅନୁଯାୟୀ ପୁରୀ ଗଜପତି ମହାରାଜାଙ୍କ ନିର୍ଦ୍ଦେଶକ୍ରମେ ହଟ୍ଟକିଶୋର ଓ ମଲ୍ଲ କିଶୋର ନାମକ ଦୁଇଭାଇ ଏଠାରେ ଶଙ୍ଖ ଓ ମହୁରୀ ନାମକ ଦୁଇଟି ଗ୍ରାମ ସ୍ଥାପନ କରି ସେଠାକାର ରାଜା ହୋଇଥିଲେ । କାଳକ୍ରମେ ଏହି ଦୁଇ ଗାଁ ମିଶି ଏବେ ଶଙ୍ଖମେରି ଭାବେ ପରିଚିତ । ଦୁଇଭାଇ ନିଜର ଗଡ ତିଆରି କରିବା ନିମନ୍ତେ ସ୍ଥାନ ସନ୍ଧାନ କଲାବେଳେ ଗୋଟିଏ ଜାଗାରେ କେତେକ ଅଲୌକିକ ଘଟଣା ଦେଖି ଜାଣିଲେ ଯେ ତାହାହିଁ ବୀରମାଟି ଗଡନିର୍ମାଣ ପାଇଁ ଉପଯୁକ୍ତ ସ୍ଥାନ । ତେବେ ସ୍ଥାନଟି ଥିଲା ଶଶାଙ୍ଗ ଗ୍ରାମର ଅମାଇତ ଶବରଙ୍କ ଦଖଲରେ । ସେ ନିଜର ଆସ୍ଥାନ ଖାଲି କରିବା ପାଇଁ ପ୍ରସ୍ତୁତ ନଥିଲେ । ପରିଣାମ ସ୍ୱରୂପ ଯୁଦ୍ଧ ଆରମ୍ଭ ହେଲା । ଯୁଦ୍ଧର ଫଳାଫଳ ଗଲା ଶବରଙ୍କ ବିପକ୍ଷରେ । ତାଙ୍କର ମୃତ୍ୟୁପରେ ଶବରୀଙ୍କର ସମ୍ମୁଖୀନ ହେଲେ ଦୁଇଭାଇ । ପ୍ରବଳ ପରାକ୍ରମର ସହ ଯୁଦ୍ଧକଲେ ଶବରୀ, ହେଲେ ତାଙ୍କର ମଧ୍ୟ ପତନ ଘଟିଲା । ମୃତ୍ୟୁ ପୂର୍ବରୁ ସେ ଦୁଇଭାଇଙ୍କୁ ମା' ଭଟ୍ଟାରିକାଙ୍କୁ ଇଷ୍ଟଦେବୀ ରୂପେ ପୂଜା କରିବା ପାଇଁ କହିଥିଲେ । ଶବରୀଙ୍କ ଉପଦେଶ ଅନୁଯାୟୀ ସେମାନେ ସେଠାରେ ମନ୍ଦିର ନିର୍ମାଣ କରିବା ସାଙ୍ଗକୁ ଆରାଧ୍ୟ ଦେବୀ ଭାବେ ପୂଜାର୍ଚ୍ଚନା କରି ଆସୁଥିଲେ । ଭଟ୍ଟାରିକାଙ୍କ ଅନ୍ୟ ଗୋଟିଏ ନାମ ହେଉଛି'ବୃହଦମ୍ବା', ତଦନୁଯାୟୀ ରାଜା ହଟ୍ଟକିଶୋର ନିଜର ରାଜ୍ୟକୁ 'ବୃହଦମ୍ବା'ଭାବେ ଦେବୀଙ୍କ ନାମାନୁସାରେ ନାମିତ କରିଥିଲେ । ପରେ ଲୋକମୁଖରେ ତାହା 'ବଡମ୍ବା'ରେ ପରିଣତ ହୋଇଥିବା ପ୍ରକାଶ ।

ଭଟ୍ଟାରିକାଙ୍କର ବିଗ୍ରହ ଶାନ୍ତ, ସୌମ୍ୟ, ଚିତ୍ତାକର୍ଷଣୀୟ । ମୂର୍ତ୍ତିର ଗଠନ ପ୍ରଣାଳୀ ଭୌମକର ଶାସକଙ୍କ ସମୟରେ ହୋଇଥିବାର ଅନୁମାନ କରାଯାଏ । ଆଉ ନିର୍ମାଣ ସମୟ ପ୍ରାୟ ଚତୁର୍ଥ ଶତାବ୍ଦୀରେ ହୋଇଥିବା ଜଣାଯାଏ । ମା' ପୂଜିତା ହେଉଥିବା ମନ୍ଦିରର ମଝି ଦେଉଳ ବଡମ୍ବାର ରାଜା ବଳଭଦ୍ର ମଙ୍ଗରାଜ ସମ୍ମୁଖ ଦେଉଳ ପଦ୍ମନାଭ ମଙ୍ଗରାଜ ମହାପାତ୍ର ୧୭୪୮ରୁ ୧୭୯୬ ମଧ୍ୟରେ ନିର୍ମାଣ କରିଥିବାର ଜଣାଯାଏ । ମା'ଙ୍କ ମନ୍ଦିରଟି ୫ଟି ଦଧିନଉତିକୁ ନେଇ ନିର୍ମିତ । ଦଧିନଉତି ଉପରେ ତ୍ରିଶୂଳ ଚିହ୍ନ ଶୋଭାପାଏ । ପ୍ରଥମ ଏବଂ ଦ୍ୱିତୀୟ ଦେଉଳର ଉପରି ଭାଗରେ ୧୧ଟି ସିଂହ ଦଣ୍ଡାୟମାନ ହେବାର ଦେଖାଯାଏ । ମୁଖ୍ୟ ମନ୍ଦିରର ଦଧିନଉତିକୁ ୧୨ଜଣ କୁମାରୀ ମୁଣ୍ଡରେ ଧରିଛନ୍ତି । ଭଟ୍ଟାରିକା ମନ୍ଦିରରେ ଦକ୍ଷିଣ ପାର୍ଶ୍ୱସ୍ଥ ଦେବତା ରୂପେ ଏକ ଗଣେଶ ମୂର୍ତ୍ତି ଶୋଭାପାଉଛି । ଏହାଙ୍କୁ ଆଦି ଗଣେଶ ବୋଲି କୁହାଯାଏ । ପୂର୍ବ ଦିଗରେ ପାର୍ଶ୍ୱ ଦେବତା ରୂପେ ଶୁକ୍ଳ ଡାଳିମ୍ବା ପ୍ରସ୍ତର ନିର୍ମିତ କୌମାରୀ ମୂର୍ତ୍ତି ଥିବାର ଜଣାଯାଏ । ମୁଖ୍ୟ ମନ୍ଦିରରେ ପ୍ରବେଶ ଦ୍ୱାର ଉତ୍ତର ଦିଗରେ ସପ୍ତାଶ୍ୱ ସଂଯୋଜିତ ରଥ ଉପରେ ସୂର୍ଯ୍ୟ ଦଣ୍ଡାୟମାନ । ଦ୍ୱାର ଦେଶର ଉପରି ଭାଗରେ ନବଗ୍ରହ ମୂର୍ତ୍ତି ବିରାଜମାନ । ମନ୍ଦିରର ଉତ୍ତର ଦିଗରେ ଥିବା ପାଦୁକା କୁଣ୍ଡର ଉପରି ଭାଗରେ ଦେବୀ ଦୁର୍ଗାଙ୍କ ମୂର୍ତ୍ତି ରହିଛି । ସେହିପରି ମୂଳ ମନ୍ଦିରର ପଶ୍ଚିମ ଭାଗରେ ରକ୍ତଖାଇ ବାସେଳୀ ଅଛନ୍ତି । ଦେବୀ ଦୁର୍ଗାଙ୍କ ମନ୍ଦିରର ପୂର୍ବରେ ଖଣ୍ଡିଏ ପ୍ରସ୍ତର ଗାତ୍ରରେ ୬ଟି ଦେବୀ ମୂର୍ତ୍ତି ରଖାଯାଇଛି । ଏଗୁଡିକ ମାତୃକା ନାମରେ ପରିଚିତ । ନଦୀ ପାଖର ପଶ୍ଚିମ-ଉତ୍ତର ଦିଗକୁ ଏକ ପ୍ରସ୍ତର ସ୍ତମ୍ଭ ଉପରି ଭାଗରେ ଦୁଇଜଣ ବୌଦ୍ଧ ସନ୍ନ୍ୟାସୀଙ୍କ ମଧ୍ୟରେ ଧ୍ୟାନସ୍ଥ ହୋଇଛନ୍ତି ବୁଦ୍ଧଦେବ । ନିକଟରେ ଥିବା ବାଣେଶ୍ୱରଠାରେ ଏକ ବୌଦ୍ଧ ବିହାରରୁ ପ୍ରାଚୀନ ସୁନା ମୋହର ଓ ଅନେକ ମୂର୍ତ୍ତି ଉଦ୍ଧାର କରାଯାଇଛି ।

ମା ଭଟ୍ଟାରିକାଙ୍କ ମୂର୍ତ୍ତିର ଦକ୍ଷିଣ ହସ୍ତରେ କାମନାପୂର୍ଣ୍ଣ କରୁଥିବା ବରଦ ମୁଦ୍ରା ମାଧ୍ୟମରେ ମାତୃ ହୃଦୟର ସ୍ନେହ, ଦୟା ଏବଂ କୋମଳତା ପ୍ରକାଶିତ । ବାମ ହସ୍ତରେ ଜ୍ଞାନର ପ୍ରତୀକ ପଦ୍ମକୋରକ କାନ୍ତିରେ ତାଙ୍କର ନାନା ଅଳଙ୍କାରର ଆଭରଣ ଓ ମସ୍ତକରେ ଅର୍ଦ୍ଧଚନ୍ଦ୍ର ଲଳିତାସନରେ ଉପବିଷ୍ଟ । ଦେବୀ ତନ୍ତ୍ର ପୂଜାର ପ୍ରତୀକ ହୋଇଥିବାରୁ ତାଙ୍କ ପୂଜାବିଧି ପର୍ଶୁରାମ ସଂହିତା ଦ୍ୱାରା ଅତି ନିଷ୍ଠାର ସହିତ ପାଳନ କରାଯାଇଥାଏ । ମାଙ୍କ ସହିତ ଏଠାରେ ଉଗ, ଉଗ୍ରପ୍ରଭା, ପ୍ରଚଣ୍ଡା, ଗମୁଣ୍ଡା, ଶକଟା, ବିକଟା, ଦୁର୍ଗା ଏବଂ

ମହାଲକ୍ଷ୍ମୀ ଆଦି ଅଷ୍ଟ ଦେବୀ ପୂଜା ପାଆନ୍ତି । ମା'ଙ୍କର ପ୍ରତ୍ୟହ ପୂଜାର୍ଚ୍ଚନା ପାଞ୍ଚ ଉପଚାରରେ ସମାହିତ ହୋଇଥାଏ । ପ୍ରତିଦିନ ଅତି ପ୍ରତ୍ୟୁଷରୁ ହଳଦୀ, କୁଙ୍କୁମ, ନବହାର, ଚୂଆ ପ୍ରଭୃତି ଦ୍ରବ୍ୟରେ ଦେବୀଙ୍କର ମାଜଣା ବା ସ୍ନାନ ଅବକାଶ ଓ ମଙ୍ଗଳ ଆଳତି ସମ୍ପନ୍ନ ହୁଏ । ଏହାପରେ ପୂର୍ବଦିନ ଓହ୍ଲାଇ ଦିଆଯାଇଥିବା ମା'ଙ୍କର ଅଳଙ୍କାର ଲାଗି କରାଯାଏ । ସୂର୍ଯ୍ୟୋଦୟ ପରେ ସକାଳ ସାତଟାରେ ବଲ୍ଲଭ ଭୋଗ, ଦଶ ଘଟିକାରେ ସକାଳଧୂପ । ଏଥିରେ ଖେଚୁଡି, ଏଣ୍ଡୁରି ଓ ମାଛଭଜା ଭୋଗ କରାଯାଏ । ଦ୍ୱିପ୍ରହରରେ କ୍ଷୀରି, ଖେଚୁଡି ଅନ୍ନ, ଡାଲି, ତରକାରୀ, କାକରାପିଠା ଭୋଗ ହୋଇଥାଏ । ପହଡ ପରେ ଅପରାହ୍ଣ ପ୍ରାୟ ପାଞ୍ଚଟାରେ ସ୍ନାନ ମାର୍ଜନା ହୋଇ ମା'ଙ୍କର ଚନ୍ଦନ ବେଶ ହୁଏ । ତା'ପରେ ଛଅ ଘଟିକାରେ ସନ୍ଧ୍ୟା ଆରତି ହୋଇ କାକରା ଭୋଗ ଲାଗେ । ରାତ୍ର ଆଠ ଘଟିକାରେ ରାତ୍ରି ଧୂପ, ଦହିପଖାଳ, ଏଣ୍ଡୁରି ତରକାରୀ ଭୋଗ ହୋଇଥାଏ । ତତ୍‌ପରେ ଆଠଟା ତିରିଶ ମିନିଟ୍‌ରେ ପଣା ଓ ବଡ ସିଂହାର ଭୋଗ କରାଯାଇ ଦୈନନ୍ଦିନ ନୀତି ପାଳିତ ହୋଇଥାଏ । ଏହାବ୍ୟତୀତ ପୂର୍ଣ୍ଣିମା, ଅମାବାସ୍ୟା ତିଥିରେ ବିଶେଷ ଧରଣର ଭୋଗରାଗ ହୋଇଥାଏ । ରାଜା ଫକୀର ଚନ୍ଦ୍ର ନରସିଂହପୁର ଯୁଦ୍ଧରେ ବିଜୟଲାଭ କରିବା ପରେ ସେଠାରେ ଚୈତ୍ର ଅମାବାସ୍ୟାଠାରୁ ଶ୍ରୀରାମ ନବମୀ ପର୍ଯ୍ୟନ୍ତ ନବରାତ୍ର ପୂଜା ଓ ଆଶ୍ୱିନ ମାସରେ ମହାଷ୍ଟମୀ ଦିନ ଯାତ୍ରାର ଶୁଭାରମ୍ଭ କରିଥିଲେ । ସେହିବର୍ଷଠାରୁ ପ୍ରତିବର୍ଷ ମା'ଙ୍କ ପୀଠରେ ଯାତ୍ରା ଉକ୍ତ ତିଥିରେ ହୋଇ ଆସୁଅଛି । ଶାରଦୀୟ ପୂଜା ସମୟରେ ମା'ଙ୍କର ଷୋହଳ ଦିନ ପର୍ଯ୍ୟନ୍ତ ସ୍ୱତନ୍ତ୍ର ପୂଜା କରାଯାଇଥାଏ । ଷୋଡଶ ଉପଚାରରେ ପୂଜିତା ମା' ଭଟ୍ଟାରିକା ଅଭୟଦାନ ନିମନ୍ତେ ଆବିର୍ଭୂତା ହୁଅନ୍ତି । ଏହି ସମୟରେ ମା' ସୁନାବେଶରେ ସଜ୍ଜିତା ହୁଅନ୍ତି । ଦୂରଦୂରାନ୍ତରୁ ଭକ୍ତମାନେ ଦେବୀଙ୍କ ଦର୍ଶନ ନିମନ୍ତେ ଆସିଥାନ୍ତି । ଶଶାଂଗ ଗ୍ରାମର ମାଳିମାନେ ମା'ଙ୍କ ପୂଜାବିଧି କରିଥାନ୍ତି । ଶାରଦୀୟ ପୂଜାତ୍ସୋବପରି ଏହି ତନ୍ତ୍ରପୀଠରେ ପଣାସଂକ୍ରାନ୍ତି, ଅକ୍ଷୟ ତୃତୀୟା, ଦେବୀ ଶୟନୋତ୍ସବ ଆଦିପର୍ବ ପାଳିତ ହୋଇଥାଏ । ସୌନ୍ଦର୍ଯ୍ୟମୟୀ ରତ୍ନଗିରି ପର୍ବତ ଏବଂ ମହାନଦୀ ଆଖପାଖର ପର୍ବତରାଜି ଏହି ସ୍ଥାନର ଶୋଭା ବଢାଇଥାଏ । ଭଟ୍ଟାରିକା ମନ୍ଦିର ବେଢା ପରିସରରେ ମହାଦେବ ମନ୍ଦିର ରହିଥିବା ବେଳେ ମନ୍ଦିରର ବାହାର ପଟ କାନ୍ଥରେ ଦୁର୍ଗା, ଗଣେଶ, କୌମାରୀ ଆଦି ଦେବାଦେବୀଙ୍କର ମୂର୍ତ୍ତି ରହିଛି । ଅଳ୍ପ ଦୂରରେ ପଞ୍ଚମୁଖୀ ହନୁମାନ, ଲୋଡେଇ ଠାକୁରାଣୀ ଏବଂ ରଘୁନାଥ ମନ୍ଦିର । ଭଟ୍ଟାରିକା ମନ୍ଦିରଠାରୁ ଛଅ କି.ମି. ଦୂରରେ ରହିଛି ପ୍ରସିଦ୍ଧ ସିଂହନାଥ ପୀଠ । ଏଇ ଅବସରରେ ଯାତ୍ରୀମାନେ ଏ ସମସ୍ତ ଦେବାଦେବୀଙ୍କୁ ଦର୍ଶନ କରି ପରମ ଶାନ୍ତି ଲାଭ କରିଥାନ୍ତି ।

ପୁରାଣ ବର୍ଣ୍ଣିତ ଅନୁସାରେ ପଞ୍ଚବଟୀକୁ ଯିବା ଅବସରରେ ଭଗବାନ ରାମଚନ୍ଦ୍ର ଭାଇ ଲକ୍ଷ୍ମଣ ଓ ସୀତା ମା' ଭଟ୍ଟାରିକାଙ୍କୁ ପ୍ରାର୍ଥନା କରିଥିଲେ । କେବଳ ସେତିକି ନୁହେଁ, ରାମଚନ୍ଦ୍ର ବାଙ୍କୀ ଅନ୍ତର୍ଗତ ବୈଦେଶ୍ୱରଠାରେ ରାମନାଥ ସୀତାଙ୍କ ଦ୍ୱାରା ବୈଦ୍ୟନାଥ ଓ ମହାନଦୀର ମଧ୍ୟଭାଗରେ ଲକ୍ଷ୍ମଣଙ୍କ ଦ୍ୱାରା ସିଂହନାଥ ଅବସ୍ଥାପିତ ହୋଇଥିଲେ । ମହାନଦୀର ଅପରପାର୍ଶ୍ୱରେ ଥିବା ମାଙ୍କଡ ଗଡିଆ ପର୍ବତରେ ଏପର୍ଯ୍ୟନ୍ତ ରାମ, ଲକ୍ଷ୍ମଣ ଓ ସୀତାଙ୍କର ପଦଚିହ୍ନ ପୂଜା କରାଯାଉଅଛି । ଅନ୍ୟ ଏକ ପୌରାଣିକ କାହାଣୀରୁ ଜଣାଯାଏ ପାଣ୍ଡବମାନେ ବନବାସକୁ ଯିବା ସମୟରେ ଅର୍ଜୁନ ମଣିଭଦ୍ରା ପାହାଡରେ ଅବସ୍ଥାନ କରିଥିଲେ । ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କ ସନ୍ଧାନ ପାଇବା ପାଇଁ ଆସିଥିଲେ ମା'ଙ୍କ ପୀଠକୁ । ମା' ଭଟ୍ଟାରିକାଙ୍କଠାରୁ ସ୍ୱପ୍ନାଦେଶ ପାଇ ଶ୍ରୀକୃଷ୍ଣ ଅର୍ଜୁନ ସାକ୍ଷାତ ହେଲା । ପାଣ୍ଡବମାନଙ୍କ ଅଜ୍ଞାତବାସ ସମୟରେ ଶ୍ରୀକୃଷ୍ଣ, ସତ୍ୟଭାମା ଓ ଅର୍ଜୁନ ଭଟ୍ଟାରିକାଙ୍କୁ ଦର୍ଶନ କରିଥିଲେ ।

ମହାଷ୍ଟମୀ ଦିନ ମନ୍ଦିରରେ ନେତ ବନ୍ଧାଯାଏ । ସମସ୍ତ ପୂଜକ, କାଳେସୀ ଓ ଢୋଲିଆ ଉପବାସ କରିଥାନ୍ତି । ରାତିରେ ମନ୍ଦିରରେ ଢୋଲ ରଖି ପୂଜା କରାଯାଏ । ଅନବରତ ମନ୍ତ୍ରପାଠ ଓ ସ୍ତୁତିପଢା ଚାଲିଥାଏ । ଧୂପ, ଦୀପ, ଚନ୍ଦନ, ପୁଷ୍ପ, ଅଗୁର ଓ ନୈବେଦ୍ୟର ଗନ୍ଧରେ ଚତୁର୍ଦ୍ଦିଗ ମହ ମହ ବାସନା ହେଉଥାଏ । ଦେବୀ ପୂଜାର୍ଚ୍ଚନାରେ ସନ୍ତୁଷ୍ଟ ହେଲେ ତାଙ୍କ ମହିମାରେ ମନ୍ଦାର ପୁଷ୍ପ ତାଙ୍କ ମସ୍ତକରୁ ଖସିପଡେ ଓ ଅଢେଇ ପାହାର ବାଜା ଆପେ ଆପେ ବାଜି ଉଠିଥାଏ । ତତ୍‌ପରେ ଢୋଲିଆ ବାଜା ବଜାଇ ଥାଏ ଓ କାଳେସୀ ଉଭା ହୋଇଥାଏ । ମୁଖ୍ୟ ପୂଜାରୀଙ୍କ ଦେହରେ ସ୍ୱୟଂ ଠାକୁରାଣୀ ପ୍ରସନ୍ନ ହୋଇ ହୁକୁମ ଦେଇଥାନ୍ତି । ଅଗଣିତ ଶ୍ରଦ୍ଧାଳୁ ଭକ୍ତ ଓ ମାନସିକଧାରୀମାନେ ଗୁହାରିଆ ଓ ଅଧିଆ ପଡିଥାନ୍ତି । ରିକ୍ତ ହାତରେ ସେଦିନ କେହି ଫେରିନଥାନ୍ତି । କାଳେସୀ ମା'ଙ୍କର କଳାଶାଢୀ, କାଚ, ସିନ୍ଦୂର ଆଦି ପିନ୍ଧି ଦେବୀ ଉଭା ବେଳର ଦୃଶ୍ୟ ଦେଖିଲେ ଭାରି ଭୟ ଲାଗେ । ସକଳ ଦେବାଦେବୀ ସେହିଦିନ ମହାମାୟାଙ୍କ ଦର୍ଶନ ନିମନ୍ତେ ଆସିଥାନ୍ତି ।

ଦେବୀ ଭଟ୍ଟାରିକାଙ୍କୁ ଗ୍ରାମ ଦେବତୀ, ବୌଦ୍ଧତାରା, ତ୍ରିପୁରା ସୁନ୍ଦରୀ, ବରାହୀ ଅମ୍ବା ଅମ୍ବିକାଙ୍କ ଏକ ସମ୍ମିଳିତ ସମନ୍ୱିତ ରୂପ ଓ

ଦେବୀ ଦୁର୍ଗା ରୂପେ ସଂପୂଜିତ ହେଉଥିବା କଥା ଉପାସକ ଓ ସାଧକମାନେ ଦର୍ଶାଇ ଥାଆନ୍ତି । ଖଣ୍ଡପଡା ରାଜା ଏକଦା ମା' ଭଟ୍ଟାରିକାଙ୍କୁ ଚୋରାଇ ନେବା ପାଇଁ ମସୁଧା କରି ତାଙ୍କ ସୈନ୍ୟସାମନ୍ତଙ୍କୁ ପଠାଇଲେ । ସେମାନେ ମା'ଙ୍କ ମୂର୍ତ୍ତିଧରି ନଦୀ ଭିତରକୁ ପ୍ରବେଶ କଲା ମାତ୍ରେ କିଛି ଦେଖାଗଲା ନାହିଁ । ସେମାନେ ଦୃଷ୍ଟିଶକ୍ତି ହରାଇ ଅନ୍ଧ ହୋଇ ଯାଇଥିଲେ ବୋଲି ଶୁଣାଯାଏ । ବଡମ୍ବା ରାଜାଙ୍କୁ ଏ ଘଟଣା ସ୍ୱପ୍ନାଦେଶ ହେବା ଫଳରେ ସେ ତତ୍‌କ୍ଷଣାତ୍ ସୈନ୍ୟସାମନ୍ତଙ୍କୁ ଧରି ଖଣ୍ଡପଡା ରାଜାଙ୍କ ଉପରେ ଆକ୍ରମଣ କରି ମା'ଙ୍କୁ ଉଦ୍ଧାର କରିଥିଲେ । ତତ୍‌ପରଠାରୁ ରାଜା ସୁବର୍ଣ୍ଣ ମୂର୍ତ୍ତି ନିର୍ମାଣ କରି ତାକୁ ପ୍ରାଣ ପ୍ରତିଷ୍ଠା କରି ରାଜବାଟୀରେ ରଖିଥିଲେ । ସ୍ୱର୍ଣ୍ଣ ପ୍ରତିମାକୁ ତେଣୁ ଚଳନ୍ତି ବିଗ୍ରହ ଓ ମା' ଭଟ୍ଟାରିକାଙ୍କୁ ସ୍ଥାପନା ବିଗ୍ରହ ବୋଲି କୁହାଯାଏ ।

ଧାର୍ମିକ ଓ ସାଂସ୍କୃତିକ ପୀଠ ଓ ପ୍ରାଚୀନ କୀର୍ତ୍ତିରାଜିର ଗୁରୁତ୍ୱ ବହନ କରୁଥିବା ଏହି ସ୍ଥାନ ପ୍ରତି ସରକାର ଅଧିକ ଧ୍ୟାନ ଦେବା ସହିତ ପଦକ୍ଷେପ ନେବା ଜରୁରି ମନେହୁଏ ।

ଏମ୍.ଆଇ.ଜି-୧, ୪୨/୧,
ଚନ୍ଦ୍ରଶେଖରପୁର ହାଉସିଂ ବୋର୍ଡ କଲୋନୀ,
ଭୁବନେଶ୍ୱର-୧୬

# ମୁଁ ତୁମରି ଚରଣ ଦାସୀ

ଚମକ ଚାନ୍ଦିନୀ ଦାଶ



ମୁଁ ତ ତୁମରି ଚରଣ ଦାସୀ
ବିପଦେ ଆପଦେ ସାହା ହେବ ମାଆ
ଦୁଃଖ ଶୋକ ଦେବ ନାଶି ।

ଯିଏ ଯେଉଁ ରୂପେ ତୁମକୁ ଖୋଜିଛି
ଯିଏ ଯେଉଁ ଭାବେ ତୁମକୁ ପୂଜିଛି
ତୁମେ ଦୟାମୟୀ ସେ ଭକତ ପାଶେ
ଉଭା ହୋଇଅଛ ଆସି
ମୁଁ ତ ତୁମରି ଚରଣ ଦାସୀ ।

ଦେଇ ଧୂପ ଝୁଣା କଲେ ଆରାଧନା
ମିଳେନାହିଁ ମାତା ତୁମରି କରୁଣା
ଭକତି ଭାବରେ ଥରେ ଡାକି ଦେଲେ
ହୃଦୟରେ ଯାଅ ବସି
ମୁଁ ତ ତୁମରି ଚରଣ ଦାସୀ ।

ମୁଁ ଛାର ଅଜ୍ଞାନ ଅଧମ ପାପିନୀ
ତୁମେ ଆଦିରୂପା ତୁମେ କାତ୍ୟାୟନୀ
ମରଣ କାଳରେ ଦରଶନ ଦେଇ
ମନ ମୋର ଦେବ ତୋଷି
ମୁଁ ତ ତୁମରି ଚରଣ ଦାସୀ ।

ମାର୍ଫତ- ଯଶୋବନ୍ତ ଦାଶ
ପ୍ଲଟ ନଂ-୬, ଚିନ୍ତାମଣିଶ୍ୱର,
ବୁଦ୍ଧେଶ୍ୱରୀ, ଭୁବନେଶ୍ୱର-୬



# ପରମାତ୍ମାଙ୍କର ଏକୀଭୂତ ରୂପ ତ୍ରିମୂର୍ତ୍ତି ଏବଂ ତ୍ରିଶକ୍ତି

ଈଶ୍ୱର ଚନ୍ଦ୍ର ମହାପାତ୍ର

ତ୍ରିମୂର୍ତ୍ତି ଏବଂ ତ୍ରିଶକ୍ତିଙ୍କ ସମ୍ବନ୍ଧରେ ସନାତନ ଧର୍ମ ଏହି ସିଦ୍ଧାନ୍ତ ଦେଇଛି ଯେ, ଏକ ହିଁ ପରମାତ୍ମା ଯିଏ ନିର୍ଗୁଣ, ନିଷ୍କ୍ରିୟ, ନିରାକାର ଏବଂ ନିରଞ୍ଜନ (ନିର୍ଲିପ୍ତ) ଅଟନ୍ତି, ସେ ନିଜର ତ୍ରିଗୁଣାତ୍ମକ, ତ୍ରିଶକ୍ତ୍ୟାତ୍ମକ ମାୟା ଶକ୍ତି ଦ୍ୱାରା ସମ୍ମିଳିତ ହୋଇ ଜଗତର ସୃଷ୍ଟି, ପାଳନ, ପୋଷଣ ଏବଂ ସଂହାର ରୂପକ ତ୍ରିବିଧ କାର୍ଯ୍ୟ ଭେଦରେ ବ୍ରହ୍ମା,ବିଷ୍ଣୁ ଏବଂ ଶିବ ରୁଦ୍ର ତିନି ନାମକୁ ଏବଂ ମୂର୍ତ୍ତିମାନଙ୍କୁ ଧାରଣ କରନ୍ତି ଏବଂ ତିନି ପ୍ରକାର ଶକ୍ତିଙ୍କ ସହିତ ସମ୍ମିଳିତ ହୋଇ ତ୍ରିମୂର୍ତ୍ତି ରୂପରେ ଅବତୀର୍ଣ୍ଣ ହୁଅନ୍ତି । ସେହି ତ୍ରିଶକ୍ତିଙ୍କର ନାମ ହେଉଛି ମହାସରସ୍ୱତୀ, ମହାଲକ୍ଷ୍ମୀ ଏବଂ ମହାକାଳୀ । ଅର୍ଥାତ୍ ବ୍ରହ୍ମାଙ୍କର ଶକ୍ତି ଯାହାଙ୍କଠାରୁ ସୃଷ୍ଟି ହୁଏ, ସେ ମହାସରସ୍ୱତୀ ଅଟନ୍ତି ଏବଂ ରୁଦ୍ର ଶକ୍ତି ଯାହାଙ୍କ ଦ୍ୱାରା ସଂହାର କାର୍ଯ୍ୟ ସଂପାଦିତ ହୁଏ, ତାଙ୍କର ନାମ ହେଉଛି ମହାକାଳୀ । ଏଥିପାଇଁ ଭଗବାନ ଶଙ୍କରାଚାର୍ଯ୍ୟ ସୌନ୍ଦର୍ଯ୍ୟ ଲହରୀରେ କହିଛନ୍ତି– ଶିବଃ ଶକ୍ତ୍ୟା ଯୁକ୍ତେ ଯଦି ଭବତି ଶକ୍ତଃ ପ୍ରଭାବିତୁମ । ଭଗବାନ ନିଜର ଶକ୍ତି ସହିତ ମିଶି ନିଜର ଲୀଳାତ୍ମକ କାର୍ଯ୍ୟ କରିବାରେ ସମର୍ଥ ହୁଅନ୍ତି । ଏଥିରୁ ସ୍ପଷ୍ଟ ହୁଏ ଯେ ବାସ୍ତବରେ ନିଜର ମୂଳ ସ୍ୱରୂପରେ ଭଗବାନ ନିରଞ୍ଜନ ନିଷ୍କ୍ରିୟ ହୋଇ ମଧ୍ୟ ନିଜର ମାୟା ଶକ୍ତି ସହିତ ମିଶି ଜଗଦୀଶ୍ୱର ହୁଅନ୍ତି ଅର୍ଥାତ ଜଗତ ସ୍ରଷ୍ଟା, ଜଗତପାଳକ ଏବଂ ଜଗତ ସହାୟକ ହୁଅନ୍ତି ।

**ତିନି କାର୍ଯ୍ୟର ଐତିହାସିକ କ୍ରମ–** ଉପରୋକ୍ତ କାର୍ଯ୍ୟର ଦୁଇପ୍ରକାର କ୍ରମର ବିଚାର କରାଯାଇପାରେ । ଗୋଟିଏ ହେଉଛି ଐତିହାସିକ କ୍ରମ ଯେଉଁଥିରେ ଏହା ବିଚାର କରାଯାଏ ଯେ, ସର୍ବପ୍ରଥମେ ପ୍ରତ୍ୟେକ ଜିନିଷର ସୃଷ୍ଟି କରାଯାଏ । ତତ୍ପରେ ତାହାର ସ୍ଥିତି ହୁଏ ଏବଂ ଶେଷରେ ତାହାର ଅନ୍ତ ଘଟେ । ଏହି କାରଣରୁ ବ୍ରହ୍ମା , ବିଷ୍ଣୁ, ମହେଶ୍ୱର ଏହି ତିନି ନାମ ଗ୍ରନ୍ଥରେ ଏହି କ୍ରମରେ ମିଳେ ।

**ଆଧ୍ୟାତ୍ମିକ ସାଧନାର ଦୃଷ୍ଟିକୋଣ–** ଏହି ତିନି କାର୍ଯ୍ୟ(ସୃଷ୍ଟି,ସ୍ଥିତି,ବିନାଶ)ର କ୍ରମର ଦ୍ୱିତୀୟ ପ୍ରକାର ବିଚାର ସାଧକର ଆଧ୍ୟାତ୍ମିକ ଦୃଷ୍ଟିରେ କରାଯାଏ । ଅବଧୂତରାଜ ସଦାଶିବ ବ୍ରହ୍ମେନ୍ଦ୍ର ସରସ୍ୱତୀ ମହାରାଜ କୃତ ବର୍ଣ୍ଣନା ଅନୁସାରେ ଜନି ବିପରୀତ କ୍ରମତଃ ବିପରୀତ କ୍ରମରେ ଅର୍ଥାତ ଲୟ (ବିନାଶ) କ୍ରମରେ ଗଣନା କରାଯାଏ । ସୃଷ୍ଟିର କ୍ରମରେ ନୁହେଁ । ଏହି କାରଣରୁ ମହାକାଳୀ, ମହାଲକ୍ଷ୍ମୀ, ମହାସରସ୍ୱତୀଏହି ତିନି ନାମ ଉପାସନା କାଣ୍ଡ ଗ୍ରନ୍ଥରେ ନିୟମବଦ୍ଧ କ୍ରମରେ ଆସେ ।

**ବ୍ୟାଧି ଚିକିତ୍ସାର ଦୃଷ୍ଟାନ୍ତ–** ଲୌକିକ ବ୍ୟବହାର ଦ୍ୱାରା ସର୍ବସାଧାରଣଙ୍କର ଅନୁଭବ-ସିଦ୍ଧ ଗୋଟିଏ ଦୃଷ୍ଟାନ୍ତରୁ ଏହି କ୍ରମର ତାତ୍ପର୍ଯ୍ୟ ଏବଂ ଆବଶ୍ୟକତା ସ୍ପଷ୍ଟ ହେବ । ରୋଗର ଚିକିତ୍ସାରେ ବୈଦ୍ୟ କିମ୍ବା ଡାକ୍ତରଙ୍କର ପ୍ରଥମ କର୍ତ୍ତବ୍ୟ ହେଉଛି ରୋଗକୁ ସମୂଳେ ବିନାଶ କରିବା । ଚିକିତ୍ସା ସମୟରେ ବୈଦ୍ୟ କିମ୍ବା ଡାକ୍ତର ରୁଦ୍ରଙ୍କର କାମ କରନ୍ତି । ପରନ୍ତୁ ରୋଗୀ ଚିକିତ୍ସା ସମୟରେ ଡାକ୍ତର ରୂପୀ ରୁଦ୍ରଙ୍କୁ ଖୁବ୍ ସାବଧାନତା ଅବଲମ୍ବନ କରିବାକୁ ପଡ଼ିଥାଏ । ଯଦ୍ୱାରା ରୋଗୀ ଭଲହେବ, ରୋଗ ସମୂଳେ ନାଶ ହୋଇଯିବ । ଏହିପରି ଡାକ୍ତର ଜୀବନର ପାଳନ କିମ୍ବା ବିଷ୍ଣୁଙ୍କର କାମ ମଧ୍ୟ କରନ୍ତି । ଯଦି ରୋଗୀ ଅପରେସନରେ ସୁସ୍ଥ ହୋଇଯାଏ ତେବେ ତା ଶରୀରରେ ଶକ୍ତି ଆଣିଦେବାକୁ ଡାକ୍ତର ଔଷଧ (ଟନିକ୍) ପୁଷ୍ଟିକର ଖାଦ୍ୟ ଆଦି ପଦାର୍ଥ ଦେଇଥାନ୍ତି ବା ସେବନ କରିବାକୁ ସୁପାରିଶ କରିଥାନ୍ତି । ଏହି କାର୍ଯ୍ୟ ପ୍ରମାଣ କରେ ଯେ ବୈଦ୍ୟ କିମ୍ବା ଡାକ୍ତର ବ୍ରହ୍ମାଙ୍କ ଭଳି ନୂତନ ସୃଷ୍ଟି କରନ୍ତି ଅଥବା ମୁମୂର୍ଷୁ ପ୍ରାଣରେ ନୂତନ ଜୀବନ ଶକ୍ତି ସଂଚାର କରି ରୋଗୀକୁ ପୁନର୍ଜୀବିତ କରନ୍ତି ।

**ଅଜ୍ଞାନ ନିରାକରଣର ଦୃଷ୍ଟାନ୍ତ –** ଏଇଥିପାଇଁ ଗୁରୁଙ୍କ ସମ୍ବନ୍ଧରେ କୁହାଯାଇଛି ଗୁରୁବ୍ରହ୍ମା, ଗୁରୁ ବିଷ୍ଣୁ ଗୁରୁଦେବ

ମହେଶ୍ୱରଃ । ଗୁରୁ ଶିଷ୍ୟଙ୍କର ଅଜ୍ଞାନତା ଜଡ଼ତା ନାଶ କରନ୍ତି । ଏହା ହେଉଛି ରୁଦ୍ରଙ୍କର ସଂହାର କାର୍ଯ୍ୟ ସଦୃଶ । ପ୍ରମାଦ ଜନିତ କାର୍ଯ୍ୟକୁ ନାଶ କରିବା ସଙ୍ଗେ ସଙ୍ଗେ ଯେତେବେଳେ ଗୁରୁ ଶିଷ୍ୟର ମନରେ ଯଥାର୍ଥ ଜ୍ଞାନ ଦେଇ ତାକୁ ବିପଥରୁ ରକ୍ଷା କରନ୍ତି ତେବେ ସେ ବିଷ୍ଣୁଙ୍କର ପାଳନ କାର୍ଯ୍ୟ କରନ୍ତି । ଯେତେବେଳେ ଶିଷ୍ୟର ଅଜ୍ଞତା ଦୂରକରି ସେ ଜ୍ଞାନ ରକ୍ଷା କରନ୍ତି କିମ୍ବା ନୂତନ କଥା ଶିଖାଇ ଶିଷ୍ୟକୁ ଉତ୍ତମ ମନୁଷ୍ୟ ରୂପେ ଗଢ଼ନ୍ତି ସେ ବ୍ରହ୍ମାଙ୍କର ସୃଷ୍ଟ୍ୟାତ୍ମକ କାର୍ଯ୍ୟ ସମ୍ପାଦନ କରନ୍ତି । ଜଣେ ଚିକିତ୍ସକ ଏହିପରି ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କର କାମ କରନ୍ତି ଏବଂ ଚିକିତ୍ସଙ୍କର ଚିକିତ୍ସା, ଗୁରୁଙ୍କର ଶିକ୍ଷାଦାନରେ ତ୍ରିମୂର୍ତ୍ତି ଏବଂ ତ୍ରିଶକ୍ତିଙ୍କର କ୍ରିୟାତ୍ମକ ଶକ୍ତିର ଚରିତାର୍ଥ ହୋଇଅଛି ।

**ଅନ୍ୟାନ୍ୟ ଦୃଷ୍ଟାନ୍ତ–** ଏହିପରି ଭାବେ ଅନେକ ଦୃଷ୍ଟାନ୍ତରୁ ପାଠକମାନେ ନିଜେ ଚିନ୍ତା କରି ପାରନ୍ତି ଯେ ଶାରୀରିକ,ମାନସିକ, ବୌଦ୍ଧିକ, ଆର୍ଥିକ, ରାଜନୀତିକ ଆଦି ପ୍ରତ୍ୟେକ ଲକ୍ଷ୍ୟ କ୍ଷେତ୍ରରେ ଏହି ପରି ସାଧନା କରାଯାଏ । ଅର୍ଥାତ ସବୁଠାରୁ ପ୍ରଥମେ ଖରାପ ଜିନିଷ, ଖରାପ ଗୁଣ ଏବଂ ମନ୍ଦ ଅଭ୍ୟାସର ବିନାଶ କରିବା ଉଚିତ । ଏହା ସହିତ ଭଲ ଜିନିଷ, ଗୁଣ ଓ ଅଭ୍ୟାସକୁ ସୁରକ୍ଷିତ ରଖିବା ଉଚିତ । ଯେତେବେଳେ ଖରାପ ଜିନିଷ ବା ଗୁଣ ବାହାରିଯାଏ ତଥା ଜୀବନ ବିତିଯାଏ, ସେତେବେଳେ ଉତ୍ତମ ଜିନିଷର କ୍ରମଶଃ ପୋଷଣ ବର୍ଦ୍ଧନ କରିବା ଉଚିତ । ଏହାର ସାରାଂଶ ଏହା ହେଉଛି ଯେ ସଂହାର, ପାଳନ ଏବଂ ସୃଷ୍ଟି ସବୁ ପ୍ରକାର ସାଧକମାନଙ୍କର ଆବଶ୍ୟକତା ଅଟେ ଏବଂ ଏହି କ୍ରମରେ ମହାକାଳୀ, ମହାଲକ୍ଷ୍ମୀ, ମହାସରସ୍ୱତୀ ତିନି ନାମର ଶାସ୍ତ୍ରସିଦ୍ଧ ଅନୁକ୍ରମ ସ୍ପଷ୍ଟ ହୁଏ ।

**ତିନିଶକ୍ତି ଏବଂ ମୂର୍ତ୍ତିମାନଙ୍କର ପାରସ୍ପରିକ ସମ୍ବନ୍ଧ–** ଏହି ତ୍ରିଶକ୍ତି ଏବଂ ତ୍ରିମୂର୍ତ୍ତିଙ୍କର କର୍ମ କ୍ଷେତ୍ର ଏପରି ସିଦ୍ଧ ହୋଇଛି ଯେ ମହାକାଳୀଙ୍କ ଶକ୍ତି ସହିତ ରୁଦ୍ର ସଂହାର କାର୍ଯ୍ୟ କରନ୍ତି, ମହାଲକ୍ଷ୍ମୀ ଶକ୍ତି ସହିତ ବିଷ୍ଣୁ ସଂସାର ପାଳନ କରନ୍ତି ଏବଂ ମହାସରସ୍ୱତୀ ଶକ୍ତି ସହିତ ବ୍ରହ୍ମା ସୃଷ୍ଟି କରନ୍ତି । ଆଉ ଟିକିଏ ଆଗକୁ ଯାଇ ଏମାନଙ୍କର ପାରସ୍ପରିକ ସମ୍ପର୍କ କିପରି ନିଗୂଢ଼ ତାହା ବିଚାର କରିବା ।

ଶାସ୍ତ୍ର ଅନୁଶୀଳନ କଲେ ଏହି ଚମତ୍କାରିତା ଜଣାପଡ଼େ ଯେ, ତ୍ରିମୂର୍ତ୍ତିମାନଙ୍କ ମଧ୍ୟରୁ କୌଣସି ଜଣକୁ ନେଇ ବିଚାର କଲେ ଶେଷ ଦୁଇଜଣଙ୍କ ମଧ୍ୟରୁ ଜଣେ ତାଙ୍କର ପତ୍ନୀଙ୍କର ଭାଇ ଅଟନ୍ତି ଏବଂ ଦ୍ୱିତୀୟ ଜଣକ ଭିଣୋଇ ଅଟନ୍ତି । ପ୍ରକାରାନ୍ତରେ ଦେଖିଲେ ତ୍ରିଶକ୍ତିଙ୍କ ମଧ୍ୟରୁ କୌଣସି ଜଣେ ଶକ୍ତିଙ୍କୁ ନେଇ ବିଚାର କଲେ ଶେଷ ଦୁଇ ଜଣଙ୍କ ମଧ୍ୟରୁ ଜଣେ ଅନ୍ୟର ନଣନ୍ଦ ଅଟନ୍ତି ତ ଦ୍ୱିତୀୟ ଜଣଙ୍କ ତାଙ୍କର ଭାଉଜ ଅଟନ୍ତି । କାରଣ ସଂହାର କରୁଥିବା ରୁଦ୍ରଙ୍କର ଶକ୍ତି ମହାକାଳୀଙ୍କର ଭାଇ ହେଉଛନ୍ତି ପାଳନ କରୁଥିବା ବିଷ୍ଣୁ । ବିଷ୍ଣୁଙ୍କର ଶକ୍ତି ମହାଲକ୍ଷ୍ମୀଙ୍କର ଭାଇ ହେଉଛନ୍ତି ସୃଷ୍ଟିକର୍ତ୍ତା ବ୍ରହ୍ମା ଏବଂ ବ୍ରହ୍ମାଙ୍କର ଶକ୍ତି ମହାସରସ୍ୱତୀଙ୍କର ଭାଇ ହେଉଛନ୍ତି ସଂହାର କର୍ତ୍ତା ରୁଦ୍ର ।

**ସେମାନଙ୍କର ଆଧ୍ୟାତ୍ମିକ ରହସ୍ୟ–** ଏହି ତିନି ଶକ୍ତି ଏବଂ ତିନି ମୂର୍ତ୍ତିଙ୍କର ରୂପ ଆୟୁଧ, ରଙ୍ଗ ଆଦି ସମସ୍ତ ପଦାର୍ଥ ସମ୍ବନ୍ଧରେ କର୍ମକାଣ୍ଡ ଗ୍ରନ୍ଥମାନଙ୍କରେ ଯେପରି ବିସ୍ତୃତ ବର୍ଣ୍ଣନା କରାଯାଇଅଛି ତନ୍ମଧ୍ୟରୁ ଗୋଟିଏ ଛୋଟିଆ କଥା ଏପରି ନାହିଁ ଯାହା ଅତ୍ୟନ୍ତ ଉପଯୋଗୀ ତତ୍ତ୍ୱରେ ପରିପୂର୍ଣ୍ଣ ନୁହେଁ ଏବଂ ଯାହା ଜିଜ୍ଞାସୁ ଏବଂ ସାଧକଙ୍କ ପାଇଁ ଅତି ଉତ୍ତମ ଆଧ୍ୟାତ୍ମିକ ଶିକ୍ଷାପ୍ରଦ ନୁହେଁ । ପରନ୍ତୁ ପ୍ରବନ୍ଧର କଳେବର ଏବଂ ସମୟର ଆଧିକ୍ୟ ଦୃଷ୍ଟିରୁ ଏଠାରେ ସମସ୍ତ କଥାର ବିବରଣୀ ଦିଆଯାଇପାରୁ ନାହିଁ । ପୁଣି ମଧ୍ୟ ସ୍ଥାଲୀପୁଲାକନ୍ୟାୟ (ଭାତ ହାଣ୍ଡିରୁ ଗୋଟିଏ ଭାତ ଚିପିଲା ପରି) ଅନୁସାରେ ସେହି ଚମତ୍କାରିତାକୁ ଦୃଷ୍ଟାନ୍ତ ସ୍ୱରୂପ ଏବଂ ଦିଗଦର୍ଶନ ନିମନ୍ତେ ତ୍ରିଶକ୍ତି ଏବଂ ତ୍ରିମୂର୍ତ୍ତିମାନଙ୍କର ଶାରୀରିକ ରଙ୍ଗ ବିଷୟରେ କିଛି ଉଲ୍ଲେଖ କରାଗଲା ।

**ତିନି ପ୍ରକାର ରଙ୍ଗର ସାଦୃଶ୍ୟ–** ସେମାନଙ୍କର ରଙ୍ଗ ବିଷୟରେ ଏହା ଚମତ୍କାରିତା ହେଉଛି ଯେ ସଂହାରକାରୀ ରୁଦ୍ର ତଥା ତାଙ୍କର ଭଗ୍ନୀ ମହାସରସ୍ୱତୀ ଧବଳ ବର୍ଣ୍ଣ ବିଶିଷ୍ଟ । ପାଳନ କର୍ତ୍ତା ବିଷ୍ଣୁ ଏବଂ ତାଙ୍କର ଭଗ୍ନୀ ମହାକାଳୀଙ୍କର ରଙ୍ଗ ନୀଳ ବର୍ଣ୍ଣ । ସୃଷ୍ଟି କର୍ତ୍ତା ବ୍ରହ୍ମା ଏବଂ ତାଙ୍କର ଭଗ୍ନୀ ମହାଲକ୍ଷ୍ମୀଙ୍କର ବର୍ଣ୍ଣ ସୁବର୍ଣ୍ଣ ସଦୃଶ । ଏହା ଜିନ୍ ତତ୍ତ୍ୱ ଦୃଷ୍ଟିରୁ ସ୍ୱଭାବିକ ଏବଂ ଯୁକ୍ତି ଯୁକ୍ତ ମଧ୍ୟ । କୌଣସି ଶକ୍ତି ନିଜର ପତିଙ୍କର ରଙ୍ଗ ପରି ହୁଅନ୍ତି ନାହିଁ । ସମସ୍ତେ ସାଧାରଣତଃ ଭାଇ ଭଗ୍ନୀଙ୍କର ବର୍ଣ୍ଣ ଧାରଣ କରିଥାନ୍ତି । ଟିକିଏ ସୂକ୍ଷ୍ମ ଭାବେ ବିଚାର କଲେ ଜଣାଯାଏ ଯେ ସେମାନଙ୍କ ମଧ୍ୟରେ ତିନି ରଙ୍ଗର ଯେଉଁ ବିଭାଗ ହୋଇଛି, ତାହାର ଆଧ୍ୟାତ୍ମିକତା କ'ଣ ଅଟେ ? ଏହି ବିଷୟରେ ଶାସ୍ତ୍ରମାନେ ଏହି ସିଦ୍ଧାନ୍ତ ଦେଇଅଛନ୍ତି ଯେ ସେହି ତିନି ମୂର୍ତ୍ତିଙ୍କର କାର୍ଯ୍ୟରେ ପାରସ୍ପରିକ କୌଣସି ବିରୋଧ ନାହିଁ । ଏଣୁ ତିନି ମୂର୍ତ୍ତିଙ୍କର ମଧ୍ୟ ଏହିପରି ରଙ୍ଗରେ, କାର୍ଯ୍ୟରେ, ଭାବରେ ପରସ୍ପର ସମ୍ବନ୍ଧ ରହିଛି ।

**ତ୍ରିମୂର୍ତ୍ତି ଏବଂ ତ୍ରିଶକ୍ତିଙ୍କର ପାରସ୍ପରିକ ସମ୍ବନ୍ଧ–** ଯଦି କିଏ କହନ୍ତି ଯେ ପାଳନକାରୀ ଏବଂ ସଂହାରକାରୀ ପରସ୍ପର ବିରୋଧୀ କାମ କରନ୍ତି, ତେବେ ହରି ଏବଂ ହରଙ୍କ ମଧ୍ୟରେ

ବିରାଗ ବା ଶତ୍ରୁତା ଭାବ ରହିପାରେ । ଏପରି ମତ ପୋଷଣ କରୁଥିବା ଲୋକ ପାଳନ ଏବଂ ସଂହାରର ଅର୍ଥ ନ ଜାଣି ଉପର ଠାଉରିଆ ଭାବେ ଏହା କହିଥାଏ । ଏହା ନିଶ୍ଚୟ ଯେ ହରି ଏବଂ ହର ଏକ ହିଁ ବସ୍ତୁର ପାଳକ ଏବଂ ସଂହାରକ ଅଟନ୍ତି । ଉଭୟଙ୍କର କ୍ରିୟାତ୍ମକ ଶକ୍ତି ମଧ୍ୟରେ ପାରସ୍ପରିକ ସମ୍ବନ୍ଧ ରହିଛି, ମାତ୍ର ବିଦ୍ୱେଷ, ବୈରତା ନାହିଁ। ଯେଉଁ ପଦାର୍ଥର ରକ୍ଷା କରିବାକୁ ପଡ଼େ ତାହାର ସଂହାର ଯଦି ହରଙ୍କଦ୍ୱାରା କରାଯାଏ ତେବେ ବିରୋଧ କେଉଁଠି ରହିଲା ? ଦୃଷ୍ଟାନ୍ତ ସ୍ୱରୂପ ରୋଗଗ୍ରସ୍ତ ପ୍ରାଣୀର ଜୀବନ ରକ୍ଷା ପାଇଁ ଯଦି ଡାକ୍ତରୀ ଶାସ୍ତ୍ରର ପ୍ରୟୋଗ (ଅପରେସନ୍) କରାଯାଏ ତେବେ ଏହାଦ୍ୱାରା ରୋଗର ସଂହାର ବା ବିନାଶ ହୁଏ । ତେବେ ତ ଜଣେ ରୋଗୀଠାରେ ହରି ଏବଂ ହର ଉଭୟଙ୍କର କାମ ପ୍ରତିଫଳିତ ହୁଏ।

**ମହାକାଳୀ ଏବଂ ରୁଦ୍ରଙ୍କର କାମ–** ତିନି ଶକ୍ତିର ରଙ୍ଗ ଏବଂ କାର୍ଯ୍ୟର ଏପରି ଚମତ୍କାର ସମ୍ବନ୍ଧ ରହିଛି ଯେ ରୁଦ୍ରଙ୍କୁ ଯେଉଁ ସଂହାର ରୂପୀ କାମ କରିବାକୁ ହୁଏ, ତାକୁ କାର୍ଯ୍ୟକାରୀ କରୁଥିବା ମହାକାଳ ରୂପୀ ରୁଦ୍ର ଶକ୍ତି ନିଜର ଭୟଙ୍କର କାର୍ଯ୍ୟ ଅନୁରୂପ ଏବଂ ଯୋଗ୍ୟ କଳାରଙ୍ଗର ଅଟନ୍ତି କିନ୍ତୁ ଏହି ସଂହାର କାମ ସଂହାର ପାଇଁ ନୁହେଁ, ମାତ୍ର ସାରା ସଂସାରର ରକ୍ଷଣ ଏବଂ କଲ୍ୟାଣ ପାଇଁ ଉଦ୍ଦିଷ୍ଟ ଅଟେ । ଏଥିପାଇଁ ସେ ଖରାପ ଅଂଶର ସଂହାର ବା ବିନାଶ କରି ନିଜର ପତିଙ୍କର କାମକୁ ପୂରା କରି ଖରାପତ୍ୱରୁ ବଞ୍ଚାଇଥିବା ଅସଲ ଜିନିଷକୁ ନିଜର ଭାଇ ବିଷ୍ଣୁଙ୍କ ହସ୍ତରେ ସମର୍ପଣ କରି କହନ୍ତି ହେ ଭାଇ ! ମୁଁ ମୋର ପତି ମହାଦେବଙ୍କର ରୁଦ୍ର ଶକ୍ତି ରୂପରେ ଖରାପତ୍ୱର ସଂହାର କରି ଦେଉଅଛି । ଅତଏବ ଆମ ଦମ୍ପତିଙ୍କର କାର୍ଯ୍ୟପୂର୍ଣ୍ଣ ହୋଇଛି । ଏବେ ତୁମେ ଏହି ସଂସ୍କାର ହୋଇଥିବା ଜିନିଷକୁ ନେଇ ନିଜର ପାଳନ କାର୍ଯ୍ୟ ସଂପାଦନ କର ।

**ରାଜନୀତି କ୍ଷେତ୍ରରେ–** ରାଜନୀତି କ୍ଷେତ୍ରରେ ମଧ୍ୟ ଏହାଦ୍ୱାରା ଆମକୁ ଶିକ୍ଷା ମିଳେ ଯେ ପ୍ରଜାଙ୍କର ରକ୍ଷା କରିବା ହେଉଛି ରାଜାଙ୍କର ପ୍ରଧାନ କର୍ତ୍ତବ୍ୟ ।

ଯଜ୍ଞେନାବାପ୍ୟତେ ସ୍ୱର୍ଗୋଂ ରକ୍ଷଣାତ୍ ପ୍ରାପ୍ୟତେ ତଥା । ଏଇଥିପାଇଁ ଐଶ୍ୱର୍ଯ୍ୟକାମୀ ରାଜାଙ୍କର କର୍ତ୍ତବ୍ୟ ହେଉଛି ଦେଶକୁ ରକ୍ଷା କରିବା । ପ୍ରଜା ପାଳନ ଦ୍ୱାରା ରାଜାଙ୍କୁ ସ୍ୱର୍ଗପ୍ରାପ୍ତି ହୁଏ ଯାହା ଯଜ୍ଞାଦି ଦ୍ୱାରା ଲାଭ ହୋଇଥାଏ । ଏହା ଉପରେ ଆକ୍ଷେପ ରୂପରେ ପ୍ରଶ୍ନ କରାଯାଇପାରେ ଯଦି ଏହା ଠିକ୍, ତେବେ ପ୍ରଜାମାନଙ୍କୁ ରାଜା କାହିଁକି ଦଣ୍ଡିତ କରନ୍ତି ? ଏହାର ଉତ୍ତରରେ ଭଗବାନ ମନୁ କହିଛନ୍ତି–

ଅଦଣ୍ଡ୍ୟାନ୍ଦଣୟନ, ରାଜା ଦଣ୍ଡାଶ୍ଚୈବାପ୍ୟଦଣ୍ଡୟନ୍ ।
ଅଯଶୋ ମହଦାପ୍ନୋତି ନରକଂ ଚୈବ ଗଚ୍ଛତି ।।

(ମନୁସଂହିତା ୮/୧୨୮)

ଅର୍ଥାତ୍ ଅଦଣ୍ଡନୀୟକୁ ଦଣ୍ଡଦାନ କରି ଏବଂ ଏହି ପରି ଦଣ୍ଡନୀୟକୁ ଦଣ୍ଡ ନ ଦେବା ବାଲା ରାଜା ମହାନ ଅପଯଶର ଭାଗୀଦାର ହେବାକୁ ପଡ଼େ ଏବଂ ମୃତ୍ୟୁ ପରେ ତାକୁ ନରକକୁ ଯିବାକୁ ହୁଏ ।

ଏହି ଶଙ୍କାର ସମାଧାନ ହେଉଛି ଯେ ପ୍ରଜାଙ୍କର ରକ୍ଷା, ଦୁଷ୍ଟଜନକୁ ଦଣ୍ଡ ଏ ଦୁଇଟି କାର୍ଯ୍ୟ ରାଜାଙ୍କର ଅଟେ । ପରନ୍ତୁ ଏମାନଙ୍କ ମଧ୍ୟରୁ ଦୁଷ୍ଟକୁ ଦଣ୍ଡ ଦେବାର ଯେଉଁ କର୍ତ୍ତବ୍ୟ ଅଛି ତାହା ଦଣ୍ଡବିଧାନ ପାଇଁ ନୁହେଁ ମାତ୍ର ସଜ୍ଜନମାନଙ୍କର ରକ୍ଷାରୂପୀ ଅସଲ ରାଜଧର୍ମର ପାଳନ ପାଇଁ ଗୋଟିଏ ଅନିବାର୍ଯ୍ୟ ଅଙ୍ଗ ଅଥବା ସାଧନ ରୂପୀ କାମ ଅଟେ । ଅତଏବ ପାଶ୍ଚାତ୍ୟ ରାଜନୀତି ଗ୍ରନ୍ଥକାରମାନେ ମଧ୍ୟ ଦୋଷୀକୁ ସଜା ଦେବାର ନିୟମକୁ ସ୍ୱୀକାର କରି କହିଛନ୍ତି ଯେ ପ୍ରଜାଙ୍କର ରକ୍ଷା ନିମନ୍ତେ ଦଣ୍ଡ ଦେବା ହେଉଛି ରାଜାଙ୍କର କର୍ତ୍ତବ୍ୟ ।

**ଅବତାରର ପ୍ରୟୋଜନ–** ଭଗବାନ ଶ୍ରୀକୃଷ୍ଣ ଗୀତାର ଚତୁର୍ଥ ଅଧ୍ୟାୟର ଅଷ୍ଟମ ଶ୍ଳୋକରେ ଅବତାରର ଉଦ୍ଦେଶ୍ୟ ଏବଂ ପ୍ରୟୋଜନ ସମ୍ପର୍କରେ କହିଛନ୍ତି, ପ୍ରଥମତଃ 'ପରିତ୍ରାଣାୟ ସାଧୁନା' ଦ୍ୱିତୀୟରେ 'ବିନାଶାୟାଚ ଦୁଷ୍କୃତାମ' । ଅର୍ଥାତ୍ ଷଢ଼ି ଯାଇଥିବା ଗୋଟିଏ ଅଙ୍ଗୁଳିର କ୍ଷତ–ବିଷ ଯେପରି ସାରା ଶରୀର ମଧ୍ୟରେ ବ୍ୟାପିବାରୁ ବନ୍ଦ କରିବା ପାଇଁ ଡାକ୍ତର ଅପରେସନ ଦ୍ୱାରା କ୍ଷତକୁ କାଟି ଦିଅନ୍ତି ସେହିଭଳି ଭଗବାନ ଶ୍ରୀକୃଷ୍ଣ ଶ୍ରୀରୁଦ୍ରଙ୍କର ସଂହାର କାର୍ଯ୍ୟ କରନ୍ତି । ତ୍ରାସିତ ସାଧୁମାନଙ୍କର ରକ୍ଷା ନିମନ୍ତେ ଦୁଷ୍ଟମାନଙ୍କର ବିନାଶ କରନ୍ତି । ତାଙ୍କର ଅବତାର କେବଳ ଜଗତର ପରିପାଳନ ନିମନ୍ତେ । ଅନ୍ୟ କିଛି ପ୍ରୟୋଜନ ନିମନ୍ତେ ଉଦ୍ଦିଷ୍ଟ ନୁହେଁ ।

**ମହାଲକ୍ଷ୍ମୀ ଏବଂ ବିଷ୍ଣୁଙ୍କର କାମ–** ବିଶ୍ୱ ପାଳନ ନିମନ୍ତେ ବିଷ୍ଣୁଙ୍କୁ ଯେଉଁ କାମ କରିବାକୁ ପଡ଼େ ତାହାକୁ କାର୍ଯ୍ୟକାରୀ କରିବା ପାଇଁ ମହାଲକ୍ଷ୍ମୀଙ୍କର ବିଷ୍ଣୁ ଶକ୍ତିର ସହାୟତା ନେବାକୁ ପଡ଼େ । ବିଷ୍ଣୁଙ୍କର ପାଳନାତ୍ମକ କାର୍ଯ୍ୟ ଲକ୍ଷ୍ମୀଙ୍କର ସୁବର୍ଣ୍ଣ ସଦୃଶ ଶୁଦ୍ଧ, କଲ୍ୟାଣକର ସହାୟତା ବିନା ସଫଳ ହୋଇପାରେ ନାହିଁ ।

ଏହି ପାଳନ କାର୍ଯ୍ୟ କେବଳ ପାଳନ କରି ଛାଡ଼ିଦେବା ଉଚିତ ନୁହେଁ ବରଂ ତାହା ଜୀବଜଗତର ପୋଷଣ ଏବଂ ବର୍ଦ୍ଧନ କରିବା ଉଦ୍ଦେଶ୍ୟରେ କରାଯାଏ । ଏଣୁ ମହାଲକ୍ଷ୍ମୀ ପାଳନ କରି ଅର୍ଥାତ୍ ପତିଶ୍ରୀଙ୍କର ପାଳନ କାର୍ଯ୍ୟକୁ ପୂରଣ କରି ପାଳିତ ପ୍ରାଣୀ ବିଶେଷଙ୍କୁ ଭ୍ରାତା ଶ୍ରୀବ୍ରହ୍ମାଙ୍କୁ ସମର୍ପଣ କରି କହନ୍ତି ହେ ଭାଇ ! ମୁଁ ମୋର ପତି ମହାବିଷ୍ଣୁଙ୍କର ଶକ୍ତି ରୂପରେ ଏହି ଜିନିଷକୁ ପାଳନ କରିଛି । ଏଥିରେ ମୁଁ ମୋର ଦମ୍ପତିର କାର୍ଯ୍ୟକୁ ନିର୍ବାହ କରିଛି । ଏବେ ଆପଣ ଏହି ଜଗତକୁ ନେଇ ନିଜର ସୃଷ୍ଟ୍ୟାତ୍ମକ କାର୍ଯ୍ୟ କରି ନୂତନ ସୃଷ୍ଟିର ପୋଷଣ ଏବଂ ବର୍ଦ୍ଧନ କରନ୍ତୁ ।

**ମହାସରସ୍ୱତୀ ଏବଂ ବ୍ରହ୍ମାଙ୍କର କାର୍ଯ୍ୟ–** ବ୍ରହ୍ମାଙ୍କୁ ଯେଉଁ ନୂତନ ଜିନିଷର ଆବିଷ୍କାର ବା ସୃଷ୍ଟିରୂପୀ କାର୍ଯ୍ୟ କରିବାକୁ ହୁଏ, ତାକୁ ସମ୍ପାଦନ କରୁଥିବା ମହାସରସ୍ୱତୀ ରୂପୀ ବ୍ରହ୍ମଶକ୍ତି ନିଜର ସୃଷ୍ଟ୍ୟାତ୍ମକ କାର୍ଯ୍ୟ ଅନୁରୂପ ଏବଂ ଯୋଗ୍ୟ ଶ୍ୱେତବର୍ଣ୍ଣ ପରିଅଟେ । ପରନ୍ତୁ ସେହି ପୋଷଣ ଓ ବର୍ଦ୍ଧନର କାମ କେବଳ ଅଗ୍ରସର କରିବାକୁ ନୁହେଁ, ବରଂ ପୋଷଣ ଏବଂ ବର୍ଦ୍ଧନ ସମୟରେ ଯେଉଁ ଅନିଷ୍ଟ ପଦାର୍ଥ ସମ୍ମିଳିତ ହୁଏ, ତାହାକୁ ଦୂରକୁ ହଟାଇ ଠିକ୍ କରିବା ଉଦ୍ଦେଶ୍ୟରେ କରାଯାଏ । ଏହିପରି ବର୍ଦ୍ଧନର କାମ ହୋଇଯିବା ପରେ ନିଜର ବଢ଼ାଇଥିବା ଜିନିଷକୁ ନିଜର ଭ୍ରାତା ଅର୍ଥାତ୍ ରୁଦ୍ରଙ୍କର ହସ୍ତରେ ଅର୍ପଣ କରି ମହାସରସ୍ୱତୀ କୁହନ୍ତି ଭାଇ ! ମୁଁ ମୋର ପତି ହିରଣ୍ୟଗର୍ଭ ବ୍ରହ୍ମାଙ୍କର ସୃଷ୍ଟି–ଶକ୍ତି ରୂପରେ ଏହି ଜିନିଷ (ଜଗତ)ର ପୋଷଣ ଓ ବର୍ଦ୍ଧନ କରିଛି ଏବଂ ଏହି ପୋଷଣ ଓ ବର୍ଦ୍ଧନ କରିବା ସମୟରେ ଏଥିରୁ ଯେଉଁ ଖରାପ ଓ ତ୍ରୁଟି ବାହାରିବ ତାହାଦ୍ୱାରା ସଂହାର କରିବା କାମ ଆମର ନୁହେଁ । ଆପଣଙ୍କର ଅଟେ । ଏଣୁ ଏହାକୁ ଗ୍ରହଣ କରି ଏହା ଉପରେ ଛୁରିକା ପ୍ରୟୋଗ କରନ୍ତୁ । ଅର୍ଥାତ୍ ଏହାକୁ ପରିମାର୍ଜିତ କରନ୍ତୁ ।

ଏହିପରି ଏକ ହିଁ ପରମାତ୍ମା ଜଗଦୀଶ୍ୱର ମହାପ୍ରଭୁ ସୃଷ୍ଟି, ପାଳନ ଏବଂ ସଂହାର– ଏହି ତିନୋଟି କାମ ଚକ୍ରକୁ ନିୟମିତ ଭାବେ ଲଗାତାର ଚଳାଇ ଆସୁଛନ୍ତି । ବ୍ରହ୍ମା, ବିଷ୍ଣୁ ଏବଂ ରୁଦ୍ର ଏହି ତିନି ନାମରେ ଦୁନିଆ ପ୍ରସିଦ୍ଧ ଅଟନ୍ତି । ସେମାନଙ୍କର ଏହି ତିନୋଟି କାମକୁ ସଂପାଦନରେ ସାହାଯ୍ୟ କରୁଥିବା ଜଗନ୍ମାତା ଭଗବତୀ ମହାମାୟାଙ୍କର ଅନ୍ତର୍ଗତ ସୃଷ୍ଟି–ଶକ୍ତି, ପାଳନ–ଶକ୍ତି ଏବଂ ସଂହାର–ଶକ୍ତି ରହିଛି । ପୂର୍ବୋକ୍ତ କାରଣରୁ ଓଲଟା କ୍ରମରେ ସେମାନଙ୍କର ନାମ ହେଉଛି ମହାକାଳୀ, ମହାଲକ୍ଷ୍ମୀ ଏବଂ ମହାସରସ୍ୱତୀ ।

ତ୍ରିମୂର୍ତ୍ତିଙ୍କ ସହିତ ତ୍ରିଶକ୍ତିଙ୍କର ପୂଜୋପାସନା ଭାରତୀୟ ଜୀବନ ଧାରାରେ ନିତ୍ୟ ସଂପାଦିତ ହେଉଛି । ପୂଜାର୍ଚ୍ଚନାର ପ୍ରାରମ୍ଭରେ ପଞ୍ଚଦେବତାଙ୍କର ଆରାଧନାର ଆଦ୍ୟ ମାଙ୍ଗଳିକ ଆବାହନୀରେ କୁହାଯାଇଛି–

''ଗଣେ ନାରାୟଣେ ରୁଦ୍ରେ ଅମ୍ବିକେ ଭାସ୍କରେ ତଥା
ଭିନ୍ନାଭିନ୍ନ ନକର୍ତ୍ତବ୍ୟଂ ପଞ୍ଚଦେବ ନମୋ[illegible]ତେ ।''

ଏଠାରେ ଚାରି ଦେବତାଦି ମଧ୍ୟରେ ଅମ୍ବିକାଙ୍କୁ ଦେବତା ଭାବରେ ଗ୍ରହଣ କରାଯାଇଛି । ସକଳ ଦେବୀଙ୍କର ପ୍ରତିନିଧିତ୍ୱ କରୁଥିବା ଦେବୀଙ୍କର ଆରାଧନା ସୂଚାଇ ଦେଉଛି ଯେ ଶକ୍ତି ସ୍ୱରୂପିଣୀ ମାତା ଅମ୍ବିକା ଏବଂ ତ୍ରିମୂର୍ତ୍ତିଙ୍କ ବିନା ହିନ୍ଦୁଧର୍ମ ଦର୍ଶନର ଯାଜ୍ଞିକ, ମାଙ୍ଗଳିକ କାର୍ଯ୍ୟର ଶୁଭମସ୍ତୁ ହୋଇପାରେ ନାହିଁ ।

ଏହି ପ୍ରମାଣସିଦ୍ଧ ଯେ ପରମାତ୍ମା ସ୍ୱୟଂ ପ୍ରକାଣ୍ଡ ବିଶ୍ୱକୁ ଲାଳନ, ପାଳନ, ସଂହାର କରିବାର ଦାୟିତ୍ୱ ସ୍ୱଅଙ୍ଗଭୂତ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କୁ ଅର୍ପଣ କରିଛନ୍ତି । ତ୍ରିଦେବତାଙ୍କର କାର୍ଯ୍ୟକାରିଣୀ ଶକ୍ତି ଭାବରେ ତ୍ରିଶକ୍ତିଙ୍କୁ ସୃଷ୍ଟି କରି ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟ୍ୟାତ୍ମକ, ପାଳନାତ୍ମକ, ସଂହାରାତ୍ମକ କାର୍ଯ୍ୟକୁ ଶୃଙ୍ଖଳିତ, ପରିଶୋଭିତ, ସଂସ୍କାରିତ କାର୍ଯ୍ୟର ଭାର ଅର୍ପଣ କରିଛନ୍ତି । ଏଣୁ ପରମାତ୍ମା ନାରାୟଣ ହେଉଛନ୍ତି ତ୍ରିମୂର୍ତ୍ତି ଏବଂ ତ୍ରିଶକ୍ତିଙ୍କର ଏକୀଭୂତ ରୂପ । ଏଥିରେ ଶାସ୍ତ୍ରୀୟ ଦ୍ୱିମତ ନାହିଁ ।

ଗ୍ରା–ସରବେରଣୀ
ପୋ.ଅ.– ସାଆନ୍ଦା, ଜି–ଢେଙ୍କାନାଳ



# ଦେବୀ ଉପାସନା ଓ ଦଶହରା

ରବୀନ୍ଦ୍ର କୁମାର ବେହୁରିଆ

ଭାରତୀୟ ଦର୍ଶନରେ ଶକ୍ତି ପୂଜା ଏକ ମହାନ ପରମ୍ପରା । ଶକ୍ୟତେ ଜେତ୍ର ମନୟା ଇତି ଶକ୍ତିଃ ଅର୍ଥାତ ଯାହା ଦ୍ୱାରା ଜୟ କରିବାର ପ୍ରେରଣା ଜନ୍ମେ, ସେ ସୃଷ୍ଟି, ସ୍ଥିତି ଓ ବିଲୟର ନିୟାମକା । ଏହି ପରିପ୍ରେକ୍ଷୀରେ ହିନ୍ଦୁମାନଙ୍କର ଉପାସନା ଓ ଶକ୍ତି ବିଶ୍ୱାସ ମୁଖ୍ୟତଃ ଦୁଇଟି ଚିନ୍ତାଧାରା ଉପରେ ପର୍ଯ୍ୟବସିତ । ପୁରୁଷ ପ୍ରାଧାନ୍ୟ ପାଇଁ ବେଦ ଓ ନାରୀର ପ୍ରାଧାନ୍ୟ ପାଇଁ ତନ୍ତ୍ରଶାସ୍ତ୍ର, ଏହି ଦୁଇଟି ଶକ୍ତି ଆରାଧନାର ଚିରନ୍ତନ ଉତ୍ସ ।

ଏହା ସତ୍ୟ, ଶକ୍ତି ବିହୀନ ଶିବ ଶବର ଆଧାର– କେବଳ ଶିବ କାହିଁକି, ବ୍ରହ୍ମା, ବିଷ୍ଣୁ, ରୁଦ୍ର, ଇନ୍ଦ୍ର, ଅଗ୍ନି, ସୂର୍ଯ୍ୟ, ବରୁଣ ଓ ମରୁତ ଆଦି ସମସ୍ତ ଦେବତା ଚିରନ୍ତନ ଶକ୍ତିର ପ୍ରତୀକ । ସେମାନେ ଭାରତୀୟ ଦର୍ଶନରେ ଦେବତା ପଦବାଚ୍ୟ । ଅଗ୍ନିର ଶକ୍ତି ତାପ ପ୍ରଦାନ କରିବା, ତେଣୁ ସୂର୍ଯ୍ୟ ସକଳ ଶକ୍ତିର ଆଧାର । ଶରୀରକୁ ଶକ୍ତି ଯୋଗାଇବା ପାଇଁ ଜଳ ହିଁ ଏକାନ୍ତ ପ୍ରୟୋଜନ । ଠିକ୍ ସେହିପରି ବାୟୁର ଶକ୍ତି ମଣିଷର ଜୀବନ ଧାରଣ ପାଇଁ ସହାୟକ । ଏହାର ନିଚ୍ଛକ ସତ୍ୟ ଦେବୀ ଭାଗବତରେ ପରିସ୍ଫୁଟ ହୁଏ(୨.୧୨.୪୦)କିନ୍ତୁ ଏହାର ବ୍ୟାପକ ଅର୍ଥରେ ସମଗ୍ର ବିଶ୍ୱ ବୈଚିତ୍ର୍ୟର ସମ୍ଭାବ୍ୟ ପରମ୍ପରା ମହାଶକ୍ତିର ଅପାର କରୁଣା ବୋଲି ବିବେଚନା କରାଯାଏ । ସେହି ମହାଶକ୍ତି ହିଁ ଦୁର୍ଗା ଦୁର୍ଗତି ନାଶିନୀ ବୋଲି ଦର୍ଶନ ଶାସ୍ତ୍ର ପ୍ରମାଣ କରେ–

''ଦ୍ୟୁତିମଧ୍ୟେ ଗତୋଦୀପ୍ତି, ଦୀପ୍ତି ମଧ୍ୟେ ଗତୋଦ୍ୟୁତିଃ
ଦ୍ୟୁତିମଧ୍ୟେ ଗତୋଦୀପ୍ତ, ଦୀପ୍ତିମଧ୍ୟେ ଗତେଃ ଶଶିଃ
ଶଶିମଧ୍ୟେ ଗତଂ ଦେବ୍ୟା, ଶୁକ୍ରଂ ପରମଂ ଶୋଭନମ୍
ତନ୍ମେଧ୍ୟ ଚ ଗତୋବିନ୍ଦୁ, ବିନ୍ଦୁମଧ୍ୟେ ଗତଂ ମନଃ
ମନୋମଧ୍ୟେ ଗତୋଜୀବୋ, ଜୀବମଧ୍ୟେ ଗତୋପରମ୍
ଜୀବଃ ପରଃ ପରୋଜୀବଃ, ସର୍ବଂ ବ୍ରହ୍ମେତି ଭାବୟେତ ।''

ନିର୍ଗୁଣ ବ୍ରହ୍ମ ଯେତେବେଳେ ଜଗତର ପ୍ରକୃତି ଭାବ ଗ୍ରହଣ କରେ, ସେତେବେଳେ ତାହା ଶକ୍ତି ରୂପରେ ଅବତୀର୍ଣ୍ଣ ହୁଏ । ଏହା କ୍ରିୟା ଶକ୍ତି ଓ କେତି ଶକ୍ତିରେ ରୂପାନ୍ତରିତ ହୋଇ ବ୍ରହ୍ମରୂପ ଧାରଣ କରେ ଏବଂ ସେହି ବ୍ରହ୍ମ ପ୍ରକାରାନ୍ତରେ ପ୍ରାଣୀଙ୍କ ମଧ୍ୟରେ ବିଶ୍ୱମାୟା ଦୁର୍ଗାରୂପ ଧାରଣ କରି ଜୀବାତ୍ମାକା ପ୍ରାଣ ଶକ୍ତିର ଆଧାର ହୁଏ । ପୁଣି ଯେତେବେଳେ ବିଷ୍ଣୁ ମାୟାର ଆଚ୍ଛନ୍ନ ହୁଏ, ସେତେବେଳେ ବୈଷ୍ଣବୀ ଶକ୍ତି ଅନନ୍ତ ବୀର୍ଯ୍ୟା ବିଶ୍ୱସ୍ୟ ବୀଜ ରୂପରେ ନାମିତ ହୁଏ । ଯେପରି ତ୍ୱଂ ବୈଷ୍ଣବୀ ଶକ୍ତି ଅନନ୍ତ ବୀର୍ଯ୍ୟାବିଶ୍ୱସ୍ୟ ବୀଜଂ ପରମାସି ମାୟା । ସେଥିପାଇଁ ପୌରାଣିକ ତଥ୍ୟାନୁସାରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଶକ୍ତିମୟୀ ଦେବୀ ବିଭିନ୍ନ ରୂପରେ ନାମିତ । ବୃଦ୍ଧ ନଦୀ ତଟରେ ଭଗବତୀ, ସମ୍ବଲପୁରରେ ସମଲାଇ, କଟକରେ ଚଣ୍ଡୀ, କେଉଁଠି ବିମଳା, ବାୟୁରେ ସର୍ବମଙ୍ଗଳା, ପୁରୀ ଧାମରେ ଅଗ୍ନି କୋଣରେ ସେ ମଙ୍ଗଳା, ଉତ୍ତରରେ ଅର୍ଦ୍ଧଗୋଷିଣୀ, ଇଷାଣରେ ଇବା, ଦକ୍ଷିଣରେ କାଳରାତ୍ରି, ପୂର୍ବରେ ମରିଚିକା ଓ ନୈରୃତରେ ଚଣ୍ଡୀ ପୁଣି ଯାଜପୁରରେ ବିରଜା ରୂପରେ ଅବତୀର୍ଣ୍ଣ । ତନ୍ତ୍ରଶାସ୍ତ୍ର ଅନୁଯାୟୀ ଶକ୍ତିପୀଠ ସଂଖ୍ୟା ୫୧ । ମାତ୍ର ଦେବୀ ଭାଗବତରେ ୧୦୮ । କେବଳ ଭାରତ କାହିଁକି, ଭାରତ ବାହାରେ ଚୀନ୍, ତିବ୍ବତ ଏବଂ ମାଞ୍ଚୁରିଆ ପ୍ରଭୃତି ଦେଶରେ ବ୍ୟାପକ ପ୍ରଚାର ଓ ପ୍ରସାର ଦେବୀ ଶକ୍ତିର ପ୍ରାଚୀନତାକୁ ପ୍ରମାଣ କରିଛି । ଠିକ୍ ସେହିପରି ଗୁରୁ ଗୋବିନ୍ଦ ସିଂ ଦଶମ ବାଦ୍‌ଶାହ ଗ୍ରନ୍ଥରେ ଶକ୍ତିବାଦର ସୂଚନା ପ୍ରସଂଗରେ ମଧୁକୈଟଭ, ଚଣ୍ଡମୁଣ୍ଡ, ରକ୍ତବୀର୍ଯ୍ୟ, ଶୁଭନିଶୁଂଭ ପ୍ରଭୃତି ଦୈତ୍ୟଙ୍କ ବିନାଶକୁ ଆଧାର କରି ଏପରି ଭାବେ ଦେବୀ ମହାତ୍ମ୍ୟ ପ୍ରଦର୍ଶିତ ହୋଇଛି ଯେ ତାହାକୁ କୌଣସି ସମୟରେ ଜଣେ ପାଠକ ହତାଦର କରିପାରିବ ନାହିଁ । ପରନ୍ତୁ ଶକ୍ତିତତ୍ତ୍ୱର ପ୍ରାଚୀନତାକୁ ଅତି ସହଜରେ ଉପଲବ୍ଧ କରିପାରିବ ।

ଏହି ପରିପ୍ରେକ୍ଷୀରେ ବିଭିନ୍ନ ବେଦ, ବେଦାନ୍ତ ଓ ପୁରାଣରେ ଯେତେଗୁଡ଼ିଏ ଶକ୍ତିପୀଠର ବର୍ଣ୍ଣନା କରାଯାଇଛି, ତନ୍ମଧ୍ୟରେ ଭାରତରେ ୧୨ଟି ଶକ୍ତିପୀଠ ପ୍ରସିଦ୍ଧ। ସେଗୁଡ଼ିକ ମଧ୍ୟରେ କାଞ୍ଚିକାମାକ୍ଷୀ, ମାଳୟରେ ଭ୍ରମରାମ୍ବା, କନ୍ୟାକୁମାରୀରେ କୁମାରୀ, ଗୁଜରାଟରେ ଅମ୍ବା, କୋହ୍ଲାପୁରରେ ମହାଲକ୍ଷ୍ମୀ, ଉଜ୍ଜୟିନୀରେ କାଳିକା, ପ୍ରୟାଗରେ ଲଳିତା (ଆଲୋପି), ବିନ୍ଧ୍ୟାଚଳରେ ବିନ୍ଧ୍ୟବାସିନୀ, ବାରଣାସୀରେ ବିଶାଳାକ୍ଷୀ, ଗୟାରେ ମଙ୍ଗଳାବତୀ, ତ୍ରିପୁରାସୁନ୍ଦରୀ, ଗୁହ୍ୟକେଶରୀ ଆଦି ଅଗ୍ରଗଣ୍ୟା ବିଶେଷତଃ କାଞ୍ଚିକାମାକ୍ଷୀ ଉତ୍କଳୀୟମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି।

ଜଗଜ୍ଜନନୀ ଦେବୀ ଦୁର୍ଗା ଆଦ୍ୟାଶକ୍ତି। ଅନନ୍ତ ବିଶ୍ୱ ତାଙ୍କରିଠାରୁ ଉତ୍ପତ୍ତି। ଅଖିଳ ବିଶ୍ୱର ଜୀବ ଜଗତ ଓ ଜଡ଼ଜଗତ ସଭିଙ୍କର ସେ ଶକ୍ତିର ଆଧାର। ତାଙ୍କରି ଶକ୍ତିରେ ସଭିଏଁ ଶକ୍ତିମାନ। ବେଦ ଅର୍ଥାତ୍ ଜ୍ଞାନ ଓ ବିଜ୍ଞାନ ଉଭୟର ତତ୍ତ୍ୱ ଓ ତଥ୍ୟର କେନ୍ଦ୍ରବିନ୍ଦୁ ସେଇ ଆଦ୍ୟାଶକ୍ତି। ବେଦର ସକଳ ପରମ ରହସ୍ୟ ଏବଂ ବିଜ୍ଞାନର ବିସ୍ମୟକର ଆବିଷ୍କାର କେବଳ ତାଙ୍କରି ଶକ୍ତିରେ ସହଜଲଭ୍ୟ। ସେ ହିଁ ସକଳ ଶକ୍ତିର ଆଧାର । ବେଦ ଓ ବିଜ୍ଞାନ ଉଭୟ ମତରେ ସକଳ ଶକ୍ତି ତାଙ୍କରିଠାରୁ ସମ୍ଭୂତ। ସେ ହିଁ ଯଥାର୍ଥରେ ଅନନ୍ତ ବିଶ୍ୱର ଜନନୀ। ସେ ଏକାଧାରରେ ବିଶ୍ୱ-ପ୍ରସବିନୀ ଓ ବିଶ୍ୱ-ସଂହାରିଣୀ। ଭାରତୀୟ ଦର୍ଶନରେ ତାଙ୍କୁ କେତେବେଳେ ନୃମୁଣ୍ଡମାଳିନୀ ଧ୍ୱଂସରତା କାଳୀ ରୂପରେ, କେତେବେଳେ ଅସୁରମର୍ଦ୍ଦିନୀ ଦୁର୍ଗତିନାଶିନୀ ଦୁର୍ଗା ରୂପରେ, କେତେବେଳେ ବିଶ୍ୱଜନନୀ ଚିର ଯୌବନା ଗୌରୀ ରୂପରେ, କେତେବେଳେ ପୁଣି ବିଶ୍ୱଶାସନରତା ବିଶ୍ୱମୋହିନୀ ଭୁବନେଶ୍ୱରୀ ରୂପରେ ଆରାଧନା କରାଯାଇଛି। ଦେଶର ପ୍ରତିପ୍ରାନ୍ତ ଗୁଞ୍ଜରିତ ମାତୃ ସ୍ତୁତିରେ-

ଯା ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ।

ସମଗ୍ର ବିଶ୍ୱରେ ପ୍ରତ୍ୟେକ ବସ୍ତୁରେ ଦେବୀ ଶକ୍ତିରୂପେ ଅବସ୍ଥାନ କରୁଛନ୍ତି। ତାଙ୍କରିଠାରୁ ପ୍ରତ୍ୟେକ ବସ୍ତୁ ସୃଷ୍ଟି। ତାଙ୍କରି କୋଳରେ ସବୁରି ଅବସ୍ଥିତି ପୁଣି ତାଙ୍କରିଠାରେ ସମସ୍ତଙ୍କର ଶେଷ ପରିଣତି। ତାଙ୍କ ସହାୟତା ବିନା ଶିବ ମଧ୍ୟ ଶବ ପରି ଶକ୍ତିହୀନ ହୋଇ ପଡ଼ନ୍ତି। ତେଣୁ ଶଙ୍କରାଚାର୍ଯ୍ୟ ଆନନ୍ଦ ଲହରୀରେ ଲେଖିଛନ୍ତି-

ଶିବ ଶକ୍ତ୍ୟାଯୁକ୍ତୋ ଯଦି ଭବତି ଶକ୍ତ ପ୍ରଭାବିତୁଂ
ନଚଦେବ ଦେବଃ ଖଳୁ କୁଶଳ ସ୍ପନ୍ଦିତୁମପ।

ମାଆଙ୍କ ଦୁର୍ଗା ନାମକରଣ ସଂପର୍କରେ ନିମ୍ନ ଶ୍ଳୋକରୁ ଯାହା ସୂଚନା ମିଳେ, ସେ ଦୁର୍ଗନାମକ ଏକ ମହାସୁରକୁ ନିହତ କରି ବିଶ୍ୱଭାର ଲାଘବ କରିଥିବାରୁ ଦୁର୍ଗା ନାମରେ ତାଙ୍କର ଜଗତ ବିଖ୍ୟାତ ହୋଇଛି।

ତତ୍ରୈବ ଚ ବଧିଷ୍ୟାମି ଦୁର୍ଗମାଖ୍ୟଂ ମହାସୁରମ
ଦୁର୍ଗା ଦେବିତି ବିଖ୍ୟାତଂ ତସ୍ମେ ନାମ ଭବିଷ୍ୟତି।

ବେଦର ବ୍ରହ୍ମ ପୁରୁଷ ଦଶ ଅବତାର ରୂପେ ପରିକଳ୍ପିତ ହେବାପରି ତନ୍ତ୍ର ଶାସ୍ତ୍ରରେ ଶକ୍ତିଙ୍କୁ ମଧ୍ୟ ଦଶମହାବିଦ୍ୟା ରୂପେ ପରିକଳ୍ପନା କରାଯାଇଛି। ଦକ୍ଷ ପ୍ରଜାପତିଙ୍କ କନ୍ୟା ସତୀ ତନ୍ତ୍ରର ମହାଦେବୀ ରୂପେ ଦେଖାଦେଲେ। ଶିବ ତାଙ୍କ ପତ୍ନୀ ସତୀଙ୍କୁ ଦକ୍ଷ ଯଜ୍ଞକୁ ଯିବାପାଇଁ ବାରଣ କରିବାରୁ କ୍ରୋଧାନ୍ୱିତା ସତୀ ନିଜର ଦଶବିଧ ରୂପ ଶିବଙ୍କୁ ଦର୍ଶାଇଥିଲେ। ସମ୍ମୁଖରେ କାଳୀ, ପଶ୍ଚାତରେ ବଗଳା, ଦକ୍ଷିଣରେ ଛିନ୍ନମସ୍ତା, ବାମରେ ଭୁବନେଶ୍ୱରୀ, ଅଗ୍ନିକୋଣରେ ଧୂମାବତୀ, ନୈରତରେ କମଳା, ବାୟୁକୋଣରେ ମାତଙ୍ଗୀ, ଐଶାନରେ ଷୋଡ଼ଶୀ, ଉର୍ଦ୍ଧ୍ୱରେ ତାରା, ଅଧଃ ଭାଗରେ ଭୈରବୀ- ଏହିପରି ଦଶଦିଗରେ ସତୀଙ୍କ ଦଶବିଧ ଭୟଙ୍କର ରୂପ ଦର୍ଶନ କରି ମହାଜ୍ଞାନୀ ଶିବ ମଧ୍ୟ ଭୟରେ ନତମସ୍ତକ ହୋଇ ଦଶ ମହାବିଦ୍ୟାଙ୍କୁ ସ୍ତୁତି କରିବାକୁ ଲାଗିଲେ-

କାଳୀ ତାରା ମହାବିଦ୍ୟା ଷୋଡ଼ଶୀ ଭୁବନେଶ୍ୱରୀ
ଭୈରବୀ ଛିନ୍ନମସ୍ତା ଚ ବିଦ୍ୟା ଧୂମାବତୀ ତଥା
ବଗଳାସିଦ୍ଧ ବିଦ୍ୟା ଚ ମାତଙ୍ଗୀ କମଳାତ୍ମିକା
ଏକାଦଶ ମହାବିଦ୍ୟା ସିଦ୍ଧ ବିଦ୍ୟା ନମୋ ନମଃ।

ବେଦ ପରବର୍ତ୍ତୀ ପୁରାଣ ଯୁଗରେ ମହାଶକ୍ତି ଶିବାନୀ, ରୁଦ୍ରାଣୀ, ବୈଷ୍ଣବୀ ପ୍ରଭୃତି ବହୁ ନାମରେ ସମ୍ବୋଧିତା। ଏହି ଯୁଗରେ ତ୍ରିଗୁଣାତ୍ମିକା ମହାଶକ୍ତି ରାଜସୀ ଗୁଣରେ ସତ୍ ସ୍ୱରୂପା ମହାଲକ୍ଷ୍ମୀ, ସାତ୍ତ୍ୱିକ ଗୁଣରେ ଚିତ୍‌ସ୍ୱରୂପା ମହା ସରସ୍ୱତୀ, ତାମସୀ ଗୁଣରେ ଆନନ୍ଦ ସ୍ୱରୂପା ମହାକାଳୀ ନାମରେ ପ୍ରସିଦ୍ଧି ଲାଭ କରିଛନ୍ତି। ବିଭିନ୍ନ ପୁରାଣରେ ତାଙ୍କ ବିଦ୍ୟା ଚରିତ ଅବତାରଣା କରାଯାଇ ବସନ୍ତ ଓ ଶରତ କାଳରେ ତାଙ୍କର ବିଶେଷ ମହୋତ୍ସବର ପ୍ରଦର୍ଶନ କରାଯାଇଛି। ବିଭିନ୍ନ ପୁରାଣରେ କୁହାଯାଇଛି ଯେ ମହାଦେବୀ ରାବଣ ମହିଷାସୁର, ଶୁମ୍ଭ, ନିଶୁମ୍ଭ, ଚଣ୍ଡ, ମୁଣ୍ଡ, ରକ୍ତବୀଜ, ଦୁର୍ଗମ ପ୍ରଭୃତି ଅସୁର ବିନାଶ କରିବା ନିମିତ୍ତ ଶରତ କାଳରେ

ଦେବତାମାନଙ୍କ ଦ୍ୱାରା ବୋଧିତ ହୋଇଥିଲେ । ଶରତ କାଳ ଦେବୀଙ୍କ ଶୟନ କାଳ ହୋଇଥିବାରୁ ଏହି ସମୟରେ ବିଶେଷ କାରଣ ଦୃଷ୍ଟିରୁ ଦେବୀଙ୍କ ବୋଧନକୁ ଅକାଳବୋଧନକୁ କୁହାଯାଇ ମହିମାନ୍ୱିତ କରାଯାଇଛି । ଏହି ପୁରୋଦୃଷ୍ଟିରୁ ଶରତ କାଳକୁ ଦେବୀଙ୍କର ଆବାହନୀ କାଳରୂପେ ଗଣନା କରାଯାଇ ତ୍ରିଦିନାତ୍ମକ, ନବରାତ୍ର ଓ ଷୋଡ଼ଶ ଦିନାତ୍ମକ ପୂଜା ଉତ୍ସବର ଅବତାରଣା କରାଯାଇଛି । ମହନୀୟତା ହେଉଛି, ଦେବଗଣଙ୍କ ଦ୍ୱାରା ଶରତ କାଳରେ ମହାଦେବୀ ବୋଧିତ ହୋଇଥିବାରୁ ଶାରଦା ନାମରେ ପ୍ରସିଦ୍ଧି ଲାଭ କରିଛନ୍ତି ।

ଶରତକାଳେ ପୁରାଯସ୍ମାନ୍ନ ନମ୍ୟାଂ ବୋଧିତ ସୁରୈଃ
ଶାରଦା ସା ସମଖ୍ୟାତା ପୀଠେ ଲୋକେ ଚ ମାନବଃ ।

ବରାହ ପୁରାଣର ସପ୍ତବିଂଶ ଅଧ୍ୟାୟରେ ଉଲିଖିତ ଅଛି– ଶିବ ଅନ୍ଧକାସୁରକୁ ତ୍ରିଶୂଳରେ ପ୍ରହାର କରିବା ଦ୍ୱାରା ତାହାର ରକ୍ତ ଭୂମିରେ ପଡ଼ି ଅନ୍ଧକ କରି ଶକ୍ତିଶାଳୀ ଅସଂଖ୍ୟ ଅସୁର ଜାତ ହେବାକୁ ଲାଗିଲେ । ତେଣୁ ତାହାର ରକ୍ତ ଭୂମିରେ ପଡ଼ିବା ପୂର୍ବରୁ ତାକୁ ଶୋଷିବା ପାଇଁ ବ୍ରହ୍ମା ବିଷ୍ଣୁ ଆଦି ଅଷ୍ଟଦେବତା ସ୍ୱ ଦେହରୁ ଅଷ୍ଟମାତୃକା ଜାତ ହୋଇଥିଲେ । ସେମାନେ ହେଲେ, କାମ–ମାହେଶ୍ୱରୀ, କ୍ରୋଧ–ରୁଦ୍ରାଣୀ, ଲୋଭ–ବୈଷ୍ଣବୀ, ମୋହ–କୈମାରୀ, ମଦ–ବ୍ରହ୍ମାଣୀ, ମାତ୍ସର୍ଯ୍ୟ–ଇନ୍ଦ୍ରାଣୀ, ଅସୂୟା– ବରାହୀ, ଶୂନ୍ୟ–ଚାମୁଣ୍ଡା । ଏହି ରିପୁମାନେ ଏତେ ଶକ୍ତିଶାଳୀଯେ ଏମାନଙ୍କୁ ଦମନ କରିବା ଅସମ୍ଭବ । ଏଥିପାଇଁ ଭକ୍ତିଯୋଗରେ ସେମାନଙ୍କୁ ବଶୀଭୂତ କରିବା ନିମନ୍ତେ ମାତୃକା ପୂଜା ପ୍ରଚଳିତ ହେଲା ।

ମାନବ ସଭ୍ୟତାର ବିକାଶ ସଂଗେ ସଂଗେ ଆଦିମାତା ଦୁର୍ଗାଙ୍କର ମଧ୍ୟ ଭିନ୍ନ ଭିନ୍ନ ପ୍ରକାରେ ଉପାସନା କରାଯାଇଛି । ଦେବୀ ମହାତ୍ମ୍ୟରେ ଦୁର୍ଗାଙ୍କୁ ଶାକମ୍ଭରୀ, ବୋଲି କୁହାଯାଇଛି । ଯେଉଁ ଦୁର୍ଗା ଅସୁରମାନଙ୍କୁ ନିଧନ ଲାଗି ବିବସନା, ନରମୁଣ୍ଡମାଳିନୀ, ଖଡ଼ଗଧାରିଣୀ କାଳୀମୂର୍ତ୍ତି ସାଜିଥିଲେ, ସେହି ଦୁର୍ଗା ପୁଣି ସୃଷ୍ଟିପାଳନ ପାଇଁ ମାତୃମୂର୍ତ୍ତି ଶାକମ୍ଭରୀ ରୂପ ଧାରଣ କରନ୍ତି । ଦେବୀ ମହାତ୍ମ୍ୟରେ ମଙ୍ଗଳମୟୀ ଦୁର୍ଗା ଦେବତାମାନଙ୍କୁ କହିଛନ୍ତି– ଅନାବୃଷ୍ଟି ସମୟରେ ମୋ' ଶରୀରରୁ ନିର୍ଗତ ପ୍ରାଣ ସଞ୍ଜୀବନୀ ଶସ୍ୟ ସମୂହ ଦ୍ୱାରା ମୁଁ ଜଗତବାସୀଙ୍କ ଭରଣପୋଷଣ କରିବି ଏବଂ ଏହି କାରଣରୁ ମୁଁ ଶାକମ୍ଭରୀ ନାମରେ ବିଖ୍ୟାତ ହେବି ।

ପୁରାଣ ପରବର୍ତ୍ତୀ ତନ୍ତ୍ର ଯୁଗରେ ଶରତକାଳୀନ ମହୋତ୍ସବରେ ଯନ୍ତ୍ର, ତନ୍ତ୍ର, କବଚ, କୀଳକ, ପଟଳ ପ୍ରଭୃତି ସଂଯୋଜିତ କରାଯାଇ ମହୋତ୍ସବର ମହାତ୍ମ୍ୟ ବୃଦ୍ଧି କରାଯାଇଛି । ଭିନ୍ନ ଭିନ୍ନ ତନ୍ତ୍ର ମତରେ ମହାଦେବୀଙ୍କର ଭିନ୍ନ ଭିନ୍ନ ବିଧିସମ୍ମତ ପୂଜା ପ୍ରଚଳନ କରାଯାଇ ଶାରଦୀୟ ମହୋତ୍ସବକୁ ଏଇ ଯୁଗରେ ହିଁ ସର୍ବାଙ୍ଗ ସୁନ୍ଦର କରାଯାଇଛି । ତନ୍ତ୍ର ଯୁଗରେ ଦେବୀ ବିଭିନ୍ନ ନାମରେ ନାମିତ ହେଲେ ହେଁ ଶାରଦୀୟ ମହୋତ୍ସବରେ ନିତ୍ୟ ନୈମିତ୍ତିକ ପୂଜା ସହିତ ଦୁର୍ଗା ସପ୍ତଶତୀ ସ୍ୱାଧ୍ୟାୟ କରାଯାଇ ଏହାକୁ ଶାରଦୀୟ ଦୁର୍ଗୋତ୍ସବ ନାମରେ ଅଭିହିତ କରାଯାଇଛି । ଅଧିକନ୍ତୁ, ଏହି ଯୁଗରେ ସକଳ ବାର୍ଷିକ ପର୍ବରେ ଶାରଦୀୟ ଦୁର୍ଗୋତ୍ସବ ଶ୍ରେଷ୍ଠ ଆସନ ଅଳଙ୍କୃତ ପୂର୍ବକ ମହାପାର୍ବଣ ନାମରେ ଖ୍ୟାତିଲାଭ କରିଅଛି । ମହାପାର୍ବଣରେ ସାମ୍ବତ୍ସରିକ ଦୁର୍ଗୋତ୍ସବକୁ ସୁସଂହତ କରିବା କାମନାରେ ଏହି ସମୟରେ ଶାରଦା ତିଳକ, ଶାରଦା ଶରଦର୍ଚ୍ଚନ ପଦ୍ଧତି, ଦୁର୍ଗୋତ୍ସବ ଚନ୍ଦ୍ରିକା, ଦୁର୍ଗାଯଜନ ଦୀପିକା ପ୍ରଭୃତି ବହୁ ଶାସ୍ତ୍ର ରଚନା କରାଯାଇଛି । ସର୍ବୋପରି ତନ୍ତ୍ର ଯୁଗରେ ଶାରଦୀୟ ଦୁର୍ଗୋତ୍ସବର ମହାତ୍ମ୍ୟ ବିଶେଷ ବୃଦ୍ଧି ପାଇଛି ।

ମଧ୍ୟଯୁଗରେ ରାଜା, ମହାରାଜା ଓ ଜମିଦାରଙ୍କ ସମେତ ପ୍ରତ୍ୟେକ ପୀଠରେ ଶରତକାଳୀନ ଶାରଦୀୟ ଦୁର୍ଗୋତ୍ସବ ମହାଡ଼ମ୍ବରରେ ପାଳିତ ହୋଇଛି । ଯେପରିକି ସାମରିକ ବୈଭବରେ ଦୁର୍ଗାଙ୍କୁ ସକଳ ଦୁର୍ଗତିନାଶିନୀ ନାମରେ ଅଭିହିତ କରାଯାଇ ଏହି ବାର୍ଷିକ ମହୋତ୍ସବର ପରିପ୍ରସାର ଘଟିଛି । ସଭିଏଁ ଆସୁରିକ ଶକ୍ତିର ବିନାଶ କାମନାରେ ଶ୍ରଦ୍ଧା ଓ ଭକ୍ତିର ସହିତ ଶାରଦୀୟ ଦୁର୍ଗୋତ୍ସବ ପାଳନ ପୂର୍ବକ କୃତ୍ୟ ହୋଇଛନ୍ତି । ଦୈତ୍ୟନାଶନ ନିମିତ୍ତ 'ଦ', ବିଘ୍ନ ନାଶନ ନିମିତ୍ତ 'ଉ', ଭୋଗନାଶନ ନିମିତ୍ତ 'ରେଫ' ପାପ ନାଶନ ନିମିତ୍ତ 'ଗ'ଏବଂ ଭୟ ତଥା ଶତ୍ରୁ ନାଶନ ନିମିତ୍ତ 'ଆ' କାରର ସମଷ୍ଟିରେ ଦୁର୍ଗା ଶବ୍ଦ ନିଷ୍ପନ୍ନ ବୋଲି ଜନଚେତନା ସୃଷ୍ଟିହୋଇ ଶାରଦୀୟ ଦୁର୍ଗୋତ୍ସବର ପ୍ରାଧାନ୍ୟ ବୃଦ୍ଧି ମଧ୍ୟ ଯୁଗରେ ହିଁ ହୋଇଛି ।

ଦୈତ୍ୟ ନାଶାର୍ଥ ବଚନୋ 'ଦ' କାର ପରିକୀର୍ତ୍ତିତଃ
'ଉ'କାର ବିଘ୍ନ ନାଶାର୍ଥ ବା ଚକ୍ରଦେବ ସମ୍ମତଃ
ରେଫ ଭୋରଘ୍ନ ବଚନ 'ଗ' ଶ୍ଚ ପାପାଘ୍ନ ବାଚକ
ଭୟ ଶତୃଘ୍ନ ବଚନ ଚକାରଃ ପରିକୀର୍ତ୍ତିତଃ
ସ୍ମୃତ୍ୟକ୍ତି ଶ୍ରବଣାଦ୍ ଯସ୍ୟା ଏତେ ନଶ୍ୟନ୍ତି ନିଶ୍ଚିତମ୍
ବତୋ ଦୁର୍ଗା ହରେ ଶକ୍ତିଃ ହରିଣା ପରିକୀର୍ତ୍ତିତଃ ।

ପୁରାଣର ଆଖ୍ୟାୟିକା ବା ଜନଶ୍ରୁତି ଅନୁଯାୟୀ ଦୁର୍ଗା ପୂଜା ସାଧାରଣତଃ ବସନ୍ତ ଋତୁର ଏକ ଉତ୍ସବ– ଯାହା ବାସନ୍ତୀ ପୂଜା ନାମରେ ନାମିତ । ବାସନ୍ତୀ ପୂଜାର ସାର୍ବଜନୀନତା ନାହିଁ କହିଲେ ଚଳେ । ତାହା ପରିବର୍ତ୍ତେ ରୂପ ନେଇଛି ସାର୍ବଜନୀନ ଦୁର୍ଗାପୂଜା, ଏହା ଶାରଦୀୟ ପୂଜା ନାମରେ ଖ୍ୟାତ । ଏହି ପବିତ୍ର

ଦଶହରା ଦିବସରେ ରାମଚନ୍ଦ୍ର ମାତୃଦେବୀ ବନଦୁର୍ଗାଙ୍କୁ ସ୍ତୁତିକରି ରାବଣର ନିଧନ ଉଦ୍ଦେଶ୍ୟରେ ଲଙ୍କା ଅଭିମୁଖେ ବିଜୟ ଯାତ୍ରା କରିଥିବାରୁ ଏହି ତିଥିକୁ, ବିଜୟା ଦଶମୀ କୁହାଯାଏ। ପୁଣି ଏହି ଦିବସର ଅବ୍ୟବହିତ ପୂର୍ବରୁ ସିଂହବାହିନୀ ଆଦ୍ୟାଶକ୍ତି ଦୁର୍ଗା ଦୁର୍ଦ୍ଦମନୀୟ ମହିଷାସୁରକୁ ବଧ କରି ଦେବତାମାନଙ୍କ ମଙ୍ଗଳ ବିଧାନ କରିଥିଲେ। ମହିମାରୁ ନବମୀ ରାତିର ଅନ୍ଧକାର ସହ ତ୍ରୈଲୋକ୍ୟରୁ ଅମଙ୍ଗଳର ଛାୟା ଅପସରି ଗଲା । ଶୁକ୍ଳ ଦଶମୀରେ ସବୁ ପ୍ରକାର ଶୁଭ କାର୍ଯ୍ୟର ଆରମ୍ଭ ହେଲା। ଏହିଦିନ ଜଗତର ଦୁଃଖ ହରଣ ହୋଇଥିବାରୁ ଏହା ଦୁଃଖହା ଦଶମୀ ନାମରେ ଖ୍ୟାତି ଲାଭ କରିଅଛି ବୋଲି ଶୁଦ୍ରମୁନି ସାରଳା ଦାସ ଚଣ୍ଡୀ ପୁରାଣରେ ଲେଖିଛନ୍ତି-

କନ୍ୟା ଶୁକ୍ଳାଷ୍ଟମୀ ଦିନ ହେଲା ମହାମାରୁ
ଅସୁର ଅସୁରୀ ନ ଉବୁରିଲେ ତହିଁରୁ ।
ନବମୀ ରାତ୍ରିରେ ମହାମାରୁ ଯେ ହୋଇଲା
ତେଣୁ ମହାମାରୁ ନବମୀ ତା' ନାମ ହେଲା
କନ୍ୟାମାସ ଶୁକ୍ଳପକ୍ଷ ଦଶମୀର ଦିନ
ଗୁରୁବାର ଶ୍ରବଣା ନକ୍ଷତ୍ର ବିଦ୍ୟମାନ
ତୈତିଳ ନାମକରଣ ଯୋଗ ନାମେ ଧୃତି
ସର୍ବସିଦ୍ଧି ହୋଇଲାଯେ ଦଶମୀ ତିଥି
ସମସ୍ତ ଶୁଭ ମଙ୍ଗଳ ହେଲା ଉତପତ୍ତି
ତେଣୁ ଦୁଃଖହା ଦଶମୀ ନାମେ ଭବେ ଖ୍ୟାତି ।

ଦେବୀ ମହାତ୍ମ୍ୟରୁ ଜଣାଯାଏ ଯେ- ଚଣ୍ଡୀ ଶୁଣି ରାଜ୍ୟ ଭ୍ରଷ୍ଟା ରାଜା ସୁରଥଙ୍କ ମୋହ ତୁଟି ଯିବା ପରେ ସେ ଦୁର୍ଗା ପୂଜାର ପରମ୍ପରା ସୃଷ୍ଟି କରିଥିଲେ। କୁରୁକ୍ଷେତ୍ର ଯୁଦ୍ଧ ଆରମ୍ଭର ପ୍ରାକ୍‌କାଳରେ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ ବନଦୁର୍ଗାଙ୍କ ଆରାଧନା ପାଇଁ ଉପଦେଶ ଦେଇଥିଲେ। ଇତିହାସ ପ୍ରସିଦ୍ଧ ଛତ୍ରପତି ଶିବାଜୀ ମଧ୍ୟ ମୋଗଲମାନଙ୍କ ସହ ଯୁଦ୍ଧ କରିବା ସମୟରେ ଦୁର୍ଗାଙ୍କର ଉପାସନା କରିଥିଲେ। ସୂଚନାଯୋଗ୍ୟ ଯେ, ଊନବିଂଶ ଶତାବ୍ଦୀରୁ ମୃଣ୍ମୟ ଦୁର୍ଗାପୂଜାର ଉନ୍ମେଷ ଘଟି ଶାରଦୀୟ ଦୁର୍ଗୋତ୍ସବର ଏକ ମହନୀୟ ପରମ୍ପରା ସୃଷ୍ଟି ହୋଇଛି।

ଦେବୀପୀଠମାନଙ୍କରେ ଆଶ୍ୱିନମାସ କୃଷ୍ଣପକ୍ଷ ଅଷ୍ଟମୀଠାରୁ ଶୁକ୍ଳପକ୍ଷ ନବମୀ ପର୍ଯ୍ୟନ୍ତ ଷୋଳଦିନ ବ୍ୟାପୀ ପୂଜା ଅନୁଷ୍ଠିତ ହୁଏ। ଏହାକୁ ଷୋଳପୂଜା କୁହାଯାଏ। ଶୁକ୍ଳପକ୍ଷ ସପ୍ତମୀ ଦିନ ମୃଣ୍ମୟୀ ପ୍ରତିମା ଘଟ ସ୍ଥାପିତ ହୁଏ। ଅଷ୍ଟମୀ ଦିନ ମହାଷ୍ଟମୀ ପୂଜା ଓ ବଳିଦାନ କରାଯାଏ। ଦଶମୀ ଦିନ ମହା ସମାରୋହରେ ମୃଣ୍ମୟୀ ଦେବୀ ପ୍ରତିମା ଓ ଘଟ ବିସର୍ଜନ କରାଯାଏ।

ଆମ ଓଡ଼ିଶାରେ ଦୁର୍ଗାପୂଜା ମଧ୍ୟ ସୁ-ପ୍ରାଚୀନ। ଓଡ଼ିଶାରେ ଥିବା ସମସ୍ତ ଶକ୍ତି ପୀଠରେ ଏଇ ପୂଜାପାର୍ବଣ କେଉଁ ଯୁଗରୁ ପ୍ରଚଳିତ ହୋଇ ଆସୁଅଛି। ତାହାରି ସଠିକ୍ ତଥ୍ୟ ନମିଳିଲେ ମଧ୍ୟ ଏହା ତନ୍ତ୍ର ଯୁଗରୁ ପ୍ରଚଳିତ ଏଥିରେ ସନ୍ଦେହ ନାହିଁ। ଏତଦ୍‌ବ୍ୟତୀତ ଦୁର୍ଗାପୂଜା ଓଡ଼ିଶାର ଏକ ମୌଳିକ ଅନୁଷ୍ଠାନ। ଘଟପୂଜା ମାଧ୍ୟମରେ ଓଡ଼ିଶାରେ ଏହା ଅନାଦି ସମୟରୁ ପ୍ରଚଳିତ ଏବଂ ଉତ୍କଳୀୟ ସଂସ୍କୃତି ଓ ପରମ୍ପରା ମଧ୍ୟରେ ସାମିଲ ହୋଇ ସାରିଛି। ଖଣ୍ଡାୟତର ଖଣ୍ଡା, ନାପିତର କ୍ଷୁର, ନଉରୁଣୀ, କରଣର ଲେଖ ସରଞ୍ଜାମ ସଜ ବସେ ସେଇ ମାତୃଘଟ ସମୀପରେ। ଶ୍ରୀଦୁର୍ଗାଙ୍କର ଚରଣାବିନ୍ଦ ସ୍ପର୍ଶରେ ତାହା ପବିତ୍ରତାର ଚରମ ଶିଖରରେ ଉପନୀତ ହୁଏ। ନବପଲ୍ଲବ, ନବୋଲ୍ଲାସ ଓ ନବ ଉନ୍ମାଦନା ଭରିଦେଇ ମନକୁ ଦେବତ୍ୱର ସନ୍ଧାନ ଦିଏ। ମାତୃ ଆଶିଷ ଲାଭ କରି ଅସ୍ତ୍ରଶସ୍ତ୍ରର ଅନୁକୂଳ ହୁଏ ସେ ବିଜୟା ଦଶମୀ ବା ଦଶହରା ଦିନ। ଏଇ ଉତ୍ସବାନୁଷ୍ଠାନ ଓଡ଼ିଶାର ସଂପୂର୍ଣ୍ଣ ନିଜସ୍ୱ ଏବଂ କୌଣସି ପ୍ରଭାବରେ ପ୍ରଭାବିତ ନୁହେଁ।

ସଂପ୍ରତି ଶାରଦୀୟ ଦୁର୍ଗୋତ୍ସବ ଜାତି, ଧର୍ମ, ବର୍ଣ୍ଣ, ସଂପ୍ରଦାୟ ନିର୍ବିଶେଷରେ ଏକ ଗଣ ମହୋତ୍ସବ ରୂପେ ପ୍ରତିଭାତ। ଦୁର୍ଗତି ଦୁର୍ଗମ ଦୁର୍ଗରେ ଆଜି ମଣିଷ ଶାରଦୀୟ ଦୁର୍ଗୋତ୍ସବରେ ଜଗଜ୍ଜନନୀଙ୍କର କାମନା କରିଛି। ଆଜିର ପୁଣ୍ୟ ମହୋତ୍ସବରେ ଦେବୀ ଦୁର୍ଗା ଆପଣାର ଦଶଭୁଜାର ମିଥ୍ୟା, କ୍ରୋଧ, ଅଭିମାନ, ଅହଂତ୍ୱ, ନାସ୍ତିକଭାବ, ଆତ୍ମଗ୍ଲାନି, ଅସୂୟା, ଈର୍ଷା, ଦ୍ୱେଷ ଓ ପରୋକ୍ଷବାକ୍ ପ୍ରଭୃତି ଦଶବାଧାବିନିର୍ମୁକ୍ତ କରି ବିଶ୍ୱର ମଙ୍ଗଳ କରନ୍ତୁ, ଏକିକି ତାଙ୍କ ଶ୍ରୀଚରଣରେ ନିବେଦନ।

ସହାୟକ ଗ୍ରନ୍ଥ ସୂଚୀ:-

୧୦- ମିଶ୍ର, ଅନ୍ତର୍ଯ୍ୟାମୀ। ଭାରତୀୟ ଧର୍ମ ଓ ସଂସ୍କୃତି। ପୃ ୨୭-୨୯

୨-ମିଶ୍ର, କୁମୁଦିନୀ। ଓଡ଼ିଶାର ପର୍ବପର୍ବାଣି ଓଷାବ୍ରତ ଯାନିଯାତ୍ରା। ୧୯୯୪, ପୃ-୧୩୭-୪୩

୩-ରାୟ, ରାହାସ। ଅତ୍ରୈବ। ପୃ-୧୩୦-୪୨

୪- ସେନାପତି, ବିଭୂତି ଭୂଷଣ। ନୂଆଯୁଗର ନୂଆ ସକାଳ। ଅକ୍ଟୋବର-୨୦୧୧। ପୃ-୬-୭

୫-ବେହୁରିଆ, ରବୀନ୍ଦ୍ର କୁମାର। ଅତ୍ରୈବ। ପୃ-୧୦-୧୨

ଅବସରପ୍ରାପ୍ତ ଅଧ୍ୟାପକ, ଚାନ୍ଦବାଲି କଲେଜ,
ଚାନ୍ଦବାଲି, ଭଦ୍ରକ-୭୫୬୧୩୩

◆◆◆

# ଶ୍ରୀମହାଶକ୍ତିଙ୍କର ଏକାବନ ପୀଠସ୍ଥଳ

**କୃଷ୍ଣପ୍ରିୟା ଦାସ**

ବିଶିଷ୍ଟ ବ୍ରହ୍ମବେତ୍ତାମାନେ କେଉଁ ବୈଦିକ କାଳରୁ ପ୍ରମାଣିତ କରାଇଥିବା ସମ୍ମିଳିତ ତଥ୍ୟରୁ କିଛିଟା ଯଦି ଆଲୋଚନା କରାଯାଏ, ତାହା ହେଲା ପ୍ରକୃତି ଆଉ ପୁରୁଷ ସ୍ୱରୂପ ଶିବ ଏବଂ ଶକ୍ତି । ସମସ୍ତ ପୁରୁଷ ଶିବାଂଶ ହେଲେ ସମସ୍ତ ନାରୀ ଶକ୍ତ୍ୟାଂଶ । ଏହାଦ୍ୱାରା ସଂସାର ଦୁଇଭାଗରେ ବିଭକ୍ତ ହୋଇଥାଏ । ସମିଶ୍ରଣରେ ସୃଷ୍ଟି ଜଡ଼ ଚେତନ ସମଗ୍ର ବିଶ୍ୱାଦି ପରା ଶକ୍ତି ଦ୍ୱାରା ହିଁ ପ୍ରକାଶିତ ହୋଇଥାଏ । ତେଣୁ ପରାଶକ୍ତି ହିଁ ବିଶ୍ୱନାଥଙ୍କ ଦିବ୍ୟ ଜ୍ୟୋତି । ସୌନ୍ଦର୍ଯ୍ୟ ଲହରୀରେ ଶକ୍ତିମାତାଙ୍କୁ ସମ୍ବୋଧନ ସ୍ୱରୂପ ବର୍ଣ୍ଣନା କରାଯାଇଛି –''ତ୍ୱୟା ହୃତ୍ୟା ବାମଂ ବପୁରପରି ତୃପ୍ତେନ ମନସା ଶରୀରାର୍ଦ୍ଧଂଶୟେ'' ।।

ପରାଶକ୍ତି ମହାମାୟାଙ୍କ ଅନନ୍ତ ରୂପ ମଧ୍ୟରୁ ଗୋଟିଏ ରୂପର ଆଲୋଚନା କରାଯାଉ । ସେହି ବିଶେଷ ରୂପଟି ହେଉଛନ୍ତି ''ସତୀ'' । ଯାହାଙ୍କୁ ନେଇ ପୁରାଣକାରମାନେ ପ୍ରଧାନ ବିଷୟମାନ ରଚନା କରିଅଛନ୍ତି ।

ପ୍ରଜାପତି ଦକ୍ଷଙ୍କ ଅହଂକାର ସମିଶ୍ରିତ ଅଶ୍ୱମେଧ ମହାଯଜ୍ଞରେ ଦେବୀ ସତୀଙ୍କ ଅପମାନରେ ଅନିର୍ବଚନୀୟ ଦୁଃଖ ଥିଲା । ପତି ଅପମାନରେ ନିଜକୁ ଆୟତ୍ତ କରିବା ଅତ୍ୟନ୍ତ ଅସମ୍ଭବ । ଯନ୍ତ୍ରଣା ଜର୍ଜରିତ ସତୀ ଯଜ୍ଞାନଳରେ ନିଜକୁ ସମର୍ପି ଦେଲେ । ପ୍ରଚଣ୍ଡ ତେଜରେ ଜଳି ଉଠିଲେ ବୈଶାନର । ହାହାକାର ପ୍ରସରୀ ଗଲା ଗଗନ ପବନ । ଶିବଙ୍କ ରୌଦ୍ର ତାଣ୍ଡବରେ ଦମକି ଉଠିଲା ଆକାଶ ମେଦିନୀ । ଯଜ୍ଞ କୁଣ୍ଡରୁ ସତୀଙ୍କ ଅର୍ଦ୍ଧଦଗ୍ଧ ଶରୀରକୁ କାନ୍ଧରେ ପକାଇ, ଯଜ୍ଞ ବିଧ୍ୱଂସ ସହ ମଣ୍ଡାଳକାର ଗତିରେ ଘୁରି ଘୁରି ମହାଜ୍ୱାଳା ବିକିରଣ କରାନ୍ତେ, ସତୀଙ୍କ ଦଗ୍ଧାଙ୍ଗରୁ ଉଦ୍‌ଭବ ହେଲେ ଦଶମହାବିଦ୍ୟା । ସେହି ଦଶ ଶକ୍ତି ହେଲେ– ୧–କାଳୀ, ୨–ତାରା, ୩–ତ୍ରିପୁରା, ୪–ଭୁବନେଶ୍ୱରୀ, ୫–ଛିନ୍ନମସ୍ତା, ୬–ଭୈରବୀ, ୭–ଧୂମାବତୀ, ୮–ହିଙ୍ଗୁଳା, ୯–ବଗଳାମୁଖି, ୧୦–ମାତଙ୍ଗୀ ! ଏମାନଙ୍କ କାର୍ଯ୍ୟଥିଲା ଶିବଙ୍କ କ୍ରୋଧକୁ ଶାନ୍ତ କରାଇ, ସୃଷ୍ଟିର ସୁରକ୍ଷା କରିବା । କିନ୍ତୁ ଶିବଙ୍କ କ୍ରୋଧ ସେତେବେଳକୁ ପ୍ରଳୟ ମୁଦ୍ରାରେ ପହଞ୍ଚି ଯାଇଥିଲା । ସମଗ୍ର ଦେବା ଦେବୀ, ଶ୍ରୀବିଷ୍ଣୁଙ୍କ ଶରଣାପନ୍ନ ହେବାରୁ, ଭଗବାନ ଗୋଲକବିହାରୀଙ୍କ ଆଜ୍ଞାରେ ସୁଦର୍ଶନ ମହାଜ୍ୱାଳ ପ୍ରଦର୍ଶନ କରାଇ ସତୀଙ୍କ ଅଙ୍ଗ କର୍ତ୍ତନ କରିଚାଲିଲା । ଯାହା ଏକାବନ (୫୧) ଖଣ୍ଡରେ ବିଭକ୍ତ ହୋଇ ଆର୍ଯ୍ୟାବର୍ତ୍ତର ୫୧ ସ୍ଥାନରେ ପତିତ ହେବାରୁ ସେହି ସ୍ଥାନ ସମୂହ ମହାଶକ୍ତି ପୀଠରେ ପରିଣତ ହୋଇ ଶିବ ସଂଯୁକ୍ତ ରୂପେ ପୂଜିତ ହୋଇ ଆସୁଅଛି ।

''ତନ୍ତ୍ର ଚୂଡ଼ାମଣି ଗ୍ରନ୍ଥର ମହାନିରୂପଣ ପଟଳ''ରେ ଯେଉଁ ୫୧ ଶକ୍ତି ପୀଠର ମହାତ୍ମ୍ୟ ବର୍ଣ୍ଣନା ରହିଛି ତା'ର ବିବେଚନା ନିମ୍ନ ପ୍ରକାର । ସାଧକ ସମୂହଙ୍କ ସୁବିଧା ପାଇଁ ଏଠାରେ ଉଲ୍ଲେଖଯୋଗ୍ୟ ବିବରଣୀ ପ୍ରଦାନ କରାଯାଉଛି । ଶ୍ରଦ୍ଧାଳୁ ଭକ୍ତ, ଭକ୍ତି ବିଶ୍ୱାସର ଅନୁପାନରେ ନିଶ୍ଚୟ ଫଳପ୍ରାପ୍ତି କରିପାରିବେ । କଳିର କରାଳ ଶ୍ରୋତରୁ ସମୟ ବାହାର କରି, ସେହି ସ୍ଥାନମାନଙ୍କୁ ଯାଇ ମୁକ୍ତିମାର୍ଗ ତନ୍ତ୍ରଜ୍ଞାନ ଆହରଣ ପୂର୍ବକ ମାନସିକ ପ୍ରଶାନ୍ତି ପାଇପାରିବେ । ଏକାବନ ପୀଠଗୁଡିକ ହେଲା–

୧– ଉତ୍ତର ପ୍ରଦେଶର, ବୃନ୍ଦାବନ ଧାମ, ଯେଉଁଠାରେ ସତୀଙ୍କ କେଶଗୁଚ୍ଛ ପତିତ ହୋଇଥିଲା । ସେ ସ୍ଥାନର ଶକ୍ତି 'ଉମା' ନାମରେ ବିଦିତ । ଶିବ ହେଉଛନ୍ତି 'ଭୂତେଶ' । ଏହାକୁ କ୍ଷେତ୍ରପୀଠ କୁହାଯାଏ । ମଥୁରାରୁ ବୃନ୍ଦାବନ ମାର୍ଗ ୩ କି.ମି. ।

୨– ବାରାଣସୀର, ସତୀଙ୍କ କର୍ଣ୍ଣମଣି ପଡ଼ି ଶକ୍ତି 'ବିଶାଳାକ୍ଷୀ', ଶିବ– 'କାଳଭୈରବ' ନାମରେ ବିଦିତ । କାଶୀର

ମଣି କର୍ଣ୍ଣିକା ନିକଟ ମୀରାଘାଟ ନିକଟରେ ବିଶାଳାକ୍ଷୀ ମନ୍ଦିର । ସେଠାରେ ମନୋବାଞ୍ଛା ସିଦ୍ଧ ହୋଇଥାଏ ।

୩– ପ୍ରୟାଗ, ଯେଉଁଠି ସତୀଙ୍କ କରାଙ୍ଗୁଳି ପଡ଼ିଥିଲା, ସେଠାରେ ଶକ୍ତି, 'ଲଳିତା ଦେବୀ' ଶିବଙ୍କୁ 'ଭବ' ନାମରେ ନାମିତ କରାଯାଇଛି ।

୪– ଉତ୍ତରାଞ୍ଚଳର ପଞ୍ଚସାଗର, ଏଠାରେ ସତୀଙ୍କ ତଳଦାନ୍ତ ପଡ଼ିଥିଲା । ଶକ୍ତି ହେଲେ 'ବାରାହୀ' ଶିବ 'ମହାରୌଦ୍ର' ବା 'ମହାରୁଦ୍ର' ! ହରିଦ୍ୱାର ନିକଟସ୍ଥ ପଞ୍ଚକୁଣ୍ଡ ସାଗରକୁ ପଞ୍ଚସାଗର ଶକ୍ତିପୀଠ ବୋଲି କୁହାଯାଏ ।

୫– ବିହାର ପ୍ରଦେଶର ମିଥିଳା, ଯେଉଁଠି ଶକ୍ତିଙ୍କ ବାମସ୍କନ୍ଧ ଖସିଥିଲା, ଶକ୍ତି ହେଲେ 'ଉମା ଜୟ ଦୁର୍ଗା', ଶିବ 'ମହେଶ୍ୱର' ନାମରେ ବିଦ୍ୟମାନ ।

୬– ବୈଦ୍ୟନାଥ– ଏଠାରେ ସତୀଙ୍କ ହୃଦୟ ପତିତ ହୋଇଥିଲା । ଏଠାରେ ଶକ୍ତି 'ଜୟଦୁର୍ଗା' ଶିବ 'ବୈଦ୍ୟନାଥ' । ବିଦ୍ୱାନମାନଙ୍କ ମତରେ ଶିବ, ସତୀଙ୍କ ଦାହ ସଂସ୍କାର କରିଥିବାରୁ ଏହା ଅତ୍ୟନ୍ତ ପାବନ ପୀଠ ନାମରେ ପସିଦ୍ଧ । ଏଠାରେ ଆର୍ତ୍ତ ହରଣ ହୋଇଥାଏ ।

୭– ମଗଧ– ଏଠାରେ ସତୀଙ୍କ ଦକ୍ଷିଣ ଉରୁ ପଡ଼ିଥିବାରୁ ଶକ୍ତିଙ୍କ ନାମ 'ସର୍ବନନ୍ଦକାରୀ', ଶିବ 'ବ୍ୟୋମକେଶ' । ବିହାରର ରାଜଧାନୀ ପାଟନାର ବଡ଼ ପଟନେଶ୍ୱରୀ ଦେବୀଙ୍କ ମନ୍ଦିର ହିଁ ଶକ୍ତିପୀଠ ଅଟେ ।

୮– ହରିୟାଣାର କୁକ କ୍ଷେତ୍ର, ଏଠାରେ ସତୀଙ୍କ ଦକ୍ଷିଣ ଚକ୍ଷୁ ଖସିଥିବାରୁ ଶକ୍ତିଙ୍କୁ 'ସାବିତ୍ରୀ' ଓ ଶିବଙ୍କୁ 'ସ୍ଥାଣୁ' ନାମରେ ପ୍ରସିଦ୍ଧତା ଦିଆଯାଇଛି । ହରିୟାଣା ରାଜ୍ୟର କୁରୁକ୍ଷେତ୍ର ନଗର ଦୈପାୟନ ସରୋବର ନିକଟରେ ଏହି ପାବନପୀଠ ଅବସ୍ଥିତ ।

୯– ଓଡ଼ିଶାର ସତୀଙ୍କ ନାଭିମଣ୍ଡଳ ଉତ୍କଳର ଶଂଖନାଭିମଣ୍ଡଳରେ ପଡ଼ିଥିବାରୁ ଶକ୍ତି 'ବିମଳା' ନାମରେ ମାନ୍ୟତା ପାଇଅଛନ୍ତି । ଶିବ, 'ଜଗତ୍' ବୋଲି ବିବେଚନା କରା ଯାଇଅଛି । ଏହା ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ପ୍ରାଙ୍ଗଣରେ ଅବସ୍ଥିତ । ଏ ଦେବୀ ତ୍ରୈଲୋକ୍ୟ ପାଳିନୀ ଅଟନ୍ତି ।

୧୦– ଆସାମର କାମଗିରିଠାରେ ସତୀଙ୍କ ଯୋନି ପଡିଥିଲା । ଶକ୍ତି ହେଲେ 'କାମାକ୍ଷା', ଶିବ ହେଲେ 'ଉମାନନ୍ଦ' । ଆସାମର ପ୍ରମୁଖ ନଗର ଗୌହାଟିର ପଶ୍ଚିମ ଭାଗରେ ନୀଳାଞ୍ଚଳ ପର୍ବତ ଉପରେ ଅବସ୍ଥିତ । କାମାକ୍ଷା ଶକ୍ତିପୀଠ ଅତ୍ୟନ୍ତ ପ୍ରସିଦ୍ଧ ଓ ସାଧକମାନଙ୍କ ସାଧନା କ୍ଷେତ୍ର ଅଟେ ।

୧୧– ମେଘାଳୟର ଜୟନ୍ତିଠାରେ ସତୀଙ୍କ ବାମଜାନୁ ପଡ଼ିଥିଲା । ଶକ୍ତିଙ୍କ ନାମ 'ଜୟନ୍ତି' । ଶିବଙ୍କ ନାମ 'କ୍ରମ ଦିଶ୍ୱର' । ଶୈଳାଙ୍ଗ (ମେଘାଳୟ)ର ୫୦କି.ମି. ଦୂରରେ ଜୟନ୍ତିୟା ପର୍ବତ ଉପରେ ରହିଥିବା 'ବାଡ଼ର ଭାଗ' ଗାଁରେ ଏହି ଶକ୍ତିପୀଠ ସ୍ଥାନିତ ।

୧୨– ତ୍ରିପୁରାରେ ସତୀଙ୍କ ଦକ୍ଷିଣପାଦ ପଡ଼ିଥିଲା । ଶକ୍ତି 'ତ୍ରୀପୁରସୁନ୍ଦରୀ', ଶିବ 'ତ୍ରୀପୁରେଶ' । ତ୍ରିପୁରା ରାଜ୍ୟର ରାଧା କିଶୋରପୁର ଗ୍ରାମ ଠାରୁ ୨୧୧ କି.ମି. ଦୂର ପୂର୍ବ ଦକ୍ଷିଣର କୋଣ ପର୍ବତ ଉପରେ ଏହି ଶକ୍ତିପୀଠ ଅବସ୍ଥିତ ।

୧୩– ମଧ୍ୟପ୍ରଦେଶର ଭୈରବ ପର୍ବତ ଉପରେ ସତୀଙ୍କ ଉର୍ଦ୍ଧ୍ୱ ଓଷ୍ଠ ପଡ଼ିଥିଲା, ଏଠାରେ ଶକ୍ତି 'ଅବନ୍ତି', ଶିବ 'ଲମ୍ବକର୍ଣ୍ଣ' !

ମଧ୍ୟପ୍ରଦେଶର ଉଜ୍ଜୟିନୀ ନିକଟରେ ସିପ୍ରା ନଦୀକୂଳରେ ଭୈରବ ପର୍ବତ ରହିଛି । ଗୁଜରାଟରେ ମଧ ଗିରିନାର ନିକଟରେ ଏକ ଭୈରବ ପର୍ବତ ଦେଖାଯାଏ । ଏହି ଦୁଇ ସ୍ଥାନକୁ ଶକ୍ତିପୀଠ ମାନି ଯାତ୍ରା କରିବା ବିଧେୟ ।

୧୪– ରାମଗିରି– ଏଠାରେ ସତୀଙ୍କ ଦକ୍ଷିଣ ସ୍ତନ ପଡ଼ିଥିଲା । ଶକ୍ତି ହେଲେ 'ଶିବାନୀ', ଶିବ ହେଲେ 'ଚଣ୍ଡ' । ଚିତ୍ରକୂଟ ସାରଦା ମନ୍ଦିର ହିଁ ଏହି ଶକ୍ତିପୀଠ ବୋଲି ପ୍ରାଧନ୍ୟତା ଦିଆଯାଇଥାଏ ।

୧୫– ଉଜ୍ଜୟିନୀ– ଏଠାରେ ଶକ୍ତିଙ୍କ କୁକ୍ଷି ପଡ଼ିଥିଲା । ଶକ୍ତି ହେଲେ– 'ମାଙ୍ଗଲ୍ୟ ଚଣ୍ଡିକା', ଶିବ 'କପିଳାମ୍ବର' । ଉଜ୍ଜୟିନୀର ରଦ୍ରସାଗର ନିକଟ ହରସିଦ୍ଧ ମନ୍ଦିର ହିଁ ଏହି ଶକ୍ତିପୀଠ ।

୧୬– ସୌଣ– ଏଠାରେ ସତୀଙ୍କ ଦକ୍ଷିଣ ନିତମ୍ବ ପଡ଼ିଥିଲା । ଶକ୍ତି 'ନର୍ମଦା' ବା 'ସୋଣାକ୍ଷୀ' ! ଶିବ 'ଉଗ୍ରସେନ' । ଏହା ଅମର କଣ୍ଟକର ସୋନନଦୀର 'ଉଦ୍‌ଗମ' ସ୍ଥାନରେ ଗଢ଼ିଉଠିଛି ଶକ୍ତିପୀଠ ।

୧୭– ରାଜସ୍ଥାନର ମଣି ବୈଦିକ, ଏଠାରେ ସତୀଙ୍କ ଦୁଇ ଚିବୁକ ଗଳିତ ହୋଇଥିଲା । ଶକ୍ତି 'ଗାୟତ୍ରୀ', ଶିବ 'ସର୍ବାନନ୍ଦ' । ରାଜସ୍ଥାନର ପୁସ୍କର ପୀଠ ହିଁ ଗାୟତ୍ରୀ ମନ୍ଦିର ଶକ୍ତିସ୍ଥଳୀ ।

୧୮– ବିରାଟ– ଏଠାରେ ସତୀଙ୍କ ଦକ୍ଷିଣ ପାଦର ଅଙ୍ଗୁଳିଗୁଡ଼ିକ ପଡ଼ିଥିଲା । ଶକ୍ତି ହେଲେ 'ଅମ୍ବିକା' । ଶିବ 'ଅମୃତ' ।

ଏହି ଶକ୍ତି ପୀଠ ରାଜସ୍ଥାନର ରାଜଧାନୀ ଜୟପୁରଠାରୁ ଉତ୍ତର ଦିଗକୁ ୬୪ କି.ମି. ଦୂର ବୈରାଟ ଗ୍ରାମରେ ଅବସ୍ଥିତ ।

୧୯– ହିମାଚଳ ପ୍ରଦେଶର ଜ୍ୱାଳାମୁଖୀ । ଏଠାରେ ସତୀଙ୍କର ଜିହ୍ୱା ପତନ ଘଟିଥିଲା । ଶକ୍ତି 'ସିଦ୍ଧିଦା' ତଥା ଶିବ 'ଉନ୍ମତ' । ପଞ୍ଜାବର ଜ୍ୱାଳାମୁଖୀ ମନ୍ଦିର ହିଁ ଶକ୍ତିପୀଠ । ଏହି ମନ୍ଦିରରେ ଅଗ୍ନି ସଦୃଶ୍ୟ ଜ୍ୱାଳା ଧପ୍ ଧପ୍ ହେଉଥାଏ ସଦାସର୍ବଦା ।

୨୦– ଜାମ୍ମୁ କାଶ୍ମୀର ଶ୍ରୀପର୍ବତ । ଯେଉଁଠି ସତୀଙ୍କର ଦକ୍ଷିଣ ତଳ୍ପ ବା କର୍ଣ୍ଣପଟି ଖସିଥିଲା । ଶକ୍ତି, 'ଶ୍ରୀ ସୁନ୍ଦରୀ' । ଶିବ ସୁନ୍ଦରାନନ୍ଦ ନାମରେ ପ୍ରସିଦ୍ଧ । ଏହି ସ୍ଥାନ ଲଦାଖ (କାଶ୍ମୀର) । ଅନେକ କହନ୍ତି ନୀଳତଟ (ଆସାମ)ର ନୈରତ୍ୟ କୋଣର ଜୈନପୁରର ଶ୍ରୀପର୍ବତ ।

୨୧– କାଶ୍ମୀରରେ ସତୀଙ୍କ କଣ୍ଠ ପଡ଼ିଥିଲା । ଏଠାରେ ଶକ୍ତି 'ମହାମାୟା' ଓ ଶିବ 'ତ୍ରୀସଂନ୍ଧ୍ୟେଶ୍ୱର' । ଏହା ଅମରନାଥ ଗୁମ୍ଫା ଭିତରେ ରହିଥିବା ହେତୁ ଏହାକୁ ହୀମପୀଠ କହନ୍ତି ।

୨୨– ଗୁଜରାଟ, ପ୍ରଭାସରେ ଶକ୍ତିଙ୍କ ଉଦର ପଡ଼ିଥିଲା । ଶକ୍ତି ହେଉଛନ୍ତି 'ଚନ୍ଦ୍ରଭାଗା', ଶିବ 'ବକ୍ରତୁଣ୍ଡ' । ଏହି ପୀଠ ଗୁଜରାଟ ଗିରନାର ପର୍ବତ ଅମ୍ବାଜୀଙ୍କ ମନ୍ଦିର ଅଟେ ।

୨୩– ମହାରାଷ୍ଟ୍ରର କରବୀର ଠାରେ ସତୀଙ୍କ ତ୍ରୀନେତ୍ର ପଡ଼ିଥିଲା । ଶକ୍ତି 'ମହିଷା ମର୍ଦ୍ଦିନୀ', ଶିବ କ୍ରୋଧିଶ ନାମରେ ବିଖ୍ୟାତ । କୋଲ୍ଲାପୁର ମିରଜଠାରୁ ହାରାହାରି ୫୦ କି.ମି ଦୂରରେ ମହାଲକ୍ଷ୍ମୀ (ଅମ୍ବାଇ) ମନ୍ଦିର ହିଁ ଶକ୍ତିପୀଠ ।

୨୪– ଜନକ ସ୍ଥାନ– ଯେଉଁଠି ସତୀଙ୍କ ଥୋଡ଼ି ଗଳିଥିଲା । ଶକ୍ତି 'ଭ୍ରମରୀ', ଶିବ 'ବିକୃତାକ୍ଷ' । ନାସିକ ପାଖରେ ପଞ୍ଚବଟିର ଭଦ୍ରକାଳୀ ମନ୍ଦିର ହିଁ ଶକ୍ତିପୀଠ ।

୨୫– ଗୋଦାବରୀ । ସେଠାରେ ସତୀଙ୍କ ବାମଗଣ୍ଡ ଗଳିତ ହୋଇ ଥିଲା । ଶକ୍ତି 'ବିଶ୍ୱେଶି', ଶିବ ଦଣ୍ଡପାଣି । ଆନ୍ଧ୍ର ପ୍ରଦେଶର ରାଜ ମହେନ୍ଦ୍ରି ନିକଟରେ ଗୋଦାବରୀ ଷ୍ଟେସନ ନିକଟ କୁବୁରଲା କୋଟିତୀର୍ଥ ପାଖାପାଖି ଏହି ଶକ୍ତି ପୀଠ ଦଣ୍ଡାୟମାନ ।

୨୬– ଶ୍ରୀଶୈଳ । ଯେଉଁଠାରେ ସତୀଙ୍କର ଗ୍ରୀବା ଖସିଥିଲା । ଶକ୍ତି ହେଉଛନ୍ତି 'ମହାଲକ୍ଷ୍ମୀ' । ଶିବ 'ସମ୍ବରାନନ୍ଦ' । ଆନ୍ଧ୍ର ପ୍ରଦେଶର ଶ୍ରୀଶୈଳ ଦ୍ୱାଦଶ ଜ୍ୟୋତିଲିଙ୍ଗ ମଧ୍ୟରୁ ଏହା ଏକ । ଉକ୍ତ ମନ୍ଦିର ପ୍ରାଙ୍ଗଣରେ 'ଭ୍ରମରାମ୍ବା ଦେବୀ'ଙ୍କ ମନ୍ଦିର ହିଁ ଏହି ଶକ୍ତିପୀଠ ଭାବରେ ଖ୍ୟାତ ଲାଭ କରିଛି ।

୨୭– ପଶ୍ଚିମ ବଙ୍ଗଳାର କିରୀଟ, ଯେଉଁଠାରେ ସତୀ ମାତାଙ୍କ ମସ୍ତକ ମଣ୍ଡିତ ଅଷ୍ଟରତ୍ନ କିରୀଟ ବା ମୁକୁଟ ଖସି ପଡ଼ିଥିଲା । ସେଠାରେ ଶକ୍ତି– ବିମଳା, ଭୁବନେଶ୍ୱରୀ । ଶିବ– 'ଭୈରବ' ସଂବର୍ତ୍ତ ନାମରେ ପୂଜା ପାଉ ଅଛନ୍ତି । ମୁର୍ଶିଦାବାଦ ଜିଲ୍ଲାରେ ଲାଲ୍‌ନଗର ନିକଟବର୍ତ୍ତୀ 'ବଟରନଗର'ର ଗଙ୍ଗାକୂଳରେ ଅବସ୍ଥିତ । ହାଓ୍ୱାଡ଼ା, ବରହରଓ୍ୱା ଲୌହମାର୍ଗ, ଡାଂଗରା ଘାଟ ବସଷ୍ଟାଣ୍ଡରୁ ୮କି.ମି ଭିତରକୁ କୋଟୀ ପୀଠ ନାମରେ ଏହା ପ୍ରସିଦ୍ଧ ଲାଭ କରିଅଛି ।

୨୮– ଅଟ୍ଟହାସ୍ୟ– ଯେଉଁଠାରେ ସତୀଙ୍କ 'ଅଧରପୁଟ' ପଡ଼ିଥିଲା, ସେଠାରେ ଶକ୍ତି– 'ଫୁଲ୍ଲରା ଦେବୀ' । ଶିବ ବିଶ୍ୱେଶଂ ନାମରେ ବିଦିତ । ଏହିଶକ୍ତି ପୀଠ ବର୍ଦ୍ଧମାନଠାରୁ ୧୩ କି.ମି. ଦୂର କଟଓ୍ୱା ଅହମଦ୍‌ପୁର ଲାଇନ୍ ଲବପୁର ଷ୍ଟେସନ ପାଖରେ ଅବସ୍ଥିତ ।

୨୯– ନନ୍ଦିପୁର– ଯେଉଁଠି ସତୀଙ୍କ କଣ୍ଠହାର ଖସି ପଡ଼ିଥିଲା । ସେଠାର ଶକ୍ତି 'ନନ୍ଦିନୀ', ଶିବ– 'ନନ୍ଦି କେଶର' । ବୋଲପୁର (ଶାନ୍ତି ନିକେତନ)ଠାରୁ ୧୩ କି.ମି. ଦୂର ସୈନ୍ଥିୟ ରେଳ ଜଂକ୍ସନର ଅଗ୍ନିକୋଣରୁ ସାମାନ୍ୟ ଦୂରରେ ରେଳଲାଇନ ନିକଟ ଏକ ବଟବୃକ୍ଷ ତଳେ ଏହି ଶକ୍ତିପୀଠ ରହିଛି ।

୩୦– ନଳହଟି– ଯେଉଁଠାରେ ସତୀଙ୍କ ଉଦରନଳୀ ପଡ଼ିଥିଲା । ଶକ୍ତି 'କାଳିକା', ଶିବ 'ଯୋଗୀଶ' । ଏହିଶକ୍ତି ପୀଠ ବୋଲପୁର (ଶାନ୍ତିନିକେତନ)ଠାରୁ ୪୨ କି.ମି. ଦୂର ନଳହଟି ଜଂକ୍ସନରୁ ୩ କି.ମି. ଦୂର ନୈରତ କୋଣର ଏକ ଟିଲେ ଉପରେ ଅବସ୍ଥିତ ।

୩୧– ବକ୍ରେଶ୍ୱର– ଯେଉଁଠି ସତୀଙ୍କ 'ମାନସ' ରହିଗଲା । ଶକ୍ତି 'ମହିଷା ମର୍ଦ୍ଦିନୀ', ଶିବ 'ବକ୍ରନାଥ' । ଏହାଙ୍କ ଦର୍ଶନରେ ଆତ୍ମା ଶାନ୍ତି ପ୍ରାପ୍ତ ହୁଏ । ଓ୍ୱଜଂଳ ସୈନ୍ତିଆ ରେଳରାସ୍ତାର ଦୁବୁରାପୁର ଷ୍ଟେସନ ଠାରୁ ୧୩ କି.ମି. ଦୂରତ୍ୱରେ ଏହି ଶକ୍ତିପୀଠ ରହିଛି । ଏହା 'ନନ୍ଦିପୁର' ତଥା ନଳହଟି ଶକ୍ତିପୀଠ ପାଖାପାଖି ଅଟେ ।

୩୨– 'ବହୁଳା'– ଏଠାରେ ସତୀଙ୍କ ବାମହାତ ପଡ଼ିଥିଲା । ଶକ୍ତି– 'ବହୁଳା', ଶିବ 'ଭୀରୁକ' । ଏହି ଶକ୍ତି ପୀଠ ହାଓ୍ୱଡ଼ା ଠାରୁ ୧୪୪ କି.ମି. ଦୂର କଟଓ୍ୱା ଜଂକ୍ସନରୁ ପଶ୍ଚିମ କେତୁ ବ୍ରହ୍ମାଗ୍ରାମରେ ଅବସ୍ଥିତ ।

୩୩– ତ୍ରୀ ସ୍ରୌତା– ଏଠାରେ ସତୀଙ୍କ ବାମ ପାଦ ପଡ଼ିଥିଲା । ଶକ୍ତି 'ଭ୍ରମରୀ', ଶିବ 'ଈଶ୍ୱର' । ଏହା ବଂଗଳାର

ଜଳପାଇଗୁଡ଼ି ଜନପଦର ବୋଦା ଇଲାକା 'ଶାଲୱାଡ଼ି' ଗ୍ରାମର ତିସ୍ତା ନଦୀ କୂଳରେ ଅବସ୍ଥିତ ।

୩୪- ବିଭାଷ- ଯେଉଁଠି ସତୀଙ୍କ ବାମ ପାପୁଲୀ ଖସିଥିଲା । ଶକ୍ତି- 'କପାଳିନୀ', ଶିବ 'ଭୀମରପ' । ବଙ୍ଗଳାପ୍ରଦେଶର ମେଦିନୀପୁର ଜିଲ୍ଲା ପଞ୍ଚକୁରା ତମଲୁକ ଗ୍ରାମର ପ୍ରସିଦ୍ଧ କାଳୀ ମନ୍ଦିର ହିଁ ଶକ୍ତିପୀଠ ।

୩୫- ଯୁମାଘା- ଏଠାରେ ସତୀଙ୍କ କେତେକ ଆଙ୍ଗୁଠି ଖସିଥିଲା । ଶକ୍ତି 'ଭୂତଧାତ୍ରୀ' । ଶିବ 'କ୍ଷୀର କଣ୍ଟକ ବା ଯୁଗାଧ' । ଏହି ଶକ୍ତିପୀଠ ବଂଗଳାର ବର୍ଦ୍ଧମାନ ରେଲୱେ ଷ୍ଟେସନ ଠାରୁ ୩୨ କି.ମି. ଦୂର ଉତ୍ତର ଦିଗର କ୍ଷୀର ଗ୍ରାମରେ ଅବସ୍ଥିତ ।

୩୬- କାଳୀପୀଠ- ଏଠାରେ ସତୀଙ୍କ ଅନ୍ତିମ ଆଙ୍ଗୁଳି ଭୂପତିତ ହୋଇଥିଲା । ସେଠାରେ ଶକ୍ତି- 'କାଳୀକା', ଶିବ 'ନକୁଳୀଶ' । ଯାହା କଲିକତା କାଳୀଙ୍କ ସୁବିଖ୍ୟାତ୍ ମହାନ୍ ଶକ୍ତି ପୀଠ ।

୩୭- ତାମିଲ୍ନାଡୁର ଶୁଚୀ, ଯେଉଁଠାରେ ସତୀଙ୍କ ଉପର ଦନ୍ତ ଝଡ଼ିଥିଲା, ଶକ୍ତି- ନାରାୟଣୀ । ଶିବ- ସଂହାର ବା ସଂକୁର ନାମରେ ବିଦିତ । ତାମିଲ୍ନାଡୁର ତିନି ମହାସାଗରର ସଂଗମସ୍ଥଳ । କନ୍ୟା କୁମାରୀ ଠାରୁ ୧୨ କି.ମି ଦୂରରେ ସୁଚିନ୍ଦ୍ରମଠାରେ ସ୍ଥାରଣ ଶକ୍ତିପୀଠ ରହିଛି ।

୩୮- ରତ୍ନାବଳୀ- ଯେଉଁଠାରେ ସତୀଙ୍କ ଦକ୍ଷସ୍କନ୍ଧ ପଡ଼ିଥିଲା । ଶକ୍ତି 'କୁମାରୀ' ଏବଂ ଶିବଙ୍କ ନାମ 'ଶିବ' । ଏହି ପୀଠ ଚେନ୍ନାଇଠାରେ ଅବସ୍ଥିତ ।

୩୯- କନ୍ୟକାଶ୍ରମ । ସତୀଙ୍କର ପୃଷ୍ଠ ଭାଗ ପତିତ ହୋଇଥିଲା । ଶକ୍ତି 'ସର୍ବାଣୀ', ଶିବ 'ନିଶୀମ' । ତାମିଲ୍ନାଡୁର ତିନି ସାଗର ସଂଗମସ୍ଥଳ କନ୍ୟାକୁମାରୀର ଭଦ୍ରକାଳୀ ମନ୍ଦିର ହିଁ ଶକ୍ତିପୀଠ ।

୪୦- କାଞ୍ଚି- ଏଠାରେ ସତୀଙ୍କର କଙ୍କାଳ ପଡ଼ିଥିଲା । ଶକ୍ତି 'ଦେବଗର୍ଭା' । 'ରର' ନାମରେ ଶିବ ଏଠାରେ ବିଦିତ । ତାମିଲ୍ନାଡୁର ସପ୍ତପୁରୀୟାଁର କାଞ୍ଚି ନାମକ ସ୍ଥାନରେ ଥିବା କାଳୀମନ୍ଦିରକୁ ଶକ୍ତି ପୀଠ ବୋଲି ଗ୍ରହଣ କରାଯାଏ ।

୪୧- ପଂଜାବର ଜାଳନ୍ଧର- ଏଠାରେ ସତୀଙ୍କ ବାମସ୍ତନ ପଡ଼ିଥିଲା । ଏଠାରେ ଶକ୍ତି- 'ତ୍ରୀପୁର ମାଳିନୀ' ଓ ଶିବଙ୍କ ନାମ 'ଭୀଷଣ' । ପଂଜାବର ଜାଳନ୍ଧରରେ ଏହା ଅବସ୍ଥିତ ଅଟେ ।

୪୨- ବୈଦେଶ୍ୱର- ମାନକା ଗ୍ରାମରେ ସତୀଙ୍କର ବାମ ପାପୁଲୀ ପଡ଼ିଥିଲା । ଏଠାରେ ଶକ୍ତି-'ଦ୍ରାକ୍ଷାୟଣୀ' ଓ ଶିବ- 'ଅମର' । ଏହି ଶକ୍ତି ପୀଠ ତିବତ୍‌ର ମାନସରୋବର କୂଳରେ ରହିଛି ।

୪୩- ଲଂକା- ଏଠାରେ ସତୀଙ୍କ ନୂପୁର ଖସିଥିଲା । ଏଠାରେ ଶକ୍ତି 'ଇନ୍ଦ୍ରାକ୍ଷୀ' ଓ ଶିବ 'ରାକ୍ଷସେଶ୍ୱର' । ଏହା ଲଙ୍କା ବିଦିତ ଶକ୍ତିପୀଠ ।

୪୪- ଗଣ୍ଡକି- ଏଠାରେ ସତୀଙ୍କ ଦକ୍ଷିଣ ଗଣ୍ଡ ପଡ଼ିଥିଲା । ଏଠାରେ ଶକ୍ତି- 'ଗଣ୍ଡକୀ' ଓ ଶିବ 'ଚକ୍ରମଣି' । ଏହି ଶକ୍ତିପୀଠ ନେପାଳ ରାଜ୍ୟର ଗଣ୍ଡକୀ ନଦୀ ତୀର ଭଦ୍ରମ ସ୍ଥଳଠାରେ ଅବସ୍ଥିତ ।

୪୫- ନେପାଳ- ଏଠାରେ ସତୀଙ୍କ ଦୁଇଜାନୁ ଗଳିତ ହୋଇଥିଲା । ଶକ୍ତି 'ମହାମାୟା' । ଶିବ- କପାଳ ନାମରେ ଏଠାରେ ନାମିତ । ନେପାଳର ସୁପ୍ରସିଦ୍ଧ ପଶୁପତିନାଥଙ୍କ ମନ୍ଦିର ନିକଟରେ ବାଗମତୀ ନଦୀ ତୀର ଦେଶରେ ଗୁହ୍ୟେଶ୍ୱରୀ ଦେବୀଙ୍କ ମନ୍ଦିରକୁ ଶକ୍ତିପୀଠ ରୂପେ ମାନ୍ୟତା ଦିଆଯାଇଅଛି ।

୪୬- ହିଙ୍ଗୁଳା- ଏଠାରେ ସତୀଙ୍କ ବ୍ରହ୍ମରନ୍ଧ୍ର ପତିତ ହୋଇଥିଲା । ଶକ୍ତି 'ଭୈରବୀ' । ଶିବ 'ଭୀମ ଲୋଚନ' । ଏହି ଶକ୍ତି ପୀଠ ପାକିସ୍ଥାନର ବେଲୁଚି ସ୍ଥାନ ପ୍ରାନ୍ତ ଭାଗରେ ହିଂଗଲାଜରେ ଅବସ୍ଥିତ । ହିଂଗଲାଜ କରାଚି ଠାରୁ ୪୪ କି.ମି. ଦୂର ଉତ୍ତର ପଶ୍ଚିମ ଦିଗ ହିଂଗୋସ ନଦୀର ଉପକୂଳରେ ଏକ ଗୁମ୍ଫା ଗର୍ଭରେ ଗଲାପରେ ଶକ୍ତିରୂପା ଜ୍ୟୋତିଙ୍କ ଦର୍ଶନ ପ୍ରାପ୍ତ ହୋଇଥାଏ ।

୪୭- ସୁଗନ୍ଧା- ଏଠାରେ ସତୀଙ୍କ ନାଶିକା ପତିତ ହୋଇଥିଲା । ଶକ୍ତି 'ସୁନନ୍ଦା' । ଶିବ ତ୍ରୈମ୍ବକ । ଏହି ଶକ୍ତିପୀଠ ବାଙ୍ଗଲାଦେଶର ବାରିଶାଲଠାରୁ ୨୧କି.ମି. ଦୂର ଉତ୍ତରଦିଗ ଶିକାପୁର ଗ୍ରାମ ସୁନନ୍ଦା ନଦୀ ତଟରେ ସୁନନ୍ଦା ଦେବୀ (ଉଗ୍ରତାରା)ଙ୍କ ମନ୍ଦିର ରହିଛି ।

୪୮- କସତୟା ତଟ- ଏଠାରେ ସତୀଙ୍କ ବାମ ତଳ୍ପ ପଡିଥିଲା । ଏଠାରେ ଶକ୍ତି ଅର୍ପଣା' ଓ ଶିବ 'ବାମନ' । ବାଙ୍ଗଲାଦେଶର ବୋଗଡ଼ା ଷ୍ଟେସନ ଠାରୁ ୩୨ କି.ମି. ଦୂର ଦକ୍ଷିଣ ପଶ୍ଚିମ ଦିଗ ଭବାନୀପୁର ଗ୍ରାମରେ ଏହି ଶକ୍ତିପୀଠ ଦେଖାଯାଏ ।

୪୯- ଚଟ୍ଟଳ- ଏଠାରେ ସତୀଙ୍କ ଦକ୍ଷିଣ ବାହୁ ଖସିଥିଲା । ଏଠାରେ ଶକ୍ତି 'ଭବାନୀ', ଶିବ 'ଚନ୍ଦ୍ରଶେଖର' । ଏହି ଶକ୍ତି ପୀଠ

ବର୍ତ୍ତମାନ ବାଙ୍ଗଲାଦେଶର ଚଟ୍ଟ ଗ୍ରାମଠାରୁ ୩୭ କି.ମି. ଦୂର ସୀତାକୁଣ୍ଡ ଷ୍ଟେସନ ପାଖ ଚନ୍ଦ୍ରଶେଖର ପର୍ବତ ଉପରେ ଭବାନୀ ମନ୍ଦିର ଶକ୍ତିପୀଠ ରୂପେ ମାନ୍ୟତା ଲାଭ କରିଛି ।

୫୦– ଯଶୋର । ଏଠାରେ ସତୀଙ୍କର ବାମ ପାପୁଲୀ ଖସିଥିଲା । ଏଠାରେ ଶକ୍ତି 'ଯଶ୍ୱେଶ୍ୱରୀ', ଶିବ 'ଚନ୍ଦ୍ର' । ଏହି ଶକ୍ତିପୀଠ ମଧ୍ୟ ବାଙ୍ଗଲାଦେଶ ଖୁଲନା ଜିଲ୍ଲାର ଜୈସୋର ସହର ମଧ୍ୟରେ ସ୍ଥାପିତ ହୋଇଅଛି ।

୫୧– କାଳମାଧବ । ଏଠାରେ ସତୀଙ୍କର ବାମ ନିତମ୍ବ ପଡ଼ିଥିଲା । ଏଠାରେ ଶକ୍ତି କାଳୀ, ଶିବ 'ଅସିତାଙ୍ଗ' । ଏହା ଏକ ପ୍ରସିଦ୍ଧ ଶକ୍ତିପୀଠ ରୂପେ ମାନ୍ୟତା ଲାଭ କରିଅଛି । ଏହିଭଳି ବିଭିନ୍ନ ସ୍ଥାନରେ ୫୧ଟି ପ୍ରମୁଖ ଶକ୍ତିପୀଠ ରହିଛି ।

୫୮, ଗଜପତି ନଗର
ମୈଥିଳୀ ନିବାସ, ପୁରୀ–୨

# ଦଶଭୁଜା

**ଦିଲ୍ଲୀପ କୁମାର ବେହୁରା**

ମହିଷା ମର୍ଦ୍ଦିନୀ ମା' ଦଶଭୁଜା
ଆସନ୍ତି ବରଷେ ଥରେ
ଶାରଦୀୟ ପର୍ବ ସଭିଙ୍କ ମନରେ
ଆନନ୍ଦ ଲହରୀ ଭରେ ।

ମୃଣ୍ମୟ ମୂରତି ମେଢ ସାଜସଜ୍ଜା
ରୂପା ତାରକସି କାମ
ପାଦତଳେ ପଡି ଆଶିଷ ପାଆନ୍ତି
ଡାକି ମାଆଙ୍କର ନାମ ।

ସଂଧ୍ୟା ଆଳତିରେ ଭକତି ଅର୍ଘ୍ୟକୁ
ଯାଆନ୍ତି ସେଠାରେ ଢାଳି
ମନାସି ବସନ୍ତି ଦୁଃଖୀ ବଇରାଗୀ
ମାଆ ପାଦ ତଳେ ପଡି ।

କରୁଣାମୟୀ ମା' ହୋଇଥିବୁ ସାହା
ରହିଥିବୁ ଛାଇପରି



ପ୍ରାର୍ଥନା କରୁଛୁ ସଂଜ ସକାଳେ
ନାମକୁ ତୋହରି ଧରି ।

ଯୁଗେ ଯୁଗେ ମା' ରହିଛି ମହିମା
ପାପୀ ପାପ ନାଶ କରୁ
ଘଣ୍ଟ ତୁ ଘୋଡାଇ ସନ୍ଥ ପାଳିଥାଉ
ମାଆ ତୋର କରୁଣାରୁ ।

ସେ କରୁଣା ବାରି ଢାଳି ଦେ ମା' ଲୋ
ହସ ଫୁଟୁ ଧରା ଧାମେ
ଅସୁର ପ୍ରବୃତ୍ତି ଅପସରି ଯାଉ
ଯଶ ଥାଉ ତୋର ନାମେ ।

ଗ୍ରା–ପୋଖରିଆ, ପୋ– ମହୁଲିଆ,
ଥା–ରାଜନଗର, ଜିଲ୍ଲା–କେନ୍ଦ୍ରାପଡା



# ଆସିକାର ମା' ଫୁଲକେଶିନୀ ଠାକୁରାଣୀ

ସୁରେନ୍ଦ୍ର ନାଥ ପଣ୍ଡା

ପବିତ୍ର ଋଷିକୁଲ୍ୟା ଓ ବଡ଼ନଦୀର ସଂଗମ କୂଳରେ ପୁରାତନ ସହର ଆସିକା ଅବସ୍ଥିତ। ଆସିକା ସହର ତଥା ଏହି ଅଞ୍ଚଳ ସାହିତ୍ୟ, ସଂସ୍କୃତି, ରାଜନୀତି ତଥା ସମାଜସେବା ପାଇଁ ଯୁଗେ ଯୁଗେ ଏକ ସ୍ୱତନ୍ତ୍ର ସ୍ଥାନ ବଜାୟ ରଖିଛି। ପବିତ୍ର ଋଷିକୁଲ୍ୟା ଭାରତର ଜାତୀୟ ନଦୀ ଗଙ୍ଗାଠାରୁ ମଧ୍ୟ ପୁରାତନ ଏବଂ ପବିତ୍ର। ଋଷିକୁଲ୍ୟା ନଦୀରେ ବିଭିନ୍ନ ପବିତ୍ର ଦିନମାନଙ୍କରେ ବୁଡ଼ ପକାଇଲେ ସମସ୍ତ ପାପର କ୍ଷୟ ହୋଇ ଜୀବାତ୍ମା ପରମାତ୍ମାର ସାନ୍ନିଧ୍ୟ ପାଏ ବୋଲି ଲୋକକଥା ରହି ଆସିଛି। ଆସିକା ସହରଠାରେ ଅବସ୍ଥିତ ପବିତ୍ର ଋଷିକୁଲ୍ୟା ଓ ବଡ଼ନଦୀର ସଂଗମ ସ୍ଥଳରେ ଚୈତ୍ର କୃଷ୍ଣ ତ୍ରୟୋଦଶୀ ଶତଭିଷା ନକ୍ଷତ୍ରରେ ପବିତ୍ର ବାରୁଣୀ ବୁଡ ପକାଇଲେ ପୁନର୍ଜନ୍ମ ହୁଏ ନାହିଁ ବୋଲି ଲୋକକଥା ରହିଛି। ଏଣୁ ସେହି ପବିତ୍ର ତିଥିରେ ଲକ୍ଷାଧିକ ଲୋକ ଆସି ବୁଡ଼ ପକାନ୍ତି।

ତତ୍କାଳୀନ ଗଞ୍ଜାମ ଜିଲ୍ଲାରେ ଚବିଶ ଗୋଟି ଜମିଦାରୀ ରହିଥିଲା। ସେଥିମଧ୍ୟରୁ ଆସିକା ଏକ ବଡ଼ ଜମିଦାରୀ ଥିଲା। କିନ୍ତୁ ଇଂରେଜମାନେ ଗଞ୍ଜାମକୁ ନିଜ ଶାସନାଧୀନ କରିବା ପୂର୍ବରୁ ଏହି ଜମିଦାରୀ ଭାଗ ଭାଗ ହୋଇ ଘୁମୁସର, ବଡ଼ଗଡ଼ ଓ ଆଠଗଡ଼ ଜମିଦାରୀରେ ମିଶ୍ରଣ ଘଟିଲା। କେହି କେହି ଆସିକା ଜମିଦାରୀ ସତର ଶହ ଶତାବ୍ଦୀ ବେଳକୁ ମୋଗଲମାନଙ୍କ ରାଜୁତି ସମୟରେ ଏହାର ଶେଷ ଜମିଦାର ରାମା ରାଉତରାଓଙ୍କ ମୃତ୍ୟୁ ପରେ ଘୁମୁସର, ଧରାକୋଟ ଏବଂ ଆଠଗଡ଼ ଜମିଦାରୀରେ ସାମିଲ ହେଲା ବୋଲି ମତ ପ୍ରକାଶ କରନ୍ତି। ସେହିଭଳି ଆସିକା ମାଲକଦାରୀ ପୁନଃ ଭାଗ ହୋଇ ସତେଇଶି ଗୋଟି ଛୋଟ ଛୋଟ ଇଷ୍ଟେଟରେ ପରିଣତ ହେଲା । ସେ ଯାହା ହେଉନା କାହିଁକି ଆସିକାର ଐତିହ୍ୟ ଏବଂ ଗୌରବ କେଉଁ ଆବହମାନ କାଳରୁ କେବଳ ଗଞ୍ଜାମ ନୁହେଁ ସାରା ରାଜ୍ୟକୁ ଦିଗ୍‌ଦର୍ଶନ ଦେବାରେ ସହାୟକ ହୋଇଛି। ଏଣୁ ଏହି ମାଟି ପବିତ୍ର ଏବଂ ଧନ୍ୟ।

ଆସିକା ସହର ଏକ ମନ୍ଦିରମୟୀ ସହର। ଏହି ସହରରେ ଅନେକଗୁଡ଼ିଏ ଦେବାଦେବୀ ମନ୍ଦିର ରହିଛି। ଆସିକା ସହରର ଋଷିକୁଲ୍ୟା ତଟରେ ମଧ୍ୟ ଶ୍ରୀ ଶ୍ରୀ ପୁଡୁଗେଶ୍ୱର, ଶ୍ରୀ ଶ୍ରୀ ରାମେଶ୍ୱର, ଶ୍ରୀ ଶ୍ରୀ ତ୍ରିବିନ୍ଧେଶ୍ୱର, ଶ୍ରୀ ଶ୍ରୀ କାଶୀବିଶ୍ୱନାଥ, ଶ୍ରୀ ଶ୍ରୀ ନର୍ମଦେଶ୍ୱର, ଶ୍ରୀ ଶ୍ରୀ ସୁବର୍ଣ୍ଣେଶ୍ୱର ମହାଦେବ ମନ୍ଦିର, ସୁନାମ୍ଭ ଜଗନ୍ନାଥ ଏବଂ ଗୋପୀନାଥ ମନ୍ଦିର, ଖମ୍ବେଶ୍ୱରୀ ପାଟଣାସ୍ଥିତ ଜଗନ୍ନାଥ ମନ୍ଦିର, ଗୋପୀନାଥ ମନ୍ଦିର, ଗଣେଶ ମନ୍ଦିର ରହିଛି। ଏତଦ୍ ବ୍ୟତୀତ ଭଞ୍ଜବଂଶର ଇଷ୍ଟଦେବୀ ମା' ଖମ୍ବେଶ୍ୱରୀ ମଧ୍ୟ ଋଷିକୁଲ୍ୟା ତଟରେ ବିରାଜମାନ। ଅନ୍ୟମାନଙ୍କ ମଧ୍ୟରେ ଦଣ୍ଡକାଳୀ, ମହାଲକ୍ଷ୍ମୀ, ପଞ୍ଚମୁଖୀ ହନୁମାନ, ମୁନିସାହି ଜଗନ୍ନାଥ ମନ୍ଦିର ଏବଂ ସର୍ବୋପରି ମା' ଫୁଲକେଶିନୀଙ୍କ ମନ୍ଦିର ବିରାଜମାନ।

ଓଡ଼ିଶାର ସଂସ୍କୃତି ଯେଉଁଭଳି ଭାବେ ଜଗନ୍ନାଥ ସଂସ୍କୃତିକୁ ବୁଝାଏ, ଠିକ୍ ସେହିଭଳି ଗଞ୍ଜାମର ସଂସ୍କୃତି କହିଲେ ଋଷିକୁଲ୍ୟା ସଂସ୍କୃତିକୁ ବୁଝାଏ। ଏହି ପବିତ୍ର ଋଷିକୁଲ୍ୟା ତଟରେ ଆବିର୍ଭୁତା ମା' ଫଲକେଶିନୀ ସମ୍ଭବତଃ ଲାଲାଶାସନ ବ୍ରାହ୍ମଣ ଶାସନ ଇଷ୍ଟଦେବୀ ଅଟନ୍ତି। କିନ୍ତୁ ମୋଗଲ ସାମ୍ରାଜ୍ୟର ପତନ ଏବଂ ଇଂରେଜ ସରକାରଙ୍କର ଆଗମନ ସମୟରେ ଆସିକା ଇଷ୍ଟେଟର ବିଶୃଙ୍ଖଳା ଭାବ ସୃଷ୍ଟି ହେବାରୁ ଲାଲାଶାସନ ବ୍ରାହ୍ମଣ ଶାସନର ଜନସାଧାରଣ ବିଶେଷତଃ ରକ୍ଷଣଶୀଳ ସ୍ତ୍ରୀ ଲୋକମାନେ ବିଶୃଙ୍ଖଳାକୁ ଏଡ଼ାଇବା ନିମନ୍ତେ ଫୁଲକେଶିନୀ ଠାକୁରାଣୀଙ୍କ ନିକଟକୁ ନ ଆସି ମାଙ୍କ ଆଜ୍ଞାମାଳ ନେଇ ନିଜ ଗ୍ରାମର ଲାଲାଶାସନଠାରେ ମା' ବିମଳା ମନ୍ଦିର ପ୍ରତିଷ୍ଠା କଲେ। ସେହିଦିନଠାରୁ ଲାଲାଶାସନ ବ୍ରାହ୍ମଣ ଶାସନର ଗ୍ରାମଦେବତୀ ରୂପେ ବିମଳା ଠାକୁରାଣୀ ପୂଜା ପାଉଥିବା ବେଳେ ଫୁଲକେଶିନୀ ଠାକୁରାଣୀଙ୍କୁ ଓଡ଼ିଆ ସାହି, ସୁନାମ୍ଭ ସାହି ଏବଂ ବଜାର ସାହିର ଭକ୍ତଗଣଙ୍କ ସମେତ ସାଧାରଣ ଜନତା ପୂଜାର୍ଚ୍ଚନା କରିବାକୁ

ଲାଗିଲେ। ମା'ଙ୍କର କୌଣସି ସ୍ଥାୟୀ ସମ୍ପତ୍ତି ନାହିଁ କିନ୍ତୁ ସହରର ଭକ୍ତପ୍ରାଣ ଜନସାଧାରଣ ଏକ ପରିଚାଳନା କମିଟି ଗଠନ କରି ମା'ଙ୍କ ନିକଟରେ ଭୋଗରାଗ ଏବଂ ଯାନିଯାତ୍ରା କରିବା ପାଇଁ ପାଣ୍ଠି ଯୋଗାଡ଼ କଲେ । ବିଶେଷତଃ ଆଶ୍ୱିନ ମାସ ଦୁର୍ଗାପୂଜା ସମୟରେ ମା'ଙ୍କୁ ଷୋଡ଼ଶ ଉପଚାରରେ ପୂଜା କରାଯାଏ। ମା'ଙ୍କ ଆବିର୍ଭାବ ଓଡ଼ିଆ ସାହିର ସେହି ନାଲି କଞ୍ଚନ ଗଛମୂଳେ ହୋଇଥିଲା। ବହୁବର୍ଷ ଯାଏ ମା'ଙ୍କର ମନ୍ଦିର ନ ଥିବା ଯୋଗୁଁ ଭକ୍ତପ୍ରାଣ ଜନସାଧାରଣ ଅର୍ଥ ସଂଗ୍ରହ କରି ଏକ ଛୋଟିଆ ମନ୍ଦିରରେ ମା'ଙ୍କ ପୂଜାର୍ଚ୍ଚନା କରୁଥିଲେ। କିନ୍ତୁ ସରକାରୀ ଅନୁଦାନ ମିଳିବାରୁ ଏହାର କଳେବର ଏବଂ ପରିସର ବୃଦ୍ଧି ପାଇଛି।

ମା' ଫୁଲକେଶିନୀଙ୍କ ମହିମା ସର୍ବବ୍ୟାପୀ। ମା'ଙ୍କୁ ଯିଏ ଭକ୍ତିର ସହ ପୂଜାର୍ଚ୍ଚନା କରି ମନ୍ଦିର ପରିସରରେ ଥିବା ନାଲି କଞ୍ଚନ ବୃକ୍ଷମୂଳେ ସଂଧ୍ୟା ଆଳତୀ କରେ ମା' ତା'ର ଡାକ ନିଶ୍ଚୟ ଶୁଣନ୍ତି ବୋଲି ବିଶ୍ୱାସ ରହିଛି। ଏହି ବିଶ୍ୱାସକୁ ପରୀକ୍ଷା କରିବା ପାଇଁ ଭକ୍ତଗଣ ମଧ୍ୟ ଅନେକବାର ଚେଷ୍ଟା କରିଛନ୍ତି। ଆଜକୁ ପ୍ରାୟ ୨୫/୩୦ ବର୍ଷ ତଳର କଥା। ଆସିକା ସହରର ଦରଜୀ ହରି ବିଷୋୟୀ ବିଭିନ୍ନ କନାରେ ପତାକା ତିଆରି କରି ଏବଂ ବିକ୍ରୟ କରି ନିଜର ଗୁଜୁରାଣ ମେଣ୍ଟାଉଥାଏ। ତାଙ୍କ ନିକଟରେ ଦୀନବନ୍ଧୁ ବିଷୋୟୀ ନାମରେ ଏକ ଦରଜୀ କାରିଗର ରହିଥାଏ। ଏହି କାରିଗର ନିଜ ମାଲିକ ହରି ବିଷୋୟୀଙ୍କୁ ନକହି ତାଙ୍କର ଏକ ତିଆରି ପତାକା ମା' ଫୁଲକେଶିନୀଙ୍କ ପୀଠରେ ଉଡ଼ାଇଲା। କିନ୍ତୁ ଦରଜୀ ହରି ବିଷୋୟୀ ସେହି ପତାକାକୁ ବାହାର କରି ଆଣିବାକୁ ଚେଷ୍ଟା କରିବାରୁ ସେ ସେଠାରେ ରକ୍ତବାନ୍ତି କରି ଅଚେତ ହୋଇପଡ଼ିଲା। ଯାହା ଫଳରେ ତା'ର ପରିବାରବର୍ଗ ଏବଂ ଜନସାଧାରଣ ରୁଣ୍ଡ ହୋଇ ମା'ଙ୍କୁ ପ୍ରାର୍ଥନା କଲେ ଏବଂ ପୂଜାର୍ଚ୍ଚନା କରିବାରୁ ସେ ନିଜର ଚେତା ଫେରିପାଇଲେ ଏବଂ ମା'ଙ୍କର ମହିମା ଓ ପ୍ରତିଷ୍ଠା ସର୍ବଜନ ବିଖ୍ୟାତ ହେଲା।

ଆସିକାର ଓଡ଼ିଆ ସାହି ଏବଂ ଆଖପାଖ ଅଞ୍ଚଳର ଜନସାଧାରଣ ତାଙ୍କର ଯେକୌଣସି ମାଙ୍ଗଳିକ ଉତ୍ସବ ଆରମ୍ଭ କରିବା ସମୟରେ ମା'ଙ୍କଠାରେ ପୂଜାର୍ଚ୍ଚନା କରି ବିଧି ମୁତାବକ ଆଜ୍ଞାମାଳ ନେଇ ନିଜର ସମସ୍ତ ଶୁଭ ତଥା ମାଙ୍ଗଳିକ ଉତ୍ସବ ସମାପନ କରନ୍ତି।

ବର୍ତ୍ତମାନ ମା'ଙ୍କ ପୀଠର ଉନ୍ନତି ଲାଗିରହିଛି। ଭକ୍ତପ୍ରାଣ ଜନସାଧାରଣଙ୍କ ଆର୍ଥିକ ସହଯୋଗ ଏବଂ ସରକାରୀ ଅନୁଦାନ ଫଳରେ ମନ୍ଦିର ବେଢ଼ାର ଅନେକ ଉନ୍ନତି ହୋଇପାରିଛି । ମନ୍ଦିରରେ ପାନୀୟ ଜଳର ବ୍ୟବସ୍ଥା, ଛୋଟ କଲ୍ୟାଣ ମଣ୍ଡପର ସ୍ଥାପନ ଯୋଗୁଁ ବିଭିନ୍ନ ଉତ୍ସବାନୁଷ୍ଠାନ ଦିନରେ ସାଧାରଣ ଜନତା ବ୍ୟବହାର କରନ୍ତି। ତନ୍ତ୍ର ଏବଂ ଶକ୍ତିପୂଜା ନିମନ୍ତେ ଓଡ଼ିଶା ପ୍ରସିଦ୍ଧ। ଏଣୁ ସେହି ଶକ୍ତି ପୂଜା ବା ମାତୃଶକ୍ତିକୁ ଲୋକଲୋଚନରେ ପରିପ୍ରକାଶ କରିବା ପାଇଁ ଚଳିତ ବର୍ଷ ପ୍ରଥମ ଥର ପାଇଁ ମା' ଫୁଲକେଶିନୀଙ୍କ ଠାକୁରାଣୀ ଯାତ୍ରା ଏପ୍ରିଲ ୨୯ ତାରିଖଠାରୁ ମଇ ୩ ତାରିଖ ଯାଏ ଅନୁଷ୍ଠିତ ହୋଇଛି। ଏଥିରେ ଆସିକା ସହରର ଲାଲଗୋର୍ଜୀ ଏବଂ ଓଡ଼ିଆ ସାହି ମଧ୍ୟରେ ଅସ୍ଥାୟୀ ମନ୍ଦିର ପ୍ରତିଷ୍ଠା ହୋଇ ମା' ଫୁଲକେଶିନୀଙ୍କ ସମେତ ସହରର ମା' ଖମ୍ବେଶ୍ୱରୀ, ମା' କାଳିମୁଖୀ ଓ ସୁନାମ୍ବ ପ୍ରତିଷ୍ଠା ହୋଇ ମା' ଫୁଲକେଶିନୀଙ୍କ ସମେତ ସହରର ମା' ଖମ୍ବେଶ୍ୱରୀ, ମା' କାଳିମୁଖୀ ଓ ସୁନାମ୍ବ ଗ୍ରାମଦେବତୀ ଠାକୁରାଣୀ, ବସଷ୍ଟାଣ୍ଡସ୍ଥିତ ମା' ବୁଢ଼ୀ ଠାକୁରାଣୀ, ମା' ମାଣିକେଶ୍ୱରୀ ଏବଂ ମା' ବିମଳା ଠାକୁରାଣୀଙ୍କ ବିଜେ ପ୍ରତିମାକୁ ପାରମ୍ପରିକ ରୀତିନୀତି ଅନୁଯାୟୀ ସ୍ଥାପନ କରାଯାଇଛି। ବ୍ରହ୍ମପୁର ଠାକୁରାଣୀ ଯାତ୍ରା ଢାଞ୍ଚାରେ ଆସିକା ଫୁଲକେଶିନୀଙ୍କ ଯାତ୍ରା ସମାପନ ହେଉଛି। ଏହି ଯାତ୍ରା ସୁଚାରୁ ରୂପେ ସମାପନ ହେବା ନିମନ୍ତେ ଆସିକାର ଓକିଲ ସଂଘ, ସାମ୍ବାଦିକ ସଂଘ, ସରକାରୀ କର୍ମଚାରୀ ସଂଘ, ଘରୋଇ ବସ ମାଲିକ ସଂଘ, ଟ୍ରକ୍ ମାଲିକ ସଂଘ, ଜନସାଧାରଣ, ବୁଦ୍ଧିଜୀବୀ ଏବଂ ସ୍ଥାନୀୟ ବାସିନ୍ଦାଙ୍କ ତ୍ୟାଗ ସ୍ୱୀକାର୍ଯ୍ୟ। ସେହିଭଳି ପୋଲିସ ବାହିନୀ, ବିଦ୍ୟୁତ୍ ବିଭାଗ, ଜଳଯୋଗାଣ ବିଭାଗ ଏବଂ ଅନ୍ୟ ସମସ୍ତଙ୍କ ଦାୟିତ୍ୱ ମଧ୍ୟ ପ୍ରଶଂସନୀୟ। ବିଶେଷତଃ ସ୍ଥାନୀୟ ଅଞ୍ଚଳର ଯୁବଗୋଷ୍ଠୀ ଏହି ଯାତ୍ରାକୁ ସଫଳ କରିବା ନିମନ୍ତେ ସଦା ଚେଷ୍ଟିତ। ସେ ଯାହା ହେଉ ମା'ଫୁଲକେଶିନୀଙ୍କ ମହିମା ଏହି ସମସ୍ତଙ୍କ ପାଇଁ ଆଶୀର୍ବାଦ ସ୍ୱରୂପ ଝରିପଡୁ। ଏତିକି ହିଁ ପ୍ରାର୍ଥନା! କାରଣ ଯାତ୍ରା ସମୟରେ ସବୁ ଠାକୁରାଣୀଙ୍କ ମହାମେଳଣ ନିଶ୍ଚିତ ରୂପେ ଏକ ସାଂସ୍କୃତିକ ଐକ୍ୟର ପ୍ରମାଣ ଦିଏ ।

ଆଇନଜୀବୀ, ଆସିକା



# ଦେବୀ ଦୁର୍ଗାଙ୍କ ଏକତାର ଆହ୍ୱାନ

**ଅଧ୍ୟାପକ ବିକ୍ରମ କେଶରୀ ବର୍ମା**

ରାକ୍ଷସ କୁଳ ମଉଡମଣି ପ୍ରବଳ ପ୍ରତାପୀ ଅତ୍ୟାଚାରୀ ମହିଷାସୁର ଓ ତା'ର ଦୁଷ୍ଟ ବନ୍ଧୁ ଶୁମ୍ଭ ଓ ନିଶୁମ୍ଭ ତିନି ପୁରରେ ଆତଙ୍କ ସୃଷ୍ଟି କରିଥିଲେ ।

ମହିଷା ତାହାର ଦୁର୍ଦ୍ଧର୍ଷ ରାକ୍ଷସ ବାହିନୀ ଦ୍ୱାରା ବିଶ୍ୱ ବିଜୟ କରିବା ପରେ ଶାନ୍ତି ପାଇପାରି ନଥିଲା ।

ସ୍ୱର୍ଗଭୂମି ଜୟକରି ଦେବତାମାନଙ୍କୁ ପଦାନତ କରିବା ପାଇଁ ମହିଷାର ଅଗ୍ନି ଶପଥ । ସେ ସ୍ୱର୍ଗ ଜୟ କରି ଦେବରାଜ ଇନ୍ଦ୍ରଙ୍କ ସିଂହାସନ ଆରୋହଣ କରିବ ଓ ସ୍ୱର୍ଗର ଅମୂଲ୍ୟ ସମ୍ପଦ, ଐରାବତ ହସ୍ତୀ, ଉଚ୍ଚୈଶ୍ରବା ଅଶ୍ୱ, ଉର୍ବଶୀ ଅପ୍ସରା, ପାରିଜାତ ପୁଷ୍ପ ହାସଲ କରି ଉପଭୋଗ କରିବା ପାଇଁ ସେ ବଦ୍ଧପରିକର ହେଲା ।

ଦୁଇ ବନ୍ଧୁ ଶୁମ୍ଭ ନିଶୁମ୍ଭ, ଦୁଇ ସେନାପତି ଚଣ୍ଡ ମୁଣ୍ଡ ଓ ବିଶାଳ ରାକ୍ଷସ ବାହିନୀ ସହ ମହିଷା ସ୍ୱର୍ଗ ଅଭିଯାନରେ ବାହାରି ପଡିଲା ।

ସ୍ୱର୍ଗ ଭୂମିରେ ଆରମ୍ଭ ହେଲା ଭୟଙ୍କର ଯୁଦ୍ଧ । ଏକ ପକ୍ଷରେ ଦେବରାଜ ଇନ୍ଦ୍ରଦେବଙ୍କ ଦେବତା ବାହିନୀ ଓ ଅନ୍ୟ ପକ୍ଷରେ ମହିଷାସୁରର ବିଶାଳ ଦୈତ୍ୟ ବାହିନୀ । ଭୟଙ୍କର ଯୁଦ୍ଧ । ତିନିପୁର କମ୍ପମାନ ହେଲା । ଦେବତାମାନେ ଅସୁରମାନଙ୍କର ସମ୍ମୁଖୀନ ହୋଇ ନପାରି ଆସ୍ତେ ଆସ୍ତେ ପଛଘୁଞ୍ଚା ଦେବାକୁ ଲାଗିଲେ । ଶୁମ୍ଭ ନିଶୁମ୍ଭ ଓ ଚଣ୍ଡ ମୁଣ୍ଡଙ୍କ ଶରାଘାତରେ ଦେବ ସୈନ୍ୟମାନେ ଅସ୍ଥିର ହୋଇପଡିଲେ । ଦେବରାଜ ଇନ୍ଦ୍ର ଓ ମହିଷାସୁର ମଧ୍ୟରେ ଭୟଙ୍କର ଯୁଦ୍ଧ ଚାଲିଥାଏ । ଶେଷରେ ଦେବରାଜ ଇନ୍ଦ୍ର ତାଙ୍କର ଶେଷ ଅସ୍ତ୍ର ବଜ୍ରବାଣ ନିକ୍ଷେପ କଲେ । କିନ୍ତୁ ଫଳ କିଛି ହେଲାନାହିଁ । ବଜ୍ରବାଣ ବିଫଳ ହେବାରୁ ଦେବରାଜ ପ୍ରାଣ ଭୟରେ ପଳାୟନ କଲେ । ମହିଷାସୁର ସ୍ୱର୍ଗର ସିଂହାସନ ଆରୋହଣ କଲେ । ଅସୁର ସୈନ୍ୟମାନେ ଦେବଭୂମି ଲୁଣ୍ଠନ କରିବାକୁ ଲାଗିଲେ ଓ ସ୍ୱର୍ଗ ସମ୍ପତ୍ତି ଅଧିକାର କଲେ । ଦେବତାମାନେ ଦେବରାଜ ଇନ୍ଦ୍ରଙ୍କ ସହ ସ୍ୱର୍ଗରୁ ପଳାୟନ କରି ଗୁପ୍ତ ଜାଗାରେ ଲୁଚିରହିଲେ । ଦିନକୁ ଦିନ ମହିଷାସୁର ତା' ଅସୁର ସୈନ୍ୟମାନଙ୍କ ଅତ୍ୟାଚାର ବଢିବାରେ ଲାଗିଲା । ସେମାନେ ଦେବନାରୀମାନଙ୍କୁ ଅପମାନିତ କରିବାକୁ ଭୁଲି ନଥିଲେ ।

ଦେବତାମାନେ ଚିନ୍ତିତ ହୋଇ ପଡିଲେ ଓ ବୈକୁଣ୍ଠ ଯାଇ ପ୍ରଭୁ ନାରାୟଣଙ୍କୁ ଭେଟି ସେମାନଙ୍କ ଦୁର୍ଦଶା ଜଣାଇବା ପାଇଁ ନିଷ୍ପତ୍ତି ନେଲେ ।

ଦେବତାମାନଙ୍କ ସହ ଦେବରାଜ ଇନ୍ଦ୍ର, କୈଳାସପତି ମହାଦେବ, ବେଦପତି ବ୍ରହ୍ମା, କୁବେର, ପବନ, ସୂର୍ଯ୍ୟ ଆଦି ବୈକୁଣ୍ଠପୁରରେ ପହଞ୍ଚି ପ୍ରଭୁ ନାରାୟଣଙ୍କୁ ପ୍ରାର୍ଥନା କଲେ ଓ ସେମାନଙ୍କ ଦୁଃଖ ଦୁର୍ଦଶା ଜଣାଇଲେ ।

ପରମେଶ୍ୱର ନାରାୟଣ ଦେବତାମାନଙ୍କଠାରୁ ସବୁ ଶୁଣି ସାରିବା ପରେ ବେଦପତି ବ୍ରହ୍ମାଙ୍କୁ ପ୍ରଶ୍ନକଲେ- ଆପଣ ଯେଉଁ ପ୍ରକାର ବର ମହିଷାସୁରକୁ ପ୍ରଦାନ କରିଛନ୍ତି, ତାହା ଅତ୍ୟନ୍ତ ଭୟାବହ ବର । କୌଣସି ପୁରୁଷ ମହିଷାକୁ ମାରି ପାରିବେ ନାହିଁ । ମୁଁ ମଧ୍ୟ ମାରିପାରିବି ନାହିଁ । ଆପଣଙ୍କ ବର ଅନୁସାରେ ଉଲଗ୍ନ ନାରୀ ହସ୍ତରେ ମହିଷା ମରିବ ।

ଏ ପ୍ରକାର ଅସମ୍ଭବ ବର ଆପଣ କାହିଁକି ଦେଲେ ବେଦବର । ବେଦବର ବ୍ରହ୍ମା ଲଜ୍ଜିତ ହୋଇ ମୁଖ ଅବନତ କଲେ ।

ନାରାୟଣ ସ୍ମିତ ହସି ନିଜ ଶରୀରରୁ ଏକ ମଳି ଶୂନ୍ୟକୁ ଫିଙ୍ଗିଦେଲେ । ହଠାତ୍ ଏକ ତେଜସ୍ୱିନୀ ଷୋଳଭୁଜା ନାରୀଙ୍କର ଆବିର୍ଭାବ ହେଲା ।

◆◆◆

ଏପରି ତେଜସ୍ୱିନୀ ମହିଳା ଦେବତାମାନେ କେବେ ଦେଖିନଥିଲେ । ସିଂହବାହିନୀ ଷୋଳଭୁଜା ଶକ୍ତିଦେବୀଙ୍କ ନାମ ଦିଆଗଲା ଦୁର୍ଗା । ଦେବୀ ଦୁର୍ଗା ନାରାୟଣଙ୍କୁ ପ୍ରଣିପାତ କରି କହିଲେ– ମୁଁ କ'ଣ କରିବି ? ମୋତେ ଆଜ୍ଞା ପ୍ରଦାନ କରନ୍ତୁ ପ୍ରଭୁ । ବୈକୁଣ୍ଠ ପତି ନାରାୟଣ ଦେବୀ ଦୁର୍ଗାଙ୍କୁ ନିର୍ଦ୍ଦେଶ ଦେଲେ ମହିଷାସୁର ଶୁମ୍ଭ ନିଶୁମ୍ଭ ଓ ଚଣ୍ଡ ମୁଣ୍ଡଙ୍କ ସହ ସମସ୍ତ ଅସୁର ସୈନ୍ୟ ନିପାତକରି ପବିତ୍ର ସ୍ୱର୍ଗଭୂମିକୁ ରକ୍ଷା କରିବା ପାଇଁ ।

ଦୁର୍ଗାଦେବୀ ଗମ୍ଭୀର ହୋଇ କହିଲେ– ପ୍ରଭୁ ଏ ମହାସଂଗ୍ରାମ ପୂର୍ବରୁ ଦେବତାମାନଙ୍କୁ ଏକତାବଦ୍ଧ କରିବାକୁ ପଡିବ । ସେମାନେ ସମସ୍ତେ ସେମାନଙ୍କର ବିଶିଷ୍ଟ ଅସ୍ତ୍ରଗୁଡିକ ମୋତେ ପ୍ରଦାନ କରନ୍ତୁ ।

ବିଷ୍ଣୁ ତୁମର ବୈଷ୍ଣବ ଅସ୍ତ୍ର, ବ୍ରହ୍ମଦେବ ତୁମର ବ୍ରହ୍ମଅସ୍ତ୍ର, ଶିବ ତୁମର ପାଶୁପତ, ଇନ୍ଦ୍ର ତୁମର ବଜ୍ରବାଣ ଓ ଅନ୍ୟାନ୍ୟ ଦେବତାମାନେ ସେମାନଙ୍କର ଅସ୍ତ୍ର ମୋତେ ପ୍ରଦାନ କରନ୍ତୁ । ସମସ୍ତ ଦେବତାମାନଙ୍କ ଶକ୍ତି ନେଇ ମୁଁ ମହିଷାସୁରକୁ ନିଧନ କରିବି ।

ଦେବତାମାନଙ୍କ ମଧ୍ୟରେ ଥିବା କନ୍ଦଳର ସୁଯୋଗ ନେଇ ଅସୁରମାନେ ସ୍ୱର୍ଗପୁର ଆକ୍ରମଣ କରିବାକୁ ସାହସ କଲେ ଓ ଶେଷରେ ସ୍ୱର୍ଗପୁର ଜୟ କଲେ । ଆପଣମାନେ ପ୍ରତ୍ୟେକ ଶକ୍ତିଶାଳୀ, କିନ୍ତୁ ପରସ୍ପର ମଧ୍ୟରେ କନ୍ଦଳ ଥିବାରୁ ଶତ୍ରୁର ସମ୍ମୁଖୀନ ହୋଇପାରିଲେ ନାହିଁ । ଦେବତାମାନେ ନିଜ ନିଜ ଭୁଲ ବୁଝିପାରିଲେ ଓ ପ୍ରତ୍ୟେକ ଦେବତା ନିଜ ନିଜ ଅସ୍ତ୍ର ଦେବୀ ଦୁର୍ଗାଙ୍କୁ ପ୍ରଦାନ କଲେ । ସିଂହବାହିନୀ ଦେବୀ ଦୁର୍ଗା ଷୋଳଭୁଜରେ ଦେବଅସ୍ତ୍ର ଧାରଣ କରି ମହିଷାସୁର ସହିତ ଯୁଦ୍ଧ କଲେ । ଅସୁରମାନେ ମାୟାବୀ ହୋଇଥିବାରୁ ଦେବୀ ମଧ୍ୟ ମାୟା ରୂପ ଧାରଣ କଲେ । ସୁନ୍ଦରୀ ସ୍ତ୍ରୀ ରୂପ ଧାରଣ କରି ଶୁମ୍ଭ ନିଶୁମ୍ଭ ସହ ନୃତ୍ୟ କରିବା ବେଳେ ନିଜ ହାତ ନିଜ ମୁଣ୍ଡ ଉପରେ ରଖି ସେମାନଙ୍କୁ ସେମାନଙ୍କର କର ମୁଣ୍ଡ ଉପରେ ରଖିବାକୁ ଇସାରା ଦେଲେ । ଶୁମ୍ଭ ନିଶୁମ୍ଭ ସେମାନଙ୍କ ପୂର୍ବ ବର କଥା ଭୁଲିଯାଇ ନିଜ ନିଜ ଶିରରେ ନିଜ ନିଜ କର ରଖିବାରୁ ତତ୍‌କ୍ଷଣାତ୍ ଭସ୍ମ ହୋଇଗଲେ ।

ଶେଷରେ ମହିଷା ସହିତ ଦେବୀଙ୍କର ଭୟଙ୍କର ସଂଗ୍ରାମ ହେଲା । ଦେବତାମାନେ ସ୍ୱର୍ଗରେ ରହି ଦେବୀଙ୍କୁ ଉତ୍ସାହିତ କରୁଥାନ୍ତି । ଯେତେ ଦିବ୍ୟ ଅସ୍ତ୍ର ଦେବୀ ମହିଷାସୁର ଉପରକୁ ନିକ୍ଷେପ କଲେ ମଧ୍ୟ ମହିଷାସୁରର ମୃତ୍ୟୁ ହେଲା ନାହିଁ । ଦେବୀ ବ୍ରହ୍ମଅସ୍ତ୍ର ମାରିବା ପାଇଁ ସ୍ଥିର କଲେ । ଏହି ସମୟରେ ଆକାଶରୁ ଶୂନ୍ୟବାଣୀ ଆସିଲା– ଆପଣ ଉଲଗ୍ନ ନହେଲେ ଦୁଷ୍ଟ ଅସୁର ମରିବ ନାହିଁ ।

ଶକ୍ତିମୟୀ ଜଗତଜନନୀ ଦୁର୍ଗା ଅନ୍ୟ ଉପାୟ ନପାଇ ନିଜ ବସ୍ତ୍ର ଫିଙ୍ଗି ଦେଇ ଉଲଗ୍ନ ହୋଇଗଲେ ଓ ବ୍ରହ୍ମଅସ୍ତ୍ର ନିକ୍ଷେପ କରି ମହିଷାସୁରକୁ ନିଧନ କଲେ ।

ତିନିପୁରର ହିତ ପାଇଁ ଓ ଦେବତାମାନଙ୍କ ମଙ୍ଗଳ ପାଇଁ ଦେବୀ ନିଜର ସମ୍ମାନକୁ ଜଳାଞ୍ଜଳି ଦେଇ ଦୈତ୍ୟପତି ମହିଷାକୁ ନିପାତ କଲେ ।

ଆମ ଦେଶରେ ଏକତା ଅଭାବରୁ ବାରମ୍ବାର ପରାଧୀନ ହେବାକୁ ପଡିଛି । ରାଜା ଅମ୍ଭି ରାଜା ପୁରୁଙ୍କୁ ସାହାଯ୍ୟ କରିଥିଲେ, ସିକନ୍ଦର ବିଶ୍ୱବିଜୟୀ ହେବାର ଗୌରବ ଲାଭ କରିପାରି ନଥାନ୍ତେ ।

ସେହିପରି ଜୟଚନ୍ଦ୍ର ରାଜା ପୃଥ୍ୱୀରାଜଙ୍କୁ ସାହାଯ୍ୟ କରିଥିଲେ ମହମ୍ମଦ ଘୋରୀ ଦିଲ୍ଲୀ ସିଂହାସନ ଅଧିକାର କରିପାରି ନଥାନ୍ତେ କିମ୍ବା ଭାରତରେ ମୁସଲମାନ ସାମ୍ରାଜ୍ୟ ପ୍ରତିଷ୍ଠା ହୋଇପାରି ନଥାନ୍ତା ।

ବିଶ୍ୱାସଘାତକ ମୀରଜାଫର ନବାବ ସିରାଜଉଦ୍ଦୌଲାଙ୍କ ପ୍ରତି ବିଶ୍ୱାସଘାତକତା କରି ଇଂରେଜ ପକ୍ଷ ନେଇ ନଥିଲେ ଭାରତରେ ବ୍ରିଟିଶ ସାମ୍ରାଜ୍ୟ ପ୍ରତିଷ୍ଠା ହୋଇପାରି ନଥାନ୍ତା ।

ଏକତା ହିଁ ବଳ । ଏହା ଦେବୀ ଦୁର୍ଗା ଆମ୍ଭମାନଙ୍କୁ ଶିକ୍ଷା ଦେଇଅଛନ୍ତି ।

ପୂର୍ବତନ ବିଧାୟକ, ମାହାଙ୍ଗା
କ୍ୱାର୍ଟର ନଂ– ଭି.ଏ.୩୬/୨
ୟୁନିଟ୍–୨, ଭୁବନେଶ୍ୱର



# ହୁମାର ବକ୍ରମନ୍ଦିର

ନିକୁଞ୍ଜ ବିହାରୀ ସାହୁ

ସମ୍ବଲପୁର ସହରଠାରୁ ୨୩ କି.ମି. ଦକ୍ଷିଣକୁ ମହାନଦୀ କୂଳରେ ଅବସ୍ଥିତ ଧାନବିଲ ଘେରା ଏକ ଗ୍ରାମ- ହୁମା । ଏଠାରୁ ଚାହିଁଲେ ମହାନଦୀ ବନ୍ଧରୁ ଶିଳାଶଯ୍ୟାରେ ତରତର ହୋଇ ଧାଇଁଯାଉଥିବା ଏକ କ୍ଷୀଣକଟି ଚପଳି ଗ୍ରାମ୍ୟଲଳନା ସଦୃଶ ଦେଖାଯାଏ । ଶିଳାବନ୍ଧର ଶଯ୍ୟାହେତୁ ନଦୀଟି ସରୁ ଓ ବେଗଗାମୀ । ହୁମା ଆମ ରାଜ୍ୟର ଏକ ପ୍ରମୁଖ ଶୈବପୀଠ ଓ ବାବା ବିମଳେଶ୍ୱରଙ୍କ ଆସ୍ଥାନ । ଠାକୁରଙ୍କୁ ଦର୍ଶନ କରି ନିଜ ମନସ୍କାମନା ପୂରଣ ନିମନ୍ତେ ପ୍ରତିଦିନ ଶହ ଶହ ଭକ୍ତଙ୍କ ଭିଡ଼ ଛୁଟେ ଏଠାକୁ । ମାତ୍ର ସମସ୍ତଙ୍କ ଆକର୍ଷଣର କେନ୍ଦ୍ରବିନ୍ଦୁ ହେଲା ଏଠାକାର ବକ୍ରମନ୍ଦିର । ଦର୍ଶକମାନେ ମନ୍ଦିରଟି ସିଧା ଛିଡ଼ା ନହୋଇ ଢ଼ଳିକରି କିପରି ସ୍ଥାୟୀଭାବେ ରହିଛି ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି ।



### କିମ୍ବଦନ୍ତୀ

ବିମଳେଶ୍ୱର ସମ୍ବଲପୁରର ଅଷ୍ଟଶମ୍ଭୁଙ୍କ ମଧ୍ୟରୁ ପ୍ରଥମ । ଏହି ଅଷ୍ଟଶମ୍ଭୁ ହେଲେ: ୧.ହୁମା- ବିମଳେଶ୍ୱର, ୨. ଅମ୍ବାବନା - କେଦାରନାଥ, ୩. ଦେଗାଁ-ବିଶ୍ୱନାଥ, ୪.ଗାଇସମା-ବାଲୁକେଶ୍ୱର, ୫. ମାନେଶ୍ୱର- ମାନ୍ଧାତା, ୬. ସର୍ଣ୍ଣା- ସ୍ୱପ୍ନେଶ୍ୱର, ୭. ସରଣ୍ଡା- ବିଶ୍ୱେଶ୍ୱର, ୮.ନିଲକି- ନୀଳକଣ୍ଠେଶ୍ୱର । ହୁମାର ବିମଳେଶ୍ୱର ଶିବଲିଙ୍ଗ ପାତାଳୀ ଓ ସ୍ୱୟଂ ଭୂଗର୍ଭରୁ ଆତ୍ମପ୍ରକାଶ କରିଛନ୍ତି । କିମ୍ବଦନ୍ତୀ ଅନୁସାରେ,ଏହି ଶିବଲିଙ୍ଗ ଉପରେ ଗୋଟିଏ ଗାଈର କ୍ଷୀର ଆପେ ସ୍ରବିତ ହେଉଥିଲା । ପ୍ରତିଦିନ ଗାଈର ପହ୍ନା ଶୁଷ୍କ ଥିବାର ଦେଖି ଗାଈର ମାଲିକ ଗାଈଜଗୁଆଳିକୁ ସନ୍ଦେହ କରି ନିଜେ ଗାଈକୁ ଗୋପନରେ ଜଗିବାକୁ ଆସିଲା । ସେ ସ୍ୱତଃ ଗାଈର କ୍ଷୀର ଶିବଲିଙ୍ଗ ଉପରେ ଝରୁ ଥିବାର ଦେଖି ଆଶ୍ଚର୍ଯ୍ୟ ହୋଇ ଏକଥା ପ୍ରଘଟ କରନ୍ତେ ବାବା ବିମଳେଶ୍ୱରଙ୍କ ମହିମା ପ୍ରକଟିତ ହୋଇ ପୂଜାର୍ଚ୍ଚନା ଆରମ୍ଭ ହେଲା ।

### ନିର୍ମାଣକାଳ

ହୁମା ମନ୍ଦିରର ନିର୍ମାତା ଓ ନିର୍ମାଣକାଳ ସମ୍ପର୍କରେ ଅନେକ ବିବାଦ ଥିଲେ ସୁଦ୍ଧା ଲୋକପ୍ରିୟ ମତବାଦ ଅନୁସାରେ ଏହାକୁ ସମ୍ବଲପୁରର ପଞ୍ଚମ ରାଜା ବଳିୟାର ସିଂହଦେବ ୧୬୬୦ ରୁ ୧୬୯୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ନିର୍ମାଣ କରିଥିଲେ । ସୁତରାଂ ମନ୍ଦିରର ସମୟକାଳ ଆଜିଠାରୁ ୩୫୦ବର୍ଷ ତଳର ହେବା କଥା । ମାତ୍ର ଜନୈକ ବ୍ରିଟିଶ ସେଟଲମେଣ୍ଟ ଅଫିସର ଏ.ଏମ୍. ରସେଲଙ୍କ ଏକ ବନ୍ଦୋବସ୍ତ ଆଦେଶନାମା ଅନୁସାରେ ସମ୍ବଲପୁରର ପ୍ରଥମ ରାଜା ବଳରାମ ଦେବ ହୁମା ଗ୍ରାମଠାରେ ମନ୍ଦିର ନିର୍ମାଣ ନିମନ୍ତେ ୬ଖଣ୍ଡ ମୌଜା ପ୍ରଦାନ କରିଥିଲେ । ଏକ କୋର୍ଟ ଆଦେଶନାମାରେ

ଅନ୍ୟଜଣେ ବ୍ରିଟିଶ ଜଜ୍ ମଧ୍ୟ ଏହି ଉକ୍ତିକୁ ସମର୍ଥନ କରିଛନ୍ତି । ସୁତରାଂ କେତେକ ଐତିହାସିକଙ୍କ ମତରେ ହୁମା ମନ୍ଦିରକୁ ସମ୍ବଲପୁରର ପଞ୍ଚମ ରାଜାଙ୍କ ପରିବର୍ତ୍ତେ ପ୍ରଥମ ରାଜା ବଳରାମ ଦେବ କିମ୍ବା କୌଣସି ନିକଟ ଉତ୍ତରାଧିକାରୀ ନିର୍ମାଣ କରିଥିବା ଯୁକ୍ତିଯୁକ୍ତ । ଏପରି ହେଲେ ମନ୍ଦିରର ନିର୍ମାଣକାଳ ଆହୁରି ପୂରାତନ ହୋଇ ୧୫୪୫ରୁ ୧୫୬୦ ଖ୍ରିଷ୍ଟାବ୍ଦ ମଧ୍ୟରେ ଧରାଯିବ ।

**ମନ୍ଦିର ବକ୍ରତା**

ମନ୍ଦିରଟି ପ୍ରାୟ ୨୦୦ ଫୁଟ ଲମ୍ବ ଓ ୧୨୦ଫୁଟ ପ୍ରସ୍ଥ ବିଶିଷ୍ଟ ଏକ ଆୟତାକୃତି ଆଧାର କ୍ଷେତ୍ର ଉପରେ ଅବସ୍ଥାପିତ । ମୁଖ୍ୟ ମନ୍ଦିର ବିମଳେଶ୍ୱର ଉତ୍ତର ପୂର୍ବକୁ କିଛି କୋଣରେ ସ୍ୱଷ୍ଟ ଢଳିକରି ଅଛି । ଏହି ବକ୍ରତା ହେତୁ ହୁମାର ବକ୍ର ମନ୍ଦିରଟିକୁ ଇଟାଲୀର ରୋମ୍‌ଠାରେ ଥିବା ପିସାର ଆନତ ଗମ୍ବୁଜ ସଙ୍ଗେ ତୁଳନା କରାଯାଏ ।

ଏହି ବକ୍ରତାର କାରଣ ରହସ୍ୟବୃତ୍ତ ଏବଂ ବିବାଦର ବଳୟରେ । କେତେକଙ୍କ ମତରେ ବର୍ଷାଦିନେ ମହାନଦୀର ବନ୍ୟା ସମୟରେ ପ୍ରବାହିତ ପ୍ରବଳ ସ୍ରୋତର ଆଘାତରୁ ରକ୍ଷା କରିବା ପାଇଁ ମନ୍ଦିରକୁ ନିର୍ମାଣକାଳରୁ ହିଁ ଜାଣିଶୁଣି ବକ୍ରକରି ଗଢ଼ାଯାଇଛି । ଆଉ କେତେକଙ୍କ ମତରେ ମନ୍ଦିରଟି ନିର୍ମାଣ ସମୟରେ ସିଧା ଥିଲା, ସମୟକ୍ରମେ ମହାନଦୀର ପ୍ରବଳ ସ୍ରୋତରେ ମନ୍ଦିରର ନଦୀ ପାର୍ଶ୍ୱସ୍ଥ ଭିତ୍ତିଭୂମି ଦବିଯାଇ ମନ୍ଦିରର ବକ୍ରତା ସୃଷ୍ଟି ହେଲା । ଉଲ୍ଲେଖଯୋଗ୍ୟ ଯେ, ମନ୍ଦିରଟି ମହାନଦୀ ଆଡ଼କୁ ହିଁ ଢ଼ଳି ରହିଛି । ତେବେ ମନରେ ପ୍ରଶ୍ନ ଉଠେ: ବକ୍ରତାର କାରଣ ଯାହା ହେଉନା କାହିଁକି, ବକ୍ରତା ସତ୍ତ୍ୱେ ମନ୍ଦିରଟି ସ୍ଥାୟୀ ଭାବେ ଛିଡ଼ା ହୋଇଛି କିପରି ?

ଏହା ବିଜ୍ଞାନରେ ମାଧ୍ୟାକର୍ଷଣ କେନ୍ଦ୍ର (ସେଣ୍ଟର ଅଫ ଗ୍ରାଭିଟ୍) ତତ୍ତ୍ୱ ଉପରେ ପର୍ଯ୍ୟବସିତ । ପ୍ରତ୍ୟେକ ବସ୍ତୁ ମଧ୍ୟରେ ଏପରି ଏକ ବିନ୍ଦୁ ପରିକଳ୍ପନା କରାଯାଏ ଯେଉଁଠି ବସ୍ତୁର ସମସ୍ତ ବସ୍ତୁତ୍ୱ କେନ୍ଦ୍ରୀଭୂତ ହୋଇଥିବାର ଧରାଯାଏ । ଏହି ବିନ୍ଦୁକୁ ମାଧ୍ୟାକର୍ଷଣ କେନ୍ଦ୍ର କିମ୍ବା ଭରକେନ୍ଦ୍ର କୁହାଯାଏ । ପୃଥିବୀର ମାଧ୍ୟାକର୍ଷଣ ବଳ ବସ୍ତୁ ଉପରେ ଏହି ବିନ୍ଦୁଠାରେ କାର୍ଯ୍ୟକାରୀ ହୋଇ ବସ୍ତୁର ଓଜନ ସୃଷ୍ଟିକରେ । ଏହି ବିନ୍ଦୁଟିର ଅବସ୍ଥାନ ଉପରେ ହିଁ ବସ୍ତୁର ସନ୍ତୁଳନତା ଓ ଭାରସାମ୍ୟତା ନିର୍ଭର କରେ । ମାଧ୍ୟାକର୍ଷଣ କେନ୍ଦ୍ର ଦେଇ ଯାଉଥିବା ଭୂଲମ୍ବରେଖା ବସ୍ତୁର ଅଧାରକ୍ଷେତ୍ର ମଧ୍ୟରେ ସୀମିତ ରହିଲେ ବସ୍ତୁର ଭାରସାମ୍ୟତା ରକ୍ଷାହୁଏ । ଏହି ରେଖା ଆଧାରକ୍ଷେତ୍ର ବାହାରକୁ ଘୁଞ୍ଚିଗଲେ ବସ୍ତୁଟି ସ୍ଥାୟୀତ୍ୱ ହରାଇ ଭୁଷୁଡ଼ି ପଡ଼େ । ଭୂଲମ୍ବରେଖା ଆଧାରକ୍ଷେତ୍ର ମଧ୍ୟରେ ସୀମିତ ରହି ସ୍ଥାୟୀତ୍ୱ ସୃଷ୍ଟି କରିବା ନିମନ୍ତେ ଦୁଇଟି ମୁଖ୍ୟ ଆବଶ୍ୟକତା ରହିଛି, ଯଥା (୧)ବସ୍ତୁର ମାଧ୍ୟାକର୍ଷଣ କେନ୍ଦ୍ର ଯଥେଷ୍ଟ ତଳେ ଅବସ୍ଥାନ କରୁଥିବ ଏବଂ (୨)ବସ୍ତୁର ଆଧାରକ୍ଷେତ୍ର ପ୍ରଶସ୍ତ ହୋଇଥିବ ।

ହୁମା ବକ୍ରମନ୍ଦିର କଥା ବିଚାର କରାଗଲେ, ମନ୍ଦିର ନିର୍ମାଣରେ ଶିଳ୍ପୀ ସ୍ଥାୟୀତ୍ୱର ଏ ଦୁଇଟି ଆବଶ୍ୟକତାକୁ ପୂରଣ କରାଯାଇଛି । ପ୍ରଥମତଃ ମନ୍ଦିରର ତଳଭାଗରେ ଓଜନିଆ ପଥର ଭର୍ତ୍ତି କରାଯାଇ ମନ୍ଦିରର ମାଧ୍ୟାକର୍ଷଣ କେନ୍ଦ୍ରକୁ ତଳକୁ ସ୍ଥାନାନ୍ତରିତ କରାଯାଇଥିବ । ଦ୍ୱିତୀୟତଃ, ମନ୍ଦିରର ପ୍ରଶସ୍ତ ଆଧାରକ୍ଷେତ୍ର (ଲମ୍ବ ୨୦୦ଫୁଟ, ପ୍ରସ୍ଥ ୧୨୦ଫୁଟ) ମଧ୍ୟ ଅଧିକ ସ୍ଥାୟିତ୍ୱ ସୃଷ୍ଟି କରିବାରେ ସହାୟକ ହୋଇଥାଏ।

ତେବେ ମନ୍ଦିରର ବର୍ତ୍ତମାନ ବକ୍ରତାର ପରିମାଣ କେତେ ମପାଯିବା ଉଚିତ ଏବଂ ସମୟ ଅନୁସାରେ ଏହି ବକ୍ରତା ବଢ଼ୁଛି କି ନାହିଁ ସେ ନେଇ ବୈଜ୍ଞାନିକ ଅନୁଶୀଳନ ହେବା ଉଚିତ।

ଅନ୍ୟାନ୍ୟ ଆକର୍ଷଣ

ମନ୍ଦିରକୁ ଲାଗିଥିବା ନଦୀଘାଟର ଈଷତ ଲାଲ୍ ବର୍ଣ୍ଣର 'କୁଡ଼ୋ' ମାଛ ହୁମାର ଅନ୍ୟତମ ଆକର୍ଷଣ ।ସେମାନେ ପୋଷା ମାଛ ପରି ଦର୍ଶକଙ୍କ ହାତରୁ ଲଡୁ, ଚାଉଳ ଇତ୍ୟାଦି ଖାଦ୍ୟ ନିର୍ଭୟରେ ଖାଇଥା'ନ୍ତି ।ଏଠାରେ ଭଗବାନ ବିଷ୍ଣୁ ମୀନ ଅବତାରରେ ଅଛନ୍ତି ବୋଲି ବିଶ୍ୱାସ କରାଯାଏ । ଥରେ ଜଣେ ବୁଢ଼ା ଗୋଟିଏ କୁଡ଼ୋ ମାଛକୁ ପନିକିରେ କାଟିବାକୁ ଉଦ୍ୟମ କରନ୍ତେ ନିଜେ ପଥର ପାଲଟି ଯାଇଥିବାର ପ୍ରବାଦ ଅଛି । ଏହି ମାଛମାନେ କେଉଁ ପ୍ରଜାତିର ଏବଂ ସେମାନେ କେବେଠାରୁ ନଦୀରେ ବାସ କରିଆସିଛନ୍ତି ସେ ନେଇ ମଧ୍ୟ ଅଧିକ ଗବେଷଣା ହେବା ଉଚିତ।

କେମିତି ଯିବେ ?

ସମ୍ବଲପୁର ସହରକୁ ବସ୍ କିମ୍ବା ରେଳଗାଡ଼ିରେ ଯାଇ ସେଠାରୁ ହୁମା ମନ୍ଦିର ପର୍ଯ୍ୟନ୍ତ ଅଟୋ କିମ୍ବା ଟ୍ୟାକ୍ସି ଭଡ଼ା କରି ଯାତ୍ରା କରିବାକୁ ପଡ଼ିବ।

ଆଞ୍ଚଳିକ ବିଜ୍ଞାନ କେନ୍ଦ୍ର
ପଣ୍ଡିତ ଜବାହରଲାଲ ନେହରୁ ମାର୍ଗ
ଭୁବନେଶ୍ୱର -୭୫୧୦୧୩

# ସପ୍ତ ମାତୃକା

ବ୍ରହ୍ମାନନ୍ଦ ମହାନ୍ତି

ସପ୍ତମାତୃକାଙ୍କ ଉତ୍ପତ୍ତି ସମ୍ବନ୍ଧରେ ବହୁମତ ଦୃଷ୍ଟିଗୋଚର ହୁଏ । ନାନା ମୁନିଙ୍କର ନାନା ମତ । ମାତ୍ର ପୁରାଣକାରମାନେ ଦୁଇଟି ମତକୁ ସିଦ୍ଧାନ୍ତ ମଧ୍ୟକୁ ଆଣିଛନ୍ତି । ପ୍ରଥମ ମତ କାର୍ତ୍ତିକେୟଙ୍କ ସହ ସମ୍ପର୍କିତ ହୋଇ ଥିବାବେଳେ ଦ୍ୱିତୀୟ ମତଟି ଦେବୀ ଦୁର୍ଗାଙ୍କ ସହ ସମ୍ପର୍କିତ ଓ ଦେବଗଣଙ୍କ ପତ୍ନୀ ପରିକଳ୍ପିତ ।



ମହାଭାରତ ବନପର୍ବରେ ବହୁ ଦେବୀଙ୍କ ବିଷୟରେ ବର୍ଣ୍ଣନା କରାଯାଇଛି । ସଦ୍ୟ ଜନ୍ମ ଲାଭ କରିଥିବା କାର୍ତ୍ତିକେୟଙ୍କୁ ବଧ କରିବା ପାଇଁ ଇନ୍ଦ୍ର କେତୋଟି ଦେବୀଙ୍କୁ ପଠାଇଲେ । ମାତ୍ର ସେମାନେ ଶିଶୁ କାର୍ତ୍ତିକେୟଙ୍କ ପାଖରେ ଉପସ୍ଥିତ ହୁଅନ୍ତେ ସେମାନଙ୍କ ସ୍ତନରୁ କ୍ଷୀର ଧାର ବହିଲା । ତେଣୁ ଏହିମାନଙ୍କୁ ସପ୍ତମାତୃକା ବୋଲି ଅଭିହିତ କରାଗଲା ବୋଲି କୁହାଯାଇଛି ।

ମହାଭାରତ ବନପର୍ବରେ ଅନ୍ୟ ଏକ ଉପାଖ୍ୟାନ ମଧ୍ୟ ରହିଛି । ଯେତେବେଳେ ଇନ୍ଦ୍ର ନବଜାତ କାର୍ତ୍ତିକେୟଙ୍କୁ ବଧ କରିବା ନିମନ୍ତେ ବଜ୍ର ପ୍ରହାର କରିଛନ୍ତି, ସେତେବେଳେ କାର୍ତ୍ତିକେୟଙ୍କଠାରୁ କେତେ ଜଣ ଭୟଙ୍କର ଦେବୀ ଜନ୍ମ ଲାଭ କରିଛନ୍ତି । ସେମାନଙ୍କ ମଧ୍ୟରେ କାକୀ, ହଳିମା, ମାଳିନୀ, ବୃହଳୀ, ଆର୍ଯ୍ୟା, ପଲାଳା ଓ ବୈମାତ୍ରାଙ୍କ ନାମ ଉଲ୍ଲେଖଯୋଗ୍ୟ । କାର୍ତ୍ତିକେୟ ସେମାନଙ୍କୁ ମାତା ରୂପରେ ଗ୍ରହଣ କରି ଶୁଭ ଏବଂ ଅଶୁଭ ଏପରି ଦୁଇ ଭାଗରେ ବିଭକ୍ତ କରିଛନ୍ତି ।

ମାତୃକାଙ୍କ ସୃଷ୍ଟି ବିଷୟରେ ଆଉ ଏକ ମତାମତ ମଧ୍ୟ ଆସିଥାଏ । ଯେତେବେଳେ ଦେବୀ ଦୁର୍ଗା ଶୁମ୍ଭ-ନିଶୁମ୍ଭଙ୍କ ସହ ତୁମୁଳ ସଂଗ୍ରାମରେ ଲିପ୍ତ, ସେସମୟରେ ଦେବୀଙ୍କ ଅନୁରୋଧରେ ଦେବଗଣ ନିଜ ନିଜର ସ୍ତ୍ରୀ ଶକ୍ତି ସୃଷ୍ଟି କରିଛନ୍ତି ଏବଂ ସେମାନେ ଯୁଦ୍ଧରେ ଦେବୀ ଦୁର୍ଗାଙ୍କୁ ସାହାଯ୍ୟ କରିଛନ୍ତି । ପ୍ରତ୍ୟେକ ସ୍ତ୍ରୀଶକ୍ତି ନିଜ ନିଜର ଦେବତାଙ୍କର ସ୍ୱରୂପ ବାହନ ଓ ଅସ୍ତ୍ର ଧାରଣ କରିଛନ୍ତି । ତଦନୁଯାୟୀ ବ୍ରହ୍ମାଙ୍କଠାରୁ ବ୍ରାହ୍ମଣୀ, ଶିବଙ୍କଠାରୁ ମାହେଶ୍ୱରୀ, କାର୍ତ୍ତିକେୟଙ୍କଠାରୁ କୌମାରୀ, ବିଷ୍ଣୁଙ୍କଠାରୁ ବୈଷ୍ଣବୀ, ବରାହଙ୍କଠାରୁ ବରାହୀ, ନରସିଂହଙ୍କଠାରୁ ନାରସିଂହୀ ଏବଂ ଇନ୍ଦ୍ରଙ୍କଠାରୁ ଐନ୍ଦ୍ରୀ ସୃଷ୍ଟି ହୋଇଛନ୍ତି ।

◆◆◆

ବ୍ରହ୍ମା, ଶିବ, କାର୍ତ୍ତିକେୟ ପ୍ରତ୍ୟେକ ଜଣେ ଜଣେ ଦେବୀ ସୃଷ୍ଟି କରିଥିବା ବେଳେ ବିଷ୍ଣୁ ନିଜର ଅନ୍ୟ ଦୁଇଟି ଅବତାରକୁ ମିଶାଇ ତିନୋଟି ରୂପରେ ତିନିଜଣ ଦେବୀଙ୍କୁ ସୃଷ୍ଟି କରିଛନ୍ତି । କାରଣ ବରାହ ଓ ନୃସିଂହ ଯଥାକ୍ରମେ ବିଷ୍ଣୁଙ୍କର ତୃତୀୟ ଓ ଚତୁର୍ଥ ଅବତାର । ଏଠାରେ ସପ୍ତ ମାତୃକାଙ୍କ ସହ କାଳୀ ଓ ଚାମୁଣ୍ଡା ଶିବଦୂତୀ ଯିଏକି ଦେବୀଙ୍କର ନିଜ ଶକ୍ତିରୁ ସୃଷ୍ଟି ଓ ଦେବୀ ସ୍ୱୟଂ ଯୁଦ୍ଧରେ ଅବତୀର୍ଣ୍ଣ ।

ସଂଗ୍ରାମ ଶେଷରେ ମାତୃକାଗଣ ଅସୁରମାନଙ୍କ ରକ୍ତପାନ କରି ଉନ୍ମତ୍ତ ହେବା ପୂର୍ବକ ନୃତ୍ୟ ମଧ୍ୟ କରିଛନ୍ତି । ମାତୃକାମାନଙ୍କର ଉତ୍ପତ୍ତି ବିଷୟରେ ଦେବୀ ଭାଗବତ ପୁରାଣ ଓ ବାମନ ପୁରାଣରେ ସାମାନ୍ୟ ପରିବର୍ତ୍ତନ ମଧ୍ୟ ଆସିଛି ।

ମାତୃକାଗଣ ଦେବଗଣଙ୍କଠାରୁ ଉତ୍ପନ୍ନ ବୋଲି ଦେବୀ ଭାଗବତ ଓ ବାମନ ପୁରାଣ କହିବା ସତ୍ତ୍ୱେ ଏମାନଙ୍କୁ ମୂଳତଃ ଦେବୀଙ୍କର ବିଭିନ୍ନ ରୂପରେ ପରିପ୍ରକାଶ ବୋଲି ବିଚାରକୁ ନିଆଯାଇଛି । ଏହାର କାରଣ ହେଲା ଯେ ଦେବୀ ମହାତ୍ମ୍ୟରେ ବର୍ଣ୍ଣିତ ଅନ୍ୟ ଏକ ଆଖ୍ୟାନରୁ ଜଣାଯାଏ ଯେ ଦେବୀ ଅସୁର ସଂଗ୍ରାମରେ ଦେବୀ ଓ ତାଙ୍କର ସହଯୋଗୀ ମାତୃକାଗଣ ଦ୍ୱାରା ନିଶୁମ୍ଭ ନିହତ ହୁଅନ୍ତେ ଶୁମ୍ଭ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଛି ଓ ଦେବୀଙ୍କୁ ତା ସହିତ ଯୁଦ୍ଧ କରିବାକୁ ଆହ୍ୱାନ ଦେଇଛି । ଦେବୀ ତାର ଆହ୍ୱାନକୁ ଗ୍ରହଣ କରି ମାତୃକାଗଣଙ୍କୁ ନିଜ ମଧ୍ୟରେ ବିଲୀନ କରିଛନ୍ତି । ସେଠାରେ ସେ ମାତୃକାମାନଙ୍କୁ ନିଜର ବିଭିନ୍ନ ରୂପରେ ବର୍ଣ୍ଣନା କରିଛନ୍ତି । ବାମନ ପୁରାଣରେ ଏହା ଅଧିକ ଭାବରେ ସ୍ପଷ୍ଟ ହୋଇଛି ।

ସେଠାରେ କୁହାଯାଇଛି ଯେ ମାତୃକାଗଣ ଦେବୀଙ୍କର ବିଭିନ୍ନ ଅଙ୍ଗରୁ ଜାତ ଓ ଏମାନେ ଏହି ଦୃଷ୍ଟିରୁ ଦେବଗଣଙ୍କର ସ୍ତ୍ରୀ ଶକ୍ତି ନୁହଁନ୍ତି । ପୁନଶ୍ଚ ବାମନ ପୁରାଣ ଅନୁସାରେ, ଦେବୀଙ୍କର ମୁଖରୁ ବ୍ରାହ୍ମଣୀ କଣ୍ଠରୁ କୌମାରୀ, ବାହୁରୁ ବୈଷ୍ଣବୀ, ପୃଷ୍ଠରୁ ବରାହୀ, ସ୍ତନ ଯୁଗଳରୁ ମାହେନ୍ଦ୍ରୀ ଓ ହୃଦୟରୁ ନାରସିଂହୀ ଜନ୍ମ ଘେନିଛନ୍ତି ।

ପ୍ରଥମ ବିଭାଗରେ ମାତୃକାଙ୍କର ଉତ୍ପତ୍ତି କାର୍ତ୍ତିକେୟଙ୍କ ସହ ସମ୍ପର୍କିତ । ଦ୍ୱିତୀୟ ବିଭାଗରେ ଏହା ଦେବୀ ଓ ଦେବୀଗଣ ସହ ସମ୍ପର୍କିତ । ଏହା ସତ୍ତ୍ୱେ ଏକ ତୃତୀୟ ବିଭାଗର ମଧ୍ୟ ପରିକଳ୍ପନା କରାଯାଇଛି । ଯଦ୍ୱାରା ଏମାନେ ଶିବ ଶକ୍ତି ସମ୍ଭୁତା ବୋଲି ଯୁକ୍ତି କରାଯାଇଛି ।

ମତ୍ସ୍ୟ ପୁରାଣରେ ଅନ୍ଧକାସୁର ସହିତ ଯୁଦ୍ଧ କରିବା ସମୟରେ ଶିବ ଏମାନଙ୍କୁ ସୃଷ୍ଟି କରିଥିଲେ । ମାତ୍ର କ୍ଷତବିକ୍ଷତ ହେବା ପରେ ଅନ୍ଧକାସୁର ତା ଶରୀରରୁ ପତିତ ହେଉଥିବା ରକ୍ତ ବିନ୍ଦୁରୁ ନିଜକୁ ପୁର୍ନଜନ୍ମ । ଏଣୁ ତାହାର ପ୍ରତିରକ୍ତ ବିନ୍ଦୁକୁ ପାନ କରିବା ପାଇଁ ମାତୃକାଗଣଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା ଓ ସେମାନେ ଆନନ୍ଦରେ ଏହି କାର୍ଯ୍ୟ ସମ୍ପାଦନ କରିଥିଲେ ।

ମାତୃକା ଶବ୍ଦ ପବିତ୍ର ଜନନୀ ଶବ୍ଦରୁ ଆସିଅଛି । ସ୍ୱଭାବିକ ଭାବରେ ଏମାନେ ମାନବ ସମାଜର ସୃଷ୍ଟିକର୍ତ୍ତୀ ଓ ରକ୍ଷାକର୍ତ୍ତୀ ଶକ୍ତି ଭାବରେ ବିବେଚିତ ହେବା ବାଞ୍ଛନୀୟ । ମାତ୍ର ସପ୍ତମାତୃକାଙ୍କ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଦେଖା ଯାଇଥାଏ । ମାନବ ଜାତିକୁ ସୁରକ୍ଷା ଦେବା ପରିବର୍ତ୍ତେ ସେମାନଙ୍କ ପ୍ରତି କ୍ଷତିର କାରଣ ହୋଇପଡ଼ନ୍ତି । ସ୍ୱଭାବିକ ଭାବରେ ଏମାନେ ଦୁଷ୍ଟ ପ୍ରକୃତିର ଏଣୁ ବିଭିନ୍ନ ପୂଜାର୍ଚ୍ଚନା ଦ୍ୱାରା ଏମାନଙ୍କୁ ସନ୍ତୁଷ୍ଟ କରିବା ପୂର୍ବରୁ ଏମାନଙ୍କ ପ୍ରଭାବରୁ ମୁକ୍ତ ରହିବା ନିମନ୍ତେ ପରିବର୍ତ୍ତୀ କାଳରେ ପ୍ରୟାସ କରାଯାଇଛି । ଏଥିପାଇଁ ସପ୍ତମାତୃକା ପୂଜାର ପ୍ରଚଳନ । ମାତ୍ର ବାସ୍ତବ କାଳରେ ଏମାନେ ହିଂସା ଏବଂ ଦୁଷ୍ଟ ପ୍ରକୃତି ପରାୟଣା । ମହାଭାରତ ବନପର୍ବରେ ଉଲ୍ଲେଖ ଅଛି ଯେ, ଏକଦା ଛଅଜଣ ଋଷିଙ୍କ ପତ୍ନୀମାନେ ମିଥ୍ୟାରେ ନିଜ ନିଜକୁ କାର୍ତ୍ତିକେୟଙ୍କ ଜନନୀ ଭାବରେ ଅଭିହିତ କଲେ । ଏଥିପାଇଁ ସେମାନେ ନିଜର ପତିଙ୍କଠାରୁ ପରିତ୍ୟକ୍ତା ହେଲେ । ପରିତ୍ୟକ୍ତ ହୋଇ କାର୍ତ୍ତିକେୟଙ୍କ ପାଖରେ ପହଞ୍ଚିଲେ ଏବଂ ସମସ୍ତେ ବୃତ୍ତାନ୍ତ କହି କାର୍ତ୍ତିକେୟଙ୍କର ଜନନୀ ହେବାକୁ ଅନୁରୋଧ କଲେ । କାର୍ତ୍ତିକେୟ ଏଥିରେ ସମ୍ମତି ଜଣାଇ ସେମାନଙ୍କର ଇଚ୍ଛା ବିଷୟରେ ପ୍ରଶ୍ନ କରିଛନ୍ତି । ମାତୃକାଗଣ ସେମାନଙ୍କର ପ୍ରତି ଇଚ୍ଛା ବିଷୟରେ କରିଛନ୍ତି । ପ୍ରଥମତଃ ସେମାନେ ପ୍ରମୁଖ ଦେବୀ ଭାବରେ ପୂଜା ପାଇବେ ଏବଂ ଦ୍ୱିତୀୟରେ ସେମାନେ ମନୁଷ୍ୟମାନଙ୍କର ନବଜାତ ଶିଶୁ ସନ୍ତାନ ସନ୍ତତିଙ୍କୁ ବିନାଶ କରିବା ନିମନ୍ତେ ସେମାନେ ସ୍ୱାମୀ ପରିତ୍ୟକ୍ତି । କାରଣ ଯେଣୁ ସନ୍ତାନ ସନ୍ତତି ପ୍ରାପ୍ତି ସୌଭାଗ୍ୟରୁ ବଞ୍ଚିତା । ସେମାନଙ୍କ ପ୍ରଥମ ଇଚ୍ଛାକୁ କାର୍ତ୍ତିକେୟ ଅସ୍ତୁ କଲେ ମାତ୍ର ଦ୍ୱିତୀୟ ଇଚ୍ଛା ପାଇଁ କୁଣ୍ଠାବୋଧ ପ୍ରକାଶ କଲେ । ସେମାନଙ୍କୁ ବିନାଶ ପରିବର୍ତ୍ତେ ପ୍ରତିପାଳନ ପାଇଁ କାର୍ତ୍ତିକେୟ ଅନୁରୋଧ କଲେ । ମାତୃକାଗଣ ଏଥିରେ ସମ୍ମତ ପ୍ରକାଶ କଲେ ମାତ୍ର ସର୍ତ୍ତ ରହିଲା ଯେ ଶିଶୁମାନେ ଷୋଳବର୍ଷ ବୟସରେ ପଦାର୍ପଣ କରିବା ନିମନ୍ତେ ମାତୃଗଣ ସେମାନଙ୍କୁ ପୀଡ଼ା ଦେଇପାରିବେ ଏବଂ ଏହି ପୀଡ଼ା କାରଣେ ମାତୃଗଣ ସମସ୍ତଙ୍କ ଦ୍ୱାରା ପୂଜିତ ହେବେ ।

ମହାଭାରତର ବନ ପର୍ବରେ ଅନ୍ୟ ଏକ ଉପାଖ୍ୟାନ ମଧ୍ୟ ରହିଛି । ଦଶଗୋଟି ସ୍ତ୍ରୀଶକ୍ତି ସମ୍ବନ୍ଧରେ ସୂଚନା ଦିଆଯାଇଛି । ସେମାନେ ହେଲେ– ବିନତା, ପୁତନା, ରକ୍ଷସୀ, ଅଦିତୀ ବା ରେବତୀ, ହିତି ସୁରଭି, ସରମା, ବୃହ୍ମ, ଲୋହିତାୟନି ଓ ଆର୍ଯ୍ୟା । ବିନତା ଓ ଲୋହିତାୟନି ବ୍ୟତୀତ ଅନ୍ୟ ସମସ୍ତେ ଶିଶୁ ଓ ଆର୍ଯ୍ୟା । ସେମାନେ ମାଂସ ଭକ୍ଷଣ ଓ ମଦ୍ୟପାନ କରିବାକୁ ଭଲ ପାଆନ୍ତି ଓ ଶିଶୁ ଜନ୍ମ ଘେରିଥିବା କୋଠରୀର ଦଶଦିନ ପାଇଁ ବାସ କରିଥାନ୍ତି ।

ମହାଭାରତ ଶଲ୍ୟ ପର୍ବରେ କୁହାଯାଇଛି ଯେ ଦେବାସୁର ସଂଗ୍ରାମରେ କାର୍ତ୍ତିକେୟଙ୍କ ନବାସେନାପତି ଭାବେ ନିଯୁକ୍ତ କରାଯାଇଛି । ସେଠାରେ ୯୨ତମ ମାତୃକା ଯୁଦ୍ଧରେ କାର୍ତ୍ତିକେୟଙ୍କୁ ସହଯୋଗ ଦେଇଛନ୍ତି ଯଦିଓ ସେଠାରେ ସେମାନେ ବିଭିନ୍ନ ରୂପରେ ବର୍ଣ୍ଣିତ ଓ କେତେକ ମାତୃକା ସୁନ୍ଦରୀ, ଶୁଭାବର୍ଣ୍ଣା, ଯୌବନ ସମ୍ପନ୍ନା ତଥାପି ସେମାନେ ସାଧାରଣ ଭାବରେ ଦୁଷ୍ଟ ଓ ଅଶୁଭ ପ୍ରକୃତିର । ସେମାନଙ୍କର ଦୀର୍ଘ ନଖ, ଦନ୍ତ ଭୟାବହ ରୂପ ପର୍ବତ–ନଦୀରେ ବାସ କରିବାର ପ୍ରବୃତ୍ତି ଅଧିକ ଭୟଜାତ କରିଥାଏ । ମାତ୍ର ବହୁ ଭାବରେ ସେମାନଙ୍କୁ ଅସୁର ମାନବ ବିରୁଦ୍ଧରେ ଯୁଦ୍ଧରେ ଦେବଦେବୀଙ୍କୁ ସାହାଯ୍ୟ ପ୍ରଦାନ କରୁଥିବା ତଥା ସେମାନଙ୍କୁ ବିନାଶ ତ୍ରିଭୁବନରେ ଭାରସାମ୍ୟ ଓ ସନ୍ତୁଳନ ରକ୍ଷା କରୁଥିବା କାରଣେ ଏମାନଙ୍କୁ ଦେବୀଙ୍କର ଶକ୍ତି ଭାବରେ ବର୍ଣ୍ଣନା କରାଯାଇଛି ।

ଭାଗବତ ପୁରାଣରେ ବିଷ୍ଣୁଙ୍କ ଦ୍ୱାରା ପ୍ରାଣୀମାନଙ୍କର ବିଭାଗୀକରଣ କାଳରେ ମାତୃକାମାନଙ୍କୁ ଉଗ୍ର, ରାକ୍ଷସ, ପିଶାଚ, ଭୂତ ଓ ଅନ୍ୟାନ୍ୟ ବିପଦ ସୃଷ୍ଟିକାରୀ ପ୍ରାଣୀଭାବରେ ସନ୍ନିବସିତ କରିଛନ୍ତି । ଏମାନଙ୍କୁ ମଧ୍ୟ ଭୂତ ଡାକିନୀ, କେତେକ ପିଶାଚଗଣଙ୍କ ମନ ଉଲ୍ଲେଖ କରାଯାଇ ଶିବଙ୍କର ସେନାବାହିନରେ ଅନ୍ତର୍ଭୁକ୍ତ କରାଯାଇଛି ।

ବରାହ ପୁରାଣରେ ସେମାନଙ୍କୁ ଅଶୁଭ ପ୍ରକୃତି ସହିତ ତୁଳନା କରି– ଯୋଗେଶ୍ୱରୀ କାମର ପ୍ରତୀକା, ମାହେଶ୍ୱରୀ କ୍ରୋଧର ପ୍ରତୀକ ବୈଷ୍ଣବୀ ଲୋଭର ପ୍ରତୀକା, କୈମାରୀ ଆସକ୍ତିର ପ୍ରତୀକ ବ୍ରାହ୍ମଣୀ ଅହଂକାରର ପ୍ରତୀକ । ଚାମୁଣ୍ଡା ନୀତିଭ୍ରଷ୍ଟାର ପ୍ରତୀକ ଓ ବରାହୀ ଶତ୍ରୁର ପ୍ରତୀକ ଭାବରେ ବର୍ଣ୍ଣନା କରାଯାଇଛି ।

ଭାରତୀୟ ଧର୍ମ ଓ ସଂସ୍କୃତି ପରମ୍ପରାରେ ଓଡ଼ିଶା ଏକ ସ୍ୱତନ୍ତ୍ର ସ୍ଥାନଭାବେ ସ୍ଥାନିତ ହୋଇଥାଏ । କାରଣ ଏହି ଭୂଖଣ୍ଡ ଅନେକ ଧର୍ମ ଧାରଣାର ଏକ ଉତ୍ସଭୂମି । ଅନେକ ନୂତନ ଧର୍ମର ପ୍ରତିଷ୍ଠା ଏହିଠାରେ ସମ୍ଭବ ହୋଇଯାଇଛି । ଧର୍ମ ସମନ୍ୱୟର ଭୂଖଣ୍ଡ । ବିଶେଷ ଭାବରେ ଶାକ୍ତତନ୍ତ୍ର, ବଜ୍ରଯାନୀ, ବୌଦ୍ଧ ପରମ୍ପରାରେ ଏହା ଅନନ୍ୟ ଶୀର୍ଷକୁ ଉଠିଥିଲା । ଶାକ୍ତ ପରମ୍ପରାରେ ଓଡ଼ିଶାକୁ ପ୍ରଥମ ପୀଠ ବା ଆଦିକ୍ଷେତ୍ର ବୋଲି କୁହାଯାଇଛି । ଓଡ଼ିଶାରେ ଯାଜପୁର ଭାରତୀୟ ଶକ୍ତି କ୍ଷେତ୍ରମାନଙ୍କ ମଧ୍ୟରେ ଏକ ପ୍ରମୁଖ କ୍ଷେତ୍ର । ମାତୃଗଣଙ୍କର ଶାକ୍ତ ସଂସ୍କୃତି ସହିତ ଏକାନ୍ତ ଘନିଷ୍ଠ ସମ୍ପର୍କ ଥିବାରୁ ଶକ୍ତି ପୂଜାର ଆଦ୍ୟପୀଠ ଓଡ଼ିଶାର ଏମାନଙ୍କର ପୂଜା ବହୁଳ ଭାବରେ ପ୍ରଚାରିତ ଓ ପ୍ରସାରିତ ହୋଇଥିଲା । ଏଣୁ ଓଡ଼ିଶାର ବହୁ ସ୍ଥାନରେ ମାତୃକା ମୂର୍ତ୍ତି ମନ୍ଦିର ଓ ପୂଜା ପରିଦୃଷ୍ଟ ହୋଇଥାଏ ।

ଓଡ଼ିଶାରେ ପରିଦୃଷ୍ଟ ହେଉଥିବା ସପ୍ତମାତୃକା ମଧ୍ୟରେ ଯାଜପୁରର ବୈତରଣୀ ନଦୀତଟରେ ଦଶାଶ୍ୱମେଧ ଘାଟ ନିକଟରେ ଅବସ୍ଥିତ ସପ୍ତମାତୃକା । ଯାଜପୁର ଏସ୍.ଡି.ଓଙ୍କ ସରକାରୀ ବାସ ଭବନ ହତାରେ ଥିବା କତିପୟ ମାତୃକା ମୂର୍ତ୍ତି, ଯାଜପୁର ଉପକଣ୍ଠ ଯାଉଁଳି ବନ୍ଧଠାରେ ଥିବା ଚାମୁଣ୍ଡା ମୂର୍ତ୍ତି, ଭୁବନେଶ୍ୱର ପର୍ଶୁରାମେଶ୍ୱର ଓ ମୁକ୍ତେଶ୍ୱର ମନ୍ଦିର ଗାତ୍ରରେ ଥିବା ମାତୃକା ମୂର୍ତ୍ତି । ହୀରାପୁର ଓ ରାଣୀପୁରର ଚଉଷଠୀ ଯୋଗିନୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ମାତୃକା ମୂର୍ତ୍ତି, ଚୌରାଶୀର ବରାହୀ ମୂର୍ତ୍ତି, ଧର୍ମଶାଳାରୁ ପ୍ରାପ୍ତ ଓ ଓଡ଼ିଶା ରାଜ୍ୟ ସଂଗ୍ରାହଳୟରେ ସଂରକ୍ଷିତ ମାତୃକା ମୂର୍ତ୍ତି ଅନ୍ୟତମ । ଏହା ବ୍ୟତୀତ ପୁରୀ ମାର୍କଣ୍ଡେୟ ପୁଷ୍କରିଣୀର ପ୍ରାଚୀରରେ ଥିବା ସପ୍ତମାତୃକା ମୂର୍ତ୍ତି ଏଠାରେ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ ମାତ୍ର ଯାଜପୁରର ଶାକ୍ତ କ୍ଷେତ୍ରଭାବରେ ପ୍ରସିଦ୍ଧ ଅନନ୍ୟ । ଏଣୁ ଏଠାରେ ମାତୃକା ପୂଜା ଏବେ ମଧ୍ୟ ପ୍ରଚଳିତ । ଏକ ପ୍ରଧାନ ଶକ୍ତି ପୀଠ ହୋଇଥିବାରୁ ଏଠାରେ ମାତୃକାଙ୍କର ମୂର୍ତ୍ତି ବହୁଳ ଭାବରେ ଦେଖିବାକୁ ମିଳିଥାଏ । ମାତୃକାଗଣଙ୍କ ମୂର୍ତ୍ତିକୁ ଦେଖିଲେ ଏହି ସିଦ୍ଧାନ୍ତରେ ପହଞ୍ଚିବା ଯେ ଏଠାରେ ଦୁଇ ଭାଗରେ ବିଭକ୍ତ ହୋଇ ମୂର୍ତ୍ତି ଗୁଡ଼ିକ ଥିଲା । କାରଣ ଦଶାଶ୍ୱମେଧ ଘାଟରେ ଥିବା ମୂର୍ତ୍ତି ଯାହା ସମ୍ପୂର୍ଣ୍ଣ ସୁରକ୍ଷିତ ଏବଂ ଦ୍ୱିତୀୟ ଭାଗର ମୂର୍ତ୍ତିଗୁଡ଼ିକ ଇତଃସ୍ତତଃ ଭାବରେ ପରିପୃଷ୍ଟ । ତଥାପି ଗବେଷକମାନେ କହିଥାନ୍ତି ଯେ ଆଉ ଏକ ବିଭକ୍ତ ଭାଗଟିଏ ମଧ୍ୟ ରହିଛି । କାରଣ ଚାମୁଣ୍ଡାଙ୍କର ଅନ୍ୟ ଏକ ମୂର୍ତ୍ତି ଯାହାକି ଯାଜପୁର ଉପକଣ୍ଠ ଯାଉଁଳିବନ୍ଧଠାରେ ଅବସ୍ଥିତ । ତାହା କଦାପି ଏକ ଅସଂଲଗ୍ନ ମୂର୍ତ୍ତି ହୋଇ ନ ପାରେ । ଏଣୁ ଯାଉଁଳିବନ୍ଧରେ ଚାମୁଣ୍ଡା ମୂର୍ତ୍ତି ତୃତୀୟ ବିଭକ୍ତ ଅଂଶର ଅନ୍ତର୍ଭୁକ୍ତ କରିବା ଅସମ୍ଭବ ତୁଲ୍ୟ ।

ଯାଜପୁରଠାରେ ପ୍ରାପ୍ତ ମୂର୍ତ୍ତି ଓ କୀର୍ତ୍ତି ସମୂହ ଏକଦା ଅତ୍ୟନ୍ତ ସମୃଦ୍ଧ ଯାଜପୁର ପ୍ରତ୍ନତାତ୍ତ୍ୱିକ ବିଭବର ଏକ ଦଶମାଂଶ ମଧ୍ୟ ହୋଇନାହିଁ । କାରଣ ଏବେ ମିଳୁଥିବା ମାତୃ ମୂର୍ତ୍ତି ମଧ୍ୟ ବହୁବର୍ଷ ଧରି ଫକିର ସୟଦ ବୁଖାରିଙ୍କର ସ୍ମୃତିସ୍ତମ୍ଭର ପାର୍ଶ୍ୱବର୍ତ୍ତୀ ମଣ୍ଡପର ପଛପଟରେ ଥିବା ଅଳିଆ ଗଦା ଉପରେ ଓଲଟ ପାଲଟ ହୋଇ ପଡ଼ିଥିଲା । କିଟୋ ସାହେବ ପ୍ରଥମେ ସେ ମୂର୍ତ୍ତି ଗୁଡ଼ିକୁ ଦେଖିଲେ ଓ ପରେ ୧୮୬୬ ମସିହାରେ ଜୋସେଫ୍ ଆର୍ମଷ୍ଟ୍ରଙ୍ଗ ସେଗୁଡ଼ିକୁ ଏସ୍.ଡ଼ି.ଓଙ୍କ ହତାରେ ସଂରକ୍ଷିତ କରିଥିଲେ । ଏଣୁ ଦୃଢ଼ ବିଶ୍ୱାସ ଯେ ଯଦି ବଡ଼ ଧରଣର ପତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ କରାଯିବ ଏହିପରି ଅନେକ ଲୁକାୟିତ ବିଭବର ସନ୍ଧାନ ମିଳିପାରିବ । ଯାଜପୁର ଚାମୁଣ୍ଡାଙ୍କର ସ୍ୱତନ୍ତ୍ର ମନ୍ଦିର ନଥିବାରୁ ଏବଂ ମୂର୍ତ୍ତିଗୁଡ଼ିକର ରକ୍ଷଣାବେକ୍ଷଣ ବାଧାପ୍ରାପ୍ତ ହୋଇପଡୁଛି ।

ଦଶାଶ୍ୱମେଧ ଘାଟ ନିକଟରେ ଯେଉଁ ମନ୍ଦିରରେ ସପ୍ତମାତୃକା ମୂର୍ତ୍ତି ସମୂହ ପୂଜା ପାଉଥିଲେ, ସେ ମନ୍ଦିର ମୋଗଲ ରାଜତ୍ୱ କାଳରେ ଧ୍ୱଂସ କରି ଦିଆଯାଇ ଥିଲା ଓ ମୂର୍ତ୍ତିଗୁଡ଼ିକୁ ନଦୀମଧ୍ୟକୁ ଫିଙ୍ଗି ଦିଆ ଯାଇଥିଲା । ପରେ କଟକରେ ଜଣେ ମହାଜନ ନଦୀ ଗର୍ଭରେ ବାଲୁକା ରାଶିରୁ ଉଦ୍ଧାର କରି ମନ୍ଦିରଟିଏ ଗଢ଼ି ସେ ମୂର୍ତ୍ତିଗୁଡ଼ିକ ପ୍ରତିଷ୍ଠା କରିଥିଲେ । ଏବେ ମଧ୍ୟ ବହୁ ମାତୃକା ମୂର୍ତ୍ତି ମାଟିତଳେ ଶଯ୍ୟାରେ ପୋତିହୋଇ ରହିଥିବା ଅସମ୍ଭବ ନୁହେଁ ।

ଯାଜପୁର ଏସ୍.ଡି.ଓଙ୍କ ବାସଭବନରେ ସଂରକ୍ଷିତ ମାତୃକା ମୂର୍ତ୍ତି ଗୁଡ଼ିକ ହେଲେ ୧–ବାରାହୀ (ଉଚ୍ଚତା ୮ ଫୁଟ ୧୦ ଇଞ୍ଚ), ୨– ଚାମୁଣ୍ଡା (୮ ଫୁଟ ୧୦ ଇଞ୍ଚ), ୩– ଇନ୍ଦ୍ରାଣୀ ବା ଐନ୍ଦ୍ରୀ (ଉଚ୍ଚତା ୮ ଫୁଟ ୯ ଇଞ୍ଚ) । ଏମାନେ ସମସ୍ତେ ମୁଗୁନି ପଥରରେ ନିର୍ମିତ । ଦଶାଶ୍ୱମେଦ ଘାଟ ନିକଟରେ ପୂଜା ପାଉଥିବା ମାତୃକାଗଣ ହେଲେ ୧–ଚାମୁଣ୍ଡା, ୨– ବାରାହୀ, ୩– ଐନ୍ଦ୍ରୀ, ୪– ବୈଷ୍ଣବୀ, ୫–କୈମାରୀ । ଏହା ବ୍ୟତୀତ ବୈଷ୍ଣବୀ ଓ କୈମାରୀଙ୍କ ମଧ୍ୟ ଭାଗରେ ଅନ୍ୟ ଏକ କଦାକାର ବୃଦ୍ଧାର ମୂର୍ତ୍ତି ଦୃଷ୍ଟିଗୋଚର ହୋଇଥାଏ । ସ୍ଥାନୀୟ ପଣ୍ଡାମାନଙ୍କ ମତରେ ଏହା ସୂର୍ଯ୍ୟଙ୍କର ପତ୍ନୀ ଛାୟାଙ୍କର ମୂର୍ତ୍ତୀ ଯାହାକୁ ସେମାନେ ଯମ ରାଜାଙ୍କ ମା'ବୋଲି କହିଥାନ୍ତି । ଏଣୁ ଯାଜପୁରର ସପ୍ତମାତୃକା ଯମ ମା' ସାତଭଉଣୀ ବୋଲି କହିଥାନ୍ତି ବୋଲି କହିଥାନ୍ତି । ମାତ୍ର ବାସ୍ତବିକ ସେହିବୃଦ୍ଧାର ମୂର୍ତ୍ତି ହେଉଛି ଶିବ ଦ୍ୱିତୀୟଙ୍କର ପ୍ରତିମୂର୍ତ୍ତି । ଏହାର ଉଚ୍ଚତା ୬ ଫୁଟ ୩ ଇଞ୍ଚ । ସପ୍ତମାତୃକାଙ୍କ ସହିତ ଶିବ ଦ୍ୱିତୀୟ ମଧ୍ୟ ଅସୁରମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିଥିଲେ ।

ଆଉ ଏକ ବିଶେଷତ୍ୱ ହେଲା ଯେ ସପ୍ତମାତୃକାଙ୍କ ସହିତ ବହୁ ସ୍ଥାନରେ ମହାବିନାୟକ ଗଣେଶ ଓ ବୀରଭଦ୍ରଙ୍କ ମୂର୍ତ୍ତି ଦୃଷ୍ଟିଗୋଚର ହୋଇଥାଏ । ରୂପ ମଣ୍ଡନ ନାମ ଗ୍ରନ୍ଥାନୁସାରେ ମାତୃମାନଙ୍କ ପୂର୍ବରୁ ବୀରଭଦ୍ର ଓ ଶେଷରେ ଗଣେଶଙ୍କ ମୂର୍ତ୍ତି ରହିବ । ଯାଜପୁର ସପ୍ତମାତୃକା ମନ୍ଦିର ମାତୃକାଙ୍କର ଆକାର ସମାନ– ଏକା ପଥରରେ ତିଆରି । ପ୍ରାୟତଃ କୁହାଯାଇଥାଏ ଯେ ଏହି ଗଣେଶ ସପ୍ତମାତୃକା ସହିତ ପୂଜା ପାଉଥିଲେ ଏବଂ ମୋଗଲ ଆକ୍ରମଣର ପରବର୍ତ୍ତୀ ସମୟରେ ଏହା ନିଯୁକ୍ତି ହୋଇ ସ୍ୱତନ୍ତ୍ର ମନ୍ଦିରରେ ପୂଜା କରାଯାଉଅଛି ।

ମତ୍ସ୍ୟ ପୁରାଣରେ ମଧ୍ୟ କୁହାଯାଇଛି ଯେ– ମାତୃଗଣଙ୍କ ନିକଟତର ଗଣେଶଙ୍କ ମୂର୍ତ୍ତି ନିର୍ମାଣ କରିବ । ତେବେ ମାତୃଗଣଙ୍କ ସହିତ କାହିଁକି ଯେ ବୀରଭଦ୍ର ଓ ଗଣେଶ ପୂଜିତ ହେବେ ସେ ସମ୍ବନ୍ଧରେ ଏକ ସ୍ପଷ୍ଟିକରଣ ମଧ୍ୟ ରହିଛି ।

ମତ୍ସ୍ୟପୁରାଣ ଅନୁସାରେ ଶିବଙ୍କ ଆଦେଶ ଅନୁଯାୟୀ ମାତୃକାଗଣ ଅନ୍ଧକାସୁରକୁ ପରାଜିତ କରିଛନ୍ତି । ଯୁଦ୍ଧ ଶେଷରେ ମାତୃକାଗଣ ଘୋଷଣା କରିଛନ୍ତି ଅଗ୍ରସର ହେବେ । ଏହା ନ କରିବାକୁ ଶିବ ଆଦେଶ ଦେବାରୁ ସେମାନେ ସେ ଆଦେଶକୁ ଉଲଙ୍ଘନ କରି ବିନାଶ କାର୍ଯ୍ୟ ଆରମ୍ଭ କରିଦେଲେ । ନରସିଂହ ଅସଂଖ୍ୟ ଶିଷ୍ଟ ପ୍ରକୃତିର ଦେବୀଙ୍କୁ ସୃଷ୍ଟିକଲେ ଯେଉଁମାନେ ମାତୃକାଗଣଙ୍କୁ ଶାନ୍ତକରି ସେମାନଙ୍କ ବିନାଶ କାର୍ଯ୍ୟର ପୂର୍ଣ୍ଣଚ୍ଛେଦ ଆଣିଲେ । ସେମାନଙ୍କୁ ଆୟତ୍ତ କରିବା ପାଇଁ ଶିବ ଗଣେଶ ଓ ସତୀ ଆତ୍ମାହୂତି ବେଳେ ଦକ୍ଷ ପ୍ରଜାତିଙ୍କର ପ୍ରତିଶୋଧ କାମନାରେ ସୃଷ୍ଟି କରିଥିବା ବୀରଭଦ୍ରଙ୍କୁ ପାଖେ ପାଖେ ରଖିଲେ । ମାତୃଗଣ ମଧ୍ୟ ସ୍ୱତନ୍ତ୍ର ଭାବରେ ପୂଜିତ ହୋଇଥାନ୍ତି । ଚୌରାଶୀର ବାରାହୀ ମନ୍ଦିର ଏହାର ଜ୍ୱଳନ୍ତ ପ୍ରମାଣ । ଏହା ବ୍ୟତୀତ ପୁରୀ ମାର୍କେଣ୍ଡେୟ ସରୋବରରେ ପ୍ରାଚୀରସ୍ଥ ମାତୃକାଗଣ ମଧ୍ୟ ସ୍ୱତନ୍ତ୍ର ଭାବରେ ପୂଜିତ । ଏଠାରେ ପାଞ୍ଚଟି ମୂର୍ତ୍ତିକା ଉପଲବ୍ଧ । ଚତୁର୍ମୁଖା (ପଶ୍ଚାତଭାଗର ମୁଖ୍ୟ ଦୃଶ୍ୟମାନ ନୁହେଁ) ଓ ଚତୁର୍ବାହୁ ବାହ୍ମୀ ବା ବ୍ରାହ୍ମଣୀ ଅର୍ଦ୍ଧପର୍ଯ୍ୟଙ୍କ ଆସନରେ ହଂସ ଉପରେ ଉପବିଷ୍ଟ । ସେ ବାମ କୋଳରେ ଏକ ଶିଶୁକୁ ଧାରଣ କରିଛନ୍ତି । ସମ୍ମୁଖ ଭାଗର ଦକ୍ଷିଣ ହସ୍ତରେ ଉପାଖ୍ୟାନ ମୁଦ୍ରା ପରିଦୃଷ୍ଟ ହୋଇଥାଏ । ଅନଳଙ୍କୃତା ଓ ନଟା ମୁକୁଟା ତଥା ଉପବୀତ ଧାରିଣୀ ଭାବରେ ସେ ଅବସ୍ଥିତ ମାହେଶ୍ୱରୀ ବୃଷଭାରୂପ (କିନ୍ତୁ ତାଙ୍କ ହସ୍ତ ଗୁଡ଼ିକ ଭଗ୍ନ ହୋଇଯାଇଛି) । ସେ ଅଳଙ୍କାର ନିମନ୍ତ୍ରିତ ଓ ଶିଶୁଙ୍କୁ ଧାରଣ କରିଛନ୍ତି । କୈମାରୀ ଶିଶୁ ଧାରଣ

ପୂର୍ବରୁ ମୟୂର ଆରୋହଣ କରିଛନ୍ତି । ବାରାହୀଙ୍କର ଭୟଙ୍କର ରୂପ ତାଙ୍କ ଦୁଇ ଚୂର୍ଣ୍ଣ କୁଣ୍ଡଳ ଉର୍ଦ୍ଧ୍ୱ ଗତିରୁ ଜଣାପଡୁଛି । ବାମ ହସ୍ତରେ କପାଳ ଓ କୋଳରେ ଶିଶୁ ଧାରଣ କରିଛନ୍ତି । ସେ ମହିଷା ରୂପ ଭାବରେ ଅବସ୍ଥିତ । ଚତୁର୍ଭୁଜା ଇନ୍ଦ୍ରାଣୀ ଅତ୍ୟନ୍ତ ଦର୍ଶନୀୟ ହସ୍ତୀବାହନ, ସମ୍ମୁଖରେ ଦକ୍ଷିଣ ଓ ପଶ୍ଚାତରେ ବାମ ହସ୍ତ ଦ୍ୱୟ ଭଗ୍ନ ହୋଇଛି । ସେ ଭଦ୍ର ଓ ଶିଶୁଧାରଣ କରିଛନ୍ତି ।

ଓଡ଼ିଶାରେ ପତ୍ନତତ୍ତ୍ୱରେ ଦୃଷ୍ଟିଗୋଚର ହୋଇଥିବା ମାତୃ ମୂର୍ତ୍ତିକା ମଧ୍ୟରେ ଖିଚିଂର ବୈଷ୍ଣବୀ ମୂର୍ତ୍ତି ଓ ଯାଜପୁର ଚାମୁଣ୍ଡା ମୂର୍ତ୍ତି ଦ୍ୱୟ ଅତ୍ୟନ୍ତ ମହତପୂର୍ଣ୍ଣ ଓ କାରିଗରୀ ଶୈଳୀ ମଧ୍ୟ ଆକର୍ଷଣୀୟ । ଚୌଷଠୀ ଯୋଗିନୀଙ୍କ ମଧ୍ୟରେ ସପ୍ତମାତୃକାଙ୍କ ମୂର୍ତ୍ତି ଦୃଷ୍ଟିଗୋଚର ହୋଇଥାଏ ।

ପ୍ରଥମାବସ୍ଥାରେ ମାତୃକାଗଣଙ୍କ ସଂଖ୍ୟା ଅନିର୍ଦ୍ଦିଷ୍ଟ ଥିଲା । ସେମାନେ ମୂଳତଃ ଦୁଷ୍ଟ ସ୍ୱଭାବର ବୋଲି ପରିଲକ୍ଷିତ ହେଉଥିଲେ ଖ୍ରୀଷ୍ଟୀୟ ଚତୁର୍ଥ-ପଞ୍ଚମ ଶତାବ୍ଦୀର ଏମାନଙ୍କ ସଂଖ୍ୟା ଓ ନାମ କ୍ରମଶଃ ନିର୍ଦ୍ଦିଷ୍ଟ ହୋଇଥିଲା । କାଳକ୍ରମେ ଏମାନଙ୍କ ଜଣେ ଜଣେ ପ୍ରମୁଖ ହିନ୍ଦୁ ଦେବତାଙ୍କର ସ୍ତ୍ରୀ ଶକ୍ତି ଭାବରେ ବର୍ଣ୍ଣନା କରିବା ପୂର୍ବଜମାନଙ୍କର ସ୍ୱଭାବରେ ପରିବର୍ତ୍ତନ ଆଳ ସେମାନଙ୍କୁ ଧର୍ମ ରକ୍ଷାକାରିଣୀ ଶକ୍ତି ଭାବରେ ବର୍ଣ୍ଣନା କରିବାକୁ ପ୍ରୟାସ କରାଗଲା । ତଥାପି ସେମାନଙ୍କୁ ପୂଜା ଆରାଧନା କରି ସନ୍ତୁଷ୍ଟ ପୂର୍ବକ ଶିଷ୍ଟା କରାଇବାର ଜାରି ରହିଛି । ଗ୍ରାମାଞ୍ଚଳର ତଥା ଗୁରୁଜନମାନଙ୍କର ବିଶ୍ୱାସକ୍ରମେ ଦୁଃସାଧ୍ୟ ରୋଗରୁ ରକ୍ଷା ପାଇବା ପାଇଁ ଗ୍ରାମ ଦେବତୀଙ୍କଠାରେ ରକ୍ତ ନୈବେଦ୍ୟ ଅର୍ପଣ କରାଯାଇଥାଏ । ତେବେ ଆର୍ଯ୍ୟୋତ୍ତର ସଂସ୍କୃତିରୁ ହିନ୍ଦୁ ସଂସ୍କୃତିକୁ ପ୍ରବେଶ କରି ମହତପୂର୍ଣ୍ଣ ସ୍ଥାନରେ ଅବତୀର୍ଣ୍ଣ ହୋଇଥିବା ଦେବଗଣମାନଙ୍କ ମଧ୍ୟରେ ସପ୍ତମାତୃକା ଅନ୍ୟତମ । ସେମାନଙ୍କୁ ତୁଷ୍ଟ କରିବା କଷ୍ଟସାଧ୍ୟ ହେଲେ ମଧ୍ୟ ସେମାନେ ମଧ୍ୟ ତୁଷ୍ଟା, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ସେମାନଙ୍କ ନିକଟରେ ପୂଜାର୍ଚ୍ଚନା ପୂର୍ବକ ସାଧନା ସିଦ୍ଧ ହେବା ମନସ୍କାମନା ପୂର୍ଣ୍ଣ କରିବାର ସମ୍ଭାବନାକୁ ଏଡ଼ାଇ ପାରିନାହିଁ କି ପାରିବ ନାହିଁ । ସେମାନଙ୍କ ପୀଠ ତେଣୁ ସାଧନାପୀଠର ମାନ୍ୟତା ପାଇବ ମୁନିଋଷି, ସାଧକ, ଭକ୍ତଙ୍କର ଭକ୍ତି ଭାବନା ଯେପର୍ଯ୍ୟନ୍ତ ଦୃଢ଼ୀଭୂତ ହୋଇ ରହିଥିବ । ମା' ସଂହାରକାରିଣୀ ଦାନବୀୟ ସ୍ୱଭାବକୁ ସଂହାର କରିବା ପାଇଁ ଧର୍ମମାନଙ୍କ ପାଖରେ ଦାନବୀୟ ପ୍ରକୃତି ଥିଲେ ସେ ସଂହାରର ସମ୍ମୁଖୀନ ହୋଇ ଏଥିରେ ଦ୍ୱିଧା କରିବାର କିଛି ନାହିଁ । ଶିଶୁ ଅର୍ଥାତ ଅଜ୍ଞାନଙ୍କ ପରି ଆଣିଥିଲେ ହାତଲେଖା ନିଶ୍ଚିତ । ଏଣୁ ଧାରଣର ମନ ଓ କାରଣ ପ୍ରତି ଗୁରୁତ୍ୱ ଦେଇ ଅଜ୍ଞାନ ଅନ୍ଧକାର ରୂପକ ଦାନବୀୟ ସ୍ୱଭାବ ଛାଡ଼ି ସେ ମା'ଙ୍କ ଚରଣ ତଳେ ଶରଣ ଘେନିଲେ ଧନ୍ୟ ହେବ ଜୀବନ ଏହା ଧ୍ରୁବ ସତ୍ୟ ।

ସଭାପତି, ଉତ୍କଳଗ୍ରାମ ସ୍ୱରାଜ୍ୟ
ନେତାଜୀନଗର, ମଧୁପାଟଣା, କଟକ-୧୦



# ରାଜ୍ୟ ସଂଗ୍ରହାଳୟର ସପ୍ତମାତୃକା ମୂର୍ତ୍ତି

**ଡକ୍ଟର ଭାଗ୍ୟଲିପି ମଲ୍ଲ**

ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଦୁର୍ଗାସ୍ତୁତି, ଦୁର୍ଗାସ୍ତବ, ଦୁର୍ଗାପୂଜା ଏବଂ ତନ୍ତ୍ରଶାସ୍ତ୍ର ସମ୍ବଳିତ ଅନେକ ତାଳପତ୍ର ପୋଥି ଉପଲବ୍ଧ ଥିବାବେଳେ ପ୍ରତ୍ନତତ୍ତ୍ୱ ବିଭାଗରେ ଅନେକ ଦୁର୍ଗାମୂର୍ତ୍ତି, ମହିଷାସୁର ମର୍ଦ୍ଦିନୀ ମୂର୍ତ୍ତି ତଥା ଅନେକ ତନ୍ତ୍ରମୂର୍ତ୍ତି (ପ୍ରସ୍ତର ନିର୍ମିତ) ମଧ୍ୟ ସ୍ଥାନିତ ହୋଇଛନ୍ତି । ଏହାଛଡ଼ା ୮ମ ଶତାବ୍ଦୀର ଅନେକ ବ୍ରୋଞ୍ଜନିର୍ମିତ ଦୁର୍ଗା ମୂର୍ତ୍ତି, ମହିଷାମର୍ଦ୍ଦିନୀ ମୂର୍ତ୍ତି ଓ ତନ୍ତ୍ରମୂର୍ତ୍ତି, ଯାହା ବାଣପୁରର ଅଚ୍ୟୁତରାଜପୁରରୁ ଆବିଷ୍କୃତ ହୋଇଥିଲା, ତାହା ଉପଲବ୍ଧ ଅଛି । ମାତ୍ର ଏମାନଙ୍କ ମଧ୍ୟରେ ବୃହଦାକାର ପ୍ରସ୍ତର ନିର୍ମିତ ସପ୍ତମାତୃକାଙ୍କ ମଧ୍ୟରେ ବୈଷ୍ଣବୀ, ବାରାହୀ, ଇନ୍ଦ୍ରାଣୀ ଓ ଚାମୁଣ୍ଡା ମୂର୍ତ୍ତି ଅତି ଗୁରୁତ୍ୱପୂର୍ଣ୍ଣ ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଥିବା ୪ଟି ମୂର୍ତ୍ତି କଳା ମୁଗୁନି ପଥରରେ ନିର୍ମିତ ଏବଂ ଦେବୀମାନେ ବାମ ଜଙ୍ଘରେ ବସାଇଥିବା ୩ଟି ବାଳକଙ୍କର ମଧ୍ୟ ମୁଣ୍ଡ ଭାଙ୍ଗି ଯାଇଛି ଏବଂ ୩ଟି ଯାକ ଶିଶୁ ଦେବୀମାନଙ୍କର ସ୍ତନ ଉପରେ ହାତ ରଖିଛନ୍ତି । ଏହି ମୂର୍ତ୍ତିମାନଙ୍କରୁ ମା'ଯେ ଦୁଗ୍ଧଦାତ୍ରୀ ଏକଥା ଯେମିତି ପ୍ରତିପାଦିତ ହୋଇଛି । ଏହି ପ୍ରକାର 'ଚାମୁଣ୍ଡା' ମୂର୍ତ୍ତି କ୍ୱଚିତ୍ ପରିଦୃଷ୍ଟ ହୋଇଥାଆନ୍ତି । ବୈଷ୍ଣବୀ, ବାରାହୀ, ଇନ୍ଦ୍ରାଣୀ ଏବଂ ଚାମୁଣ୍ଡା ମୂର୍ତ୍ତି କେବଳ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସ୍ଥାନିତ ହୋଇଥିବାବେଳେ ଅନ୍ୟ ସପ୍ତମାତୃକାଙ୍କ ମଧ୍ୟରେ ବ୍ରାହ୍ମଣୀ, ମାହେଶ୍ୱରୀ ଏବଂ କୁମାରୀଙ୍କର ମୂର୍ତ୍ତି ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସ୍ଥାନିତ ହୋଇପାରି ନାହାନ୍ତି । ବିଶେଷତଃ ବାରାହୀ ମୂର୍ତ୍ତିର ଗୋଟିଏ ଭୁଜରେ ମତ୍ସ୍ୟ ଧରିଥିବା ବିଷୟ ଅନ୍ୟ କୌଣସି ସ୍ଥାନରୁ ମିଳେନାହିଁ, ଯାହା ରାଜ୍ୟ ସଂଗ୍ରହାଳୟରେ ସ୍ଥାନିତ ବାରାହୀ ମୂର୍ତ୍ତିଠାରେ ଦେଖିବାକୁ ମିଳେ ।

ଦଶମହାବିଦ୍ୟା ପରି ସପ୍ତମାତୃକାଙ୍କ ସ୍ଥାନ ତନ୍ତ୍ର ଶାସ୍ତ୍ରରେ ଏକ ଉଲ୍ଲେଖନୀୟ ସ୍ଥାନ ଗ୍ରହଣ କରିଛି । ମାତୃକା ଉପାସନା ଓଡ଼ିଶାରେ ପ୍ରାଚୀନ କାଳରୁ ପ୍ରଚଳିତ ଅଛି । ବିଭିନ୍ନ ମାତୃକା ଦେବୀମାନଙ୍କର ଦୁର୍ଗାଙ୍କଠାରୁ ଉତ୍ପତ୍ତି । ବ୍ରାହ୍ମଣୀ, ମାହେଶ୍ୱରୀ, କୁମାରୀ, ବୈଷ୍ଣବୀ, ବାରାହୀ, ଇନ୍ଦ୍ରାଣୀ ଓ ଚାମୁଣ୍ଡା ଶକ୍ତି ଉପାସନାର ପ୍ରମୁଖ ଦେବୀଗଣ । ସେମାନେ ଦୁଷ୍ଟ ନିବାରଣ କାଳରେ ଅସ୍ତ୍ର ଧରି ଶତ୍ରୁସଂହାର କରିଥାଆନ୍ତି । ରାକ୍ଷସ ରକ୍ତବୀଜର ରକ୍ତବିନ୍ଦୁରୁ ଶକ୍ତିଶାଳୀ ରାକ୍ଷସମାନେ ଉତ୍ପନ୍ନ ହୋଇ ଦେବତାଙ୍କ ସହ ଯୁଦ୍ଧବେଳେ ପ୍ରଳୟ ସୃଷ୍ଟି କରୁଥିଲେ । ସେତେବେଳେ ଏହି ମାତୃକାଗଣ ରକ୍ତବୀଜର ପ୍ରତିଟି ରକ୍ତବିନ୍ଦୁକୁ ପାନ କରୁଥିଲେ । ସେମାନେ ତାଙ୍କର ଉପାସକମାନଙ୍କର ମଙ୍ଗଳ ବିଧାନ କରିଥାନ୍ତି ।

ପୁନଶ୍ଚ ବରାହ ପୁରାଣରେ ଏ ସଂପର୍କରେ ମଧ୍ୟ ଏକ ସୁନ୍ଦର ଉପାଖ୍ୟାନ ଦେଖିବାକୁ ମିଳେ । ତାହା ହେଉଛି ପୂର୍ବ କାଳରେ ରୁଦ୍ରଦେବଙ୍କ ସହିତ ଅନ୍ଧକାସୁରର ଯୁଦ୍ଧ ହୋଇଥିଲା । ଶିବ କ୍ରୁଦ୍ଧ ହୋଇ ଅନ୍ଧକାସୁର ବକ୍ଷରେ ତ୍ରିଶୂଳ ଆଘାତ କଲେ । ସେହି ପ୍ରଚଣ୍ଡ ଆଘାତରେ ମଧ୍ୟ ଅନ୍ଧକାସୁରର ମୃତ୍ୟୁ ହେଲା ନାହିଁ । ତା' ବକ୍ଷରୁ ରକ୍ତ କ୍ଷରିତ ହୋଇ ଶହ ଶହ ଅନ୍ଧକାସୁର ସୃଷ୍ଟି ହେଲେ । ଅନ୍ଧକାରୀ ମହାଦେବ ଏହା ଦେଖି ଅନ୍ଧକାସୁରକୁ ତ୍ରିଶୂଳ ଅଗ୍ରରେ ବିଦ୍ଧକରି ରଣାଙ୍ଗନରେ ନୃତ୍ୟ କରିବାକୁ ଲାଗିଲେ ଏବଂ ବ୍ରହ୍ମା, ବିଷ୍ଣୁ କାର୍ତ୍ତିକେୟ, ଇନ୍ଦ୍ର ଆଦି ଦେବଗଣ ରକ୍ତ ବିନ୍ଦୁରୁ ଜାତ ଅନ୍ୟାନ୍ୟ ଅନ୍ଧକାସୁରଙ୍କୁ ବିନାଶ କରିବାକୁ ଉଦ୍ୟତ ହେଲେ । ଏହି ପ୍ରଚଣ୍ଡ ଆକ୍ରମଣ ସତ୍ତ୍ୱେ ଅସୁର ବଂଶ ସମୂଳେ ବିନଷ୍ଟ ହେଲେ ନାହିଁ । ଏହା ଲକ୍ଷ୍ୟ କରି ରୁଦ୍ରଦେବ ଭୟଙ୍କର ରୂପଧାରଣ କଲେ ଏବଂ ତାଙ୍କ ଶରୀରରୁ ଦେଦୀପ୍ୟମାନ ଅଗ୍ନିଶିଖା ନିର୍ଗତ ହେଲା । ସେହି ଅଗ୍ନିଶିଖା ମଧ୍ୟରୁ ତେଜୋମୟୀ ଦେବୀମୂର୍ତ୍ତି ଆବିର୍ଭୂତା ହେଲେ । ତାଙ୍କର ନାମ ହେଲା– ଯୋଗେଶ୍ୱରୀ । ତାହାପରେ ବିଷ୍ଣୁ, ବ୍ରହ୍ମା, ଇନ୍ଦ୍ର, କାର୍ତ୍ତିକେୟ, ଯମ, ବରାହରୂପୀ ବିଷ୍ଣୁ– ପ୍ରତ୍ୟେକ ଗୋଟିଏ

ଗୋଟିଏ ମାତୃକା ସୃଷ୍ଟି କରି ଅସୁରମାନଙ୍କୁ ବିଧ୍ୱଂସ କରିବାକୁ ଲାଗିଲେ ।

ଅନ୍ୟ ଏକ ଆଲୋଚନାରୁ ମଧ୍ୟ ଜଣାଯାଏ ଯେ, ଶରୀରର କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ, ଓ ଅସୂୟାରୁ ସପ୍ତମାତୃକାଙ୍କର ଉତ୍ପତ୍ତି ଯଥା: କାମ- ଯୋଗେଶ୍ୱରୀ, କ୍ରୋଧ- ମାହେଶ୍ୱରୀ, ଲୋଭ- ବୈଷ୍ଣବୀ, ମଦ-ବ୍ରହ୍ମାଣୀ, ମୋହ- କୌମାରୀ, ମାତ୍ସର୍ଯ୍ୟ- ଇନ୍ଦ୍ରାଣୀ, ଅସୂୟା-ବାରାହୀ । ସପ୍ତମାତୃକାଙ୍କ ନାମ 'ଅମରକୋଷ'ରେ ଟିକିଏ ପାର୍ଥକ୍ୟ ଥିବାର ଦେଖାଯାଏ ।

'ବ୍ରାହ୍ମୀ ଚ ବୈଷ୍ଣବୀ ଚୈନ୍ଦ୍ରୀ ରୌଦ୍ରୀ ବାରାହିକୀ ତଥା ।
କୌବେରୀ ଚୈବ କୌମାରୀ ମାତରଃ ସପ୍ତକୀର୍ତ୍ତିତାଃ ।।'

ଅନ୍ୟ ଗୋଟିଏ ମତାନୁସାରେ ମାତୃକା ଆଠ ପ୍ରକାର । ସେମାନେ ହେଉଛନ୍ତି- ବ୍ରାହ୍ମୀ, ମାହେଶ୍ୱରୀ, ଐନ୍ଦ୍ରୀ, ବୈଷ୍ଣବୀ, ବାରାହୀ, କୌମାରୀ, ଚାମୁଣ୍ଡା ଓ ଚର୍ଚ୍ଚିକା । କେଉଁ ସମୟରେ ଏହି ଅଷ୍ଟମାତୃଗଣଙ୍କ ମଧ୍ୟରୁ ଚର୍ଚ୍ଚିକାଙ୍କୁ ବାଦ୍ ଦିଆଯାଇ କେବଳ ସପ୍ତମାତୃକାଙ୍କ ପୂଜା ଦେଶରେ ପ୍ରଚଳନ କରାଗଲା, ତାହାର ସ୍ପଷ୍ଟ ବିବରଣୀ ମିଳେ ନାହିଁ । ଆହୁରି ମଧ୍ୟ ଜଣାଯାଏ ଯେ, କୌବେରୀଙ୍କ ବଦଳରେ ଚାମୁଣ୍ଡା ସ୍ଥାନ ଅଧିକାର କଲେ ।

ସମଗ୍ର ଓଡ଼ିଶାରେ ସପ୍ତମାତୃକା ମୂର୍ତ୍ତି ଅତି ଲୋକପ୍ରିୟ ହୋଇଥିବାର ଜଣାଯାଏ । କେବଳ ଓଡ଼ିଶାରେ କାହିଁକି, ସମଗ୍ର ଭାରତବର୍ଷରେ ବ୍ରାହ୍ମୀ, ମାହେଶ୍ୱରୀ, ଐନ୍ଦ୍ରୀ, ବାରାହୀ, ବୈଷ୍ଣବୀ, କୌମାରୀ ଓ ଚାମୁଣ୍ଡାଙ୍କୁ ସପ୍ତମାତୃକା ରୂପେ ଗ୍ରହଣ କରାଯାଉଛି । ଓଡ଼ିଶାରେ ଏହି ସପ୍ତମାତୃକାଙ୍କର ବିଗ୍ରହ ସମ୍ବଳିତ ମନ୍ଦିର ଏକାଧିକ ସ୍ଥାନରେ ଦେଖିବାକୁ ମିଳେ ।



**ବୈଷ୍ଣବୀ** – 'ଅଂଶୁମଦ୍ଭେଦାଗମ' ଅନୁସାରେ ବୈଷ୍ଣବୀ ଚତୁର୍ହସ୍ତା, ଚାରୁବଦନା, ସୁଲୋଚନା, ପୀତାମ୍ବରା, କିରୀଟ ମୁକୁଟାଯୁକ୍ତା, ଗରୁଡ଼ବାହନା ଅଟନ୍ତି । ତାଙ୍କର ଦୁଇହସ୍ତରେ ଶଙ୍ଖ, ଚକ୍ର, ଆୟୁଧ ରୂପେ ରହିଥାଏ ଏବଂ ଅନ୍ୟ ଦୁଇଟି ହସ୍ତ ଅଭୟ ତଥା ବରଦ ମୁଦ୍ରାରେ ଭୂଷିତା ।

'ଶଙ୍ଖଚକ୍ରଧରା ଦେବୀ ବରଦାଭୟପାଣିନୀ ।
ସୁସ୍ତନା ଚାରୁବଦନା ଶ୍ୟାମାଭା ଚ ସୁଲୋଚନା ।।
ପୀତାମ୍ବରଧରାଦେବୀ କିରୀଟମୁକୁଟାନ୍ୱିତା ।
ରାଜବୃକ୍ଷସମାଶ୍ରିତ୍ୟ ଗରୁଡ଼ଧ୍ୱଜବାହିନୀ ।।
ବୈଷ୍ଣବୀପୀଠଗା ଦେବୀଂ ବିଷ୍ଣୁଭୂଷଣଭୂଷିତା ।।

(ଅଂଶୁମଦ୍ଭେଦାଗମ)

କିନ୍ତୁ 'ବିଷ୍ଣୁଧର୍ମୋତ୍ତର' ଅନୁସାରେ ବୈଷ୍ଣବୀ ଷଡ଼୍‌ଭୁଜା ଅଟନ୍ତି । ତାଙ୍କ ଗ୍ରୀବା ବନମାଳାରେ ବିଭୂଷିତା ଏବଂ ସେ ନିଜର ଭୁଜଗୁଡ଼ିକରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମମାଳା ଧାରଣ କରିଥାନ୍ତି ଏବଂ ତାଙ୍କର ଦୁଇଟି ହସ୍ତ ବରଦ ଓ ଅଭୟ ମୁଦ୍ରାରେ ରହିଥାଏ । ବୈଷ୍ଣବୀ ଗରୁଡ଼ବାହନରେ ଆସୀନା ଅଟନ୍ତି ।

''ବୈଷ୍ଣବୀ ତାର୍କ୍ଷ୍ୟଗା ଶ୍ୟାମା ଷଡ଼୍‌ଭୁଜା ବନମାଳିନୀ ।
ବରଦା ଗଦିନୀଦକ୍ଷେ ବିଭ୍ରତୀ ଚାମ୍ବୁଜସ୍ରଜମ୍ ।
ଶଙ୍ଖଚକ୍ରାଭୟାନ୍ ବାମେ ସା ଚେୟଂ ବିଳସଦ୍‌ଭଜା ।।'

(ବିଷ୍ଣୁଧର୍ମୋତ୍ତର)

ରାଜ୍ୟ ସଂଗ୍ରହାଳୟରେ ଥିବା ବୈଷ୍ଣବୀ ମୂର୍ତ୍ତି ବାମ ଜଙ୍ଘରେ ଏକ ଶିଶୁକୁ ଧାରଣ କରିଛନ୍ତି । ସତେ ଯେମିତି ସନ୍ତାନ ବତ୍ସଳା ମାଆଟିଏ ପୃଥିବୀର ସବୁ ସନ୍ତାନମାନଙ୍କର ସୁରକ୍ଷା, ଦାୟିତ୍ୱ ଏବଂ ମମତାର ଗାଢ଼ ଆଶ୍ଳେଷରେ ବାନ୍ଧି ଦେଇଛନ୍ତି । ଦେବୀଙ୍କର ୪ଟି ହାତ ମଧ୍ୟରୁ ଉପର ଦୁଇଟି ହାତରେ ଶଙ୍ଖ ଏବଂ ଚକ୍ର ଧାରଣ କରିଥିବାବେଳେ, ତଳ ଡାହାଣ ହାତଟି କହୁଣୀ ପାଖରୁ ଭାଙ୍ଗିଯାଇଛି । ଦେବୀଙ୍କର ବିଭିନ୍ନ ଅଳଙ୍କାରରେ ବିଭୂଷିତା ।

**ଇନ୍ଦ୍ରାଣୀ–** ଐନ୍ଦ୍ରୀ ବା ଇନ୍ଦ୍ରାଣୀ ଦେବରାଜ ଇନ୍ଦ୍ରଙ୍କର ଶକ୍ତି ରୂପେ ପ୍ରସିଦ୍ଧା । 'ଅଂଶୁମଦ୍ଭେଦାଗମ'ର ବର୍ଣ୍ଣନା ଅନୁସାରେ ଐନ୍ଦ୍ରୀ ଗଜାରୂଢ଼ା, ଚତୁର୍ହସ୍ତା ଓ ତ୍ରିନେତ୍ରା ଅଟନ୍ତି । ତାଙ୍କର ଦୁଇ ହସ୍ତରେ ଶକ୍ତି ଏବଂ ବଜ୍ର ଆୟୁଧ ରୂପେ ରହିଥାଏ ଏବଂ ଅନ୍ୟ ଦୁଇଟି ହସ୍ତ ବରଦ ଓ ଅଭୟ ମୁଦ୍ରାରେ ଭକ୍ତର ମନସ୍କାମନା ପୂରଣ ଲାଗି ଉଦ୍ୟତ ହୋଇଥାଏ ।



◆◆◆

ଦେବୀ ଇନ୍ଦ୍ରାଣୀ କଳ୍ପବୃକ୍ଷ ମୂଳରେ ଆସୀନା ହୋଇଥାନ୍ତି । ତାଙ୍କ ଦେହ ରକ୍ତବର୍ଣ୍ଣ ଏବଂ ସେ କିରୀଟ ସମେତ ନାନାପ୍ରକାର ଭୂଷଣରେ ଭୂଷିତା ହୋଇଥା'ନ୍ତି ।

'ଚତୁର୍ଭୁଜା ତ୍ରିନେତ୍ରା ଚ ରକ୍ତବର୍ଣ୍ଣା କିରୀଟିନୀ ।
ଶକ୍ତିବଜ୍ରଧରା ଚୈବ ବରଦାଭୟପାଣିନୀ ।
ସର୍ବଭରଣସଂଯୁକ୍ତା ଗଜଧ୍ୱଜସବାହିନୀ ।
ଇନ୍ଦ୍ରାଣୀ ଚୈବ ବିଖ୍ୟାତା କଳ୍ପଦ୍ରୁମସମାଶ୍ରିତା' । (ଅଂ. ଭେ.)

'ବିଷ୍ଣୁଧର୍ମୋତ୍ତର' ଗ୍ରନ୍ଥରେ ଇନ୍ଦ୍ରାଣୀଙ୍କ ବର୍ଣ୍ଣନାରେ କେତେକ ବିଶେଷ ତାରତମ୍ୟ ଥିବାର ଦେଖାଯାଏ । ସେ ସହସ୍ରାକ୍ଷ ଇନ୍ଦ୍ରଙ୍କ ପରି ସହସ୍ର ନୟନରେ ବିଭୂଷିତା । ତାଙ୍କର ଛଅଗୋଟି ଭୁଜ ଅକ୍ଷସୂତ୍ର, ବଜ୍ର, କଳଶ, ପାତ୍ର, ଅଭୟ ଓ ବରଦ ମୁଦ୍ରା ଦ୍ୱାରା ମଣ୍ଡିତ ହୋଇଥାଏ । ତାଙ୍କ ଶରୀରର ବର୍ଣ୍ଣ ସୁବର୍ଣ୍ଣ ସଦୃଶ ଏବଂ ସେ ଗଜବାହନରେ ଆରୋହଣ କରିଥାନ୍ତି ।

'ଐନ୍ଦ୍ରୀ ସହସ୍ରଦୃକ୍ ସୌମ୍ୟା ହେମାଭାଗଜସଂସ୍ଥିତା
ବରଦା ସୂତ୍ରିଣୀଂ ବଜ୍ରଂ ବିଭ୍ରତ୍ୟୁର୍ଦ୍ଧ୍ୱଂ ତୁ ଦକ୍ଷିଣେ ।।
ବାମେ ତୁ କଳଶଂ ପାତ୍ରଂ ତ୍ୱଭୟଂ ତ୍ୱଦଧଃକରେ' ।

(ବିଷ୍ଣୁଧର୍ମୋତ୍ତର)

ଅନ୍ୟ କେତେକ ଗ୍ରନ୍ଥର ମତାନୁସାରେ ଐନ୍ଦ୍ରୀ ଦ୍ୱିଭୁଜା, ଦ୍ୱିନେତ୍ରା ରୂପେ ବର୍ଣ୍ଣିତ ହୋଇଅଛନ୍ତି । ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଥିବା ମୂର୍ତ୍ତିଟି ଅନୁରୂପ ଭାବରେ ଏକ ଶିଶୁକୁ ବାମ ଜଙ୍ଘରେ ଉପବେଶନ କରାଇଛନ୍ତି । ଦେବୀଙ୍କର ମୁଖମଣ୍ଡଳ ଶାନ୍ତ, ସ୍ନିଗ୍ଧ ଏବଂ ମମତାସିକ୍ତ । ଦେବୀଙ୍କର ୪ଟି ହାତ ମଧ୍ୟରୁ ଉପର ଦୁଇଟି ହାତରେ ଡମ୍ବରୁ ଓ ବଜ୍ର ଧାରଣ କରିଛନ୍ତି । ଡାହାଣ ହାତଟି କହୁଣୀ ପାଖରୁ ଭାଙ୍ଗିଯାଇଛି । ବାମ ଜଙ୍ଘ ଉପରେ ଶିଶୁଟିକୁ ବସାଇ ବାମ ହାତରେ କୋଳାଗ୍ରତ କରିଛନ୍ତି । ସୁନ୍ଦର ଅଳଙ୍କାର ଓ ଉପବୀତରେ ଦେବୀ ସୁଶୋଭିତା ।

**ବାରାହୀ–** ଦେବୀ ବାରାହୀଙ୍କର ରୂପ ପ୍ରଳୟ କାଳୀନ ମେଘସଦୃଶ ଅତ୍ୟନ୍ତ ଭୟଙ୍କର । ତାଙ୍କର ମୁଖ ବରାହ ସଦୃଶ । ସେ ବରାହ ରୂପୀ ବିଷ୍ଣୁଙ୍କର ଶକ୍ତି ରୂପେ ସୁପରିଚିତା । ତାଙ୍କର ମସ୍ତକରେ କରଣ୍ଡ ଅର୍ଥାତ୍ ଶୈବାଳର ମୁକୁଟ ଏବଂ ଶରୀରରେ ପୋହଳାମାଳ ଶୋଭା ପାଉଥାଏ । ତାଙ୍କର ଚାରିଗୋଟି ହସ୍ତ । ସେ ଦୁଇ ହସ୍ତରେ ହଳ ଲଙ୍ଗଳ ଓ ଶକ୍ତି ଆୟୁଧ ରୂପେ ଧାରଣ କରିଥାନ୍ତି, ଅନ୍ୟ ଦୁଇଟି ହସ୍ତ ବରଦ ଓ ଅଭୟ ମୁଦ୍ରାରେ ରହିଥାଏ ।

'ବରାହବକ୍ରସଦୃଶା ପ୍ରଳୟାମ୍ବୁଦସନ୍ନିଭା
କରଣ୍ଡମୁକୁଟୋପେତା ବିଦ୍ରୁମାଭରଣାନ୍ୱିତା
ହଳଂ ଚ ବରଦଂ ସବ୍ୟେ ବାମେ ଅଭୟଶକ୍ତିକେ
କଳ୍ପଦ୍ରୁମଂ ସମାଶ୍ରିତ୍ୟ ଗଜଧ୍ୱଜସବାହିନୀ
ବାରାହୀ ଚେତି ବିଖ୍ୟାତା ନାମ୍ନାସର୍ବଫଳପ୍ରଦା' । (ଅଂ.ଭେ.)

'ରୂପମଣ୍ଡନ' ଅନୁସାରେ ବାରାହୀ ଦେବୀଙ୍କର ଚାରିଗୋଟି ହସ୍ତରେ ଘଣ୍ଟା, ଚାମର, ଗଦା ଓ ଚକ୍ର ଆୟୁଧ ରୂପେ ଅବସ୍ଥିତ ଏବଂ ସେ ଦାନବେନ୍ଦ୍ରଙ୍କ ସଂହାରକାରିଣୀ ରୂପେ ଅତ୍ୟନ୍ତ ଭୀଷଣ ସ୍ୱରୂପା ଅଟନ୍ତି । ତାଙ୍କର ମୁଖାକୃତି ବରାହ ସଦୃଶ ଏବଂ ସେ ମହିଷ ଉପରେ ଆରୋହଣ କରିଥା'ନ୍ତି ।



'ବାରାହୀ ତୁ ପ୍ରବକ୍ଷ୍ୟାମି
ମହିଷୋପରି ସଂସ୍ଥିତା
ବରାହସଦୃଶୀ ଦେବୀ
ଘଣ୍ଟାଚାମରଧାରିଣୀ
ଗଦାଚକ୍ରଧରା ତଦ୍‌ବଦ୍ ଦାନବେନ୍ଦ୍ରବିଘାତିନୀ
ଲୋକାନାଂ ଚ ହିତାର୍ଥାୟ ସର୍ବବ୍ୟାଧିବିନାଶିନୀ । (ରୂପମଣ୍ଡନ)

'ବିଷ୍ଣୁ ଧର୍ମୋତ୍ତର' ଅନୁସାରେ ବାରାହୀ ଷଡଭୁଜା ଏବଂ ତାଙ୍କ ଭୁଜଗୁଡ଼ିକରେ ଦଣ୍ଡ, ଖଡ୍‌ଗ, ଖେଟକ, ପାଶ, ଆୟୁଧ ରୂପେ ମଣ୍ଡିତ ହୋଇଥାଏ ଏବଂ ଅନ୍ୟ ଦୁଇଟି ଭୁଜବରଦ ଓ ଅଭୟ ମୁଦ୍ରାରେ ଆସୀନ ।

'କୃଷ୍ଣବର୍ଣ୍ଣା ତୁ ବାରାହୀ ଶୂକରାସ୍ୟା ମହୋଦରୀ ।
ବରଦା ଦଣ୍ଡିନୀ ଖଡ୍‌ଗଂ ବିଭ୍ରତୀ ଦକ୍ଷିଣେ ସଦା ।।
ଖେଟପାଶାଭୟାନବାମେ ଶୈବ ଚାପି ଲସଦ୍‌ଭୁଜା ।

(ବିଷ୍ଣୁଧର୍ମୋତ୍ତର)

'ଦେବୀ ପୁରାଣ'ର ବର୍ଣ୍ଣନାରୁ ଜଣାଯାଏ ଯେ, ଦେବୀ ବାରାହୀ ଗୋଟିଏ ଭୁଜରେ 'ଦଣ୍ଡ' ଧାରଣ କରି, ଅନ୍ୟ ଗୋଟିଏ ହସ୍ତରେ ନରକପାଳରେ ରୁଧିର ପାନ କରୁଥା'ନ୍ତି ।

'ବୈବସ୍ୱତୀ ପ୍ରକର୍ତ୍ତବ୍ୟା ଦୁର୍ଦ୍ଧରା ମହିଷୋପରି ।
ଶୂକାରାସ୍ୟା କପାଳେ[illegible]କ୍ ପିବନ୍ତୀ ଦଣ୍ଡଧାରିଣୀ' ।

'ପୂର୍ବକାରଣାଗମ' ଶୀର୍ଷକ ଗ୍ରନ୍ଥରେ ଦେବୀ ବାରାହୀଙ୍କ ଆକୃତିର ବର୍ଣ୍ଣନାରେ ସାମାନ୍ୟ ଭେଦ ପରିଲକ୍ଷିତ ହୁଏ । ତାଙ୍କ ପାଦରେ ନୁପୂର ଏବଂ ବକ୍ଷରେ ନାନା ପ୍ରକାର ଅଳଙ୍କାର ଶୋଭାପାଏ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଥିବା ବାରାହୀ ମୂର୍ତ୍ତିଟି ମଧ୍ୟ ଠିକ୍ ପୂର୍ବୋକ୍ତ ଦୁଇଟି ମୂର୍ତ୍ତିଭଳି ଏକ ସନ୍ତାନକୁ ବାମ ଜଙ୍ଘରେ ବସାଇଛନ୍ତି ଏବଂ ମୂର୍ତ୍ତିଟି ଅତ୍ୟନ୍ତ ସନ୍ତାନ ବତ୍ସଳା ମନେ ହୁଅନ୍ତି । ଦେବୀଙ୍କର ୪ଟି ହସ୍ତ ମଧ୍ୟରୁ ୩ଟି ହସ୍ତ ସଂପୂର୍ଣ୍ଣ ଅକ୍ଷୁଣ୍ଣ ଥିବାବେଳେ ଡାହାଣ ହାତର ପାପୁଲିର ଅଙ୍ଗୁଳିଗୁଡ଼ିକ ଭାଙ୍ଗିଯାଇଛି । ଉପର ଡାହାଣ ହାତରେ ମାଛଟିଏ ଧରିଥିବା ବେଳେ ଉପର ବାମ ହାତରେ କ୍ଷୁଦ୍ର ପାତ୍ରଟିଏ ଧରିଛନ୍ତି । ସମ୍ଭବତଃ ରକ୍ତବୀଜର ରକ୍ତପାନ ଉଦ୍ଦେଶ୍ୟରେ ଏହାକୁ ଦେବୀ ଧାରଣ କରିଛନ୍ତି । ବାମପାଦଟି ସଂପୂର୍ଣ୍ଣ ନଷ୍ଟ ହୋଇଯାଇ ଥିବାବେଳେ ଡାହାଣ ପାଦର ଆଙ୍ଗୁଳିଗୁଡ଼ିକ ନଷ୍ଟ ହୋଇଯାଇଛି । ଅନନ୍ୟ ଶୈଳୀରେ ଦେବୀଙ୍କର ବେଶ ସଜ୍ଜିତ ହୋଇଛି । ମୁଖମଣ୍ଡଳ ବରାହାକୃତୀ ହୋଇଥିବାବେଳେ ଶେଷ ଅଂଶ ଭଗ୍ନ ଅବସ୍ଥାରେ ଅଛି ।



**ଚାମୁଣ୍ଡା** – ସପ୍ତମାତୃକାଙ୍କ ମଧ୍ୟରେ 'ଚାମୁଣ୍ଡା' ଅତି ଭୀଷଣାକୃତିର ଦେବୀ ଅଟନ୍ତି । ତାଙ୍କ ଧାନରୁ ହିଁ ଚାମୁଣ୍ଡାଙ୍କର ଭୀଷଣ ମୂର୍ତ୍ତି ସମ୍ବନ୍ଧରେ ସହଜରେ ଧାରଣା କରାଯାଇପାରେ ।

'ଚତୁର୍ଭୁଜା ତ୍ରିନେତ୍ରା ଚ  
ରକ୍ତୋବର୍ଣ୍ଣୋର୍ଦ୍ଧ୍ୱ  
କେଶିକା ।  
କପାଳଶୂଳହସ୍ତା ଚ  
ବରଦାଭୟପାଣିନୀ ॥  
ଶିରୋମାଳୋପବୀତା ଚ ପଦ୍ମପୀଠୋପରି ସ୍ଥିତା ।  
ବ୍ୟାଘ୍ରଚର୍ମାମ୍ବରଧରା ବଟବୃକ୍ଷସମାଶ୍ରିତା ।  
ବାମପାଦସ୍ଥିତା ସର୍ବା ସବ୍ୟପାଦ ପ୍ରଳମ୍ବିତା' ॥

(ଅଂଶୁମଦ୍ ଭେଦାଗମ)

ଏଥିରୁ ଜଣାଯାଏ ଯେ, ଦେବୀ 'ଚାମୁଣ୍ଡା' ଚତୁର୍ହସ୍ତା, ତ୍ରିନେତ୍ରା, ରକ୍ତବର୍ଣ୍ଣା, ଊର୍ଦ୍ଧ୍ୱକେଶା, ନରକପାଳ ଓ ଶୂଳହସ୍ତା ଅଟନ୍ତି । ତାଙ୍କର ଅନ୍ୟ ଦୁଇହାତ ବରଦ ତଥା ଅଭୟ ମୁଦ୍ରାରେ ରହିଥାଏ । ସେ ମୁଣ୍ଡମାଳାକୁ ଯଜ୍ଞୋପବୀତ ପରି ଧାରଣ କରିଥାନ୍ତି । ଦେବୀ ଚାମୁଣ୍ଡା ବ୍ୟାଘ୍ରଚର୍ମ ପରିଧାନ କରି ବଟବୃକ୍ଷକୁ ଆଶ୍ରୟ କରିଥିବାର ଦେଖାଯାଏ । ତାଙ୍କର ବାମପାଦଟି ପଦ୍ମାସନ ଉପରେ ଏବଂ ଦକ୍ଷିଣ ପାଦ ତଳକୁ ଲମ୍ବିଥାଏ ।

କିନ୍ତୁ ସର୍ବତ୍ର ମିଳୁଥିବା ଚାମୁଣ୍ଡା ମୂର୍ତ୍ତିର ମୂର୍ତ୍ତିତତ୍ତ୍ୱ ପ୍ରତି ଦୃଷ୍ଟି ଦେଲେ 'ଅଂଶୁମଦ୍ ଭେଦାଗମ' ସ୍ଥିତ ଧ୍ୟାନ ଅନୁସାରେ ମୂର୍ତ୍ତି ପରିଦୃଷ୍ଟ ହୁଏ ନାହିଁ । ତେଣୁ 'ବିଷ୍ଣୁଧର୍ମୋତ୍ତର' ରେ ପ୍ରଦତ୍ତ 'ଚାମୁଣ୍ଡା'ଙ୍କ ମୂର୍ତ୍ତିଲକ୍ଷଣ ସମ୍ବନ୍ଧରେ ବିଚାର କରାଯାଇପାରେ ।

'ଚାମୁଣ୍ଡା ପ୍ରେତଗା ରକ୍ତା ବିକୃତାସ୍ୟାହିଭୂଷଣା ।  
ଦଂଷ୍ଟୋଗ୍ରା କ୍ଷୀଣଦେହା ଚ ଗର୍ତ୍ତାକ୍ଷୀ ଭୀମରୂପିଣୀ ॥  
ଦିଗ୍‌ବାହୁ କ୍ଷାମ କୁକ୍ଷିଶ୍ଚ ମୂଷଳଂ କବଚଂ ଶରଂ ।  
ଅଙ୍କୁଶଂ ବିଭ୍ରତୀ ଖଡ୍‌ଗଂ ଦକ୍ଷିଣେ ତ୍ୱଥ ବାମତଃ ।  
ଖେଟଂ ପାଶଂ ଧନୁର୍ଦଣ୍ଡଂ କୁଠାରଂ ଚେତି ବିଭ୍ରତୀ ॥

(ବିଷ୍ଣୁଧର୍ମୋତ୍ତର)

ଦଶଭୂଜା ମୂଷଳ, କବଚ, ଶର, ଅଙ୍କୁଶ, ଖଡ୍‌ଗ ଆଦି ଆୟୁଧ ଧାରିଣୀ, ପ୍ରେତାସନା ଉଗ୍ରଦ୍ରଂଷ୍ଟା ଚାମୁଣ୍ଡା ମୂର୍ତ୍ତି ମଧ୍ୟ ସାଧାରଣତଃ ଦେଖାଯା'ନ୍ତି ନାହିଁ । କିନ୍ତୁ 'ବିଷ୍ଣୁଧର୍ମୋତ୍ତର' ଅନୁସାରେ ବର୍ଣ୍ଣିତ ଚାମୁଣ୍ଡା ମୂର୍ତ୍ତି ଯେପରି ବିରଳ, 'ଅଂଶୁମଦ୍ ଭେଦାଗମ' ଅନୁସାରେ ବର୍ଣ୍ଣିତ ମୂର୍ତ୍ତି ମଧ୍ୟ ଅନୁରୂପ ବିରଳ ।

ମୟୂରଭଞ୍ଜ ରାଜବଂଶର କୁଳଦେବୀ ଖିଚିଂରେ ପ୍ରତିଷ୍ଠିତା 'କୀଚକେଶ୍ୱରୀ', ଭୁବନେଶ୍ୱରରେ ପୂଜିତା 'କାତ୍ୟାୟନୀ' ତଥା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତା 'ଚାମୁଣ୍ଡା' ବାସ୍ତବିକ୍ ଅତ୍ୟନ୍ତ ଭୟାବହ ମୂର୍ତ୍ତି । ପୂର୍ବୋକ୍ତ ଦୁଇସ୍ଥାନରେ ପୂଜିତା ମୂର୍ତ୍ତି ଅପେକ୍ଷା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତା ମୂର୍ତ୍ତିଟି ମୂର୍ତ୍ତିତତ୍ତ୍ୱର ଦୃଷ୍ଟିକୋଣରୁ ଅତ୍ୟନ୍ତ ଉପାଦେୟ ବିଗ୍ରହ କେବଳ ମୂର୍ତ୍ତିତତ୍ତ୍ୱ ର ଦୃଷ୍ଟିକୋଣରୁ ନୁହେଁ, ଶରୀରବିଜ୍ଞାନ ଦୃଷ୍ଟିରୁ ମାନବ ଶରୀରରେ ଥିବା ଅସ୍ଥି, ଶିରାପ୍ରଶିରା ଆଦି ଉକ୍ତ ମୂର୍ତ୍ତିରେ ନିଖୁଣ ଭାବରେ ଖୋଦିତ ହୋଇପାରିଛି । ସେହି ମୂର୍ତ୍ତିଟି ଚତୁର୍ହସ୍ତା, ନିର୍ମାଂସା, କୋଟରାକ୍ଷା, ଉଗ୍ରଦଂଷ୍ଟ୍ରା, ନୃମୁଣ୍ଡମାଳିନୀ, ଖର୍ପରଧାରିଣୀ ଓ ଶବାସନା ଅଟନ୍ତି । ଦେବୀ ଭୟଙ୍କର ମୁଦ୍ରାରେ ଉପବେସିତା । ଉପର ଦୁଇଟି ବାମ ଓ ଡାହାଣ ହାତ କାନ୍ଧପାଖରୁ ଭାଙ୍ଗିଯାଇଛି । ତଳ ଡାହାଣ ହାତ ପାପୁଲୀ ପାଖରୁ ଭାଙ୍ଗି ଯାଇଥିବାବେଳେ ଦେବୀ ତଳ ବାମ ହାତରେ ନରମୁଣ୍ଡ ଧାରଣ

କରିଛନ୍ତି । ନରମୁଣ୍ଡ ଶୋଭିତା ଦେବୀଙ୍କର ସମସ୍ତ ଶିରାପ୍ରଶିରା ଦୃଶ୍ୟମାନ ହେଉଥିବାବେଳେ ତଣ୍ଟିର ଘଣ୍ଟିକା ମଧ୍ୟ ଅତି ସ୍ପଷ୍ଟଭାବରେ ପ୍ରକଟିତ । ସପ୍ତମାତୃକାଙ୍କ ମଧ୍ୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ମୂର୍ତ୍ତିଟି ହେଉଛନ୍ତି 'ଚାମୁଣ୍ଡା ମୂର୍ତ୍ତି' । ଏହା ରାଜ୍ୟ ସଂଗ୍ରହାଳୟର ପ୍ରତ୍ନତତ୍ତ୍ୱ ଗ୍ୟାଲେରୀରେ ପ୍ରଦର୍ଶିତ କରାଯାଇଛି । ଏହି ମୂର୍ତ୍ତିଟିର ଗଠନ ଶୈଳୀ ଯେତିକି ଭୟଙ୍କର ସେତିକି ସୂକ୍ଷ୍ମ କାରୁକାର୍ଯ୍ୟ ବିମଣ୍ଡିତ । ବାମପାଦର ଆଙ୍ଗୁଳିଗୁଡ଼ିକ ନଷ୍ଟ ହୋଇଯାଇଛି । ଦେବୀଙ୍କର ଆଖି ଦୁଇଟିରୁ ସତେ ଯେପରି ଅଗ୍ନି ବର୍ଷା ହେଉଛି ।

ଦେବୀ ଦୁର୍ଗାଙ୍କର ବିଭିନ୍ନ ଶକ୍ତିଙ୍କ ମଧ୍ୟରୁ ସପ୍ତମାତୃକା ଅନ୍ୟତମ । ଏହି ସପ୍ତମାତୃକା ଦେବୀମାନେ ପୃଥିବୀର କଲ୍ୟାଣସାଧନ ନିମନ୍ତେ ସୃଷ୍ଟି ହୋଇଛନ୍ତି । ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ପ୍ରଦର୍ଶିତ ସପ୍ତମାତୃକାଙ୍କ ମଧ୍ୟରୁ ଉପରୋକ୍ତ ଚାରିମାତୃକା ଗବେଷକ ଓ ଦର୍ଶକମାନଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ ।

ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

**ସହାୟକ ଗ୍ରନ୍ଥ :-**

୧. ଭାରତୀୟ ତନ୍ତ୍ରଶାସ୍ତ୍ର - ଏକ ଦିଗ୍‌ଦର୍ଶନ - ଶ୍ରୀ ନୀଳମଣି ମିଶ୍ର

୨. ଦଶମହାବିଦ୍ୟା - ଡଃ ହରିଶ୍ଚନ୍ଦ୍ର ଦାଶ

୩. ଶକ୍ତିବାଦ - ଗଣେଶ ପ୍ରସାଦ ପରିଜା

4. Shakti Cult and Tara - Dr. K. K. Dasgupta

5. Tantra in mystic and scientific basis - Dr. L. P. Singh

# କ୍ରାଂତି

ରକ୍ଷକ ନାୟକ

ଅସଂଖ୍ୟ ଆର୍ତ୍ତି, ଅପ୍ରମେୟ, ଆକୁଳତା
ଅସମାହିତ ପ୍ରଶ୍ନବାଚୀ, ଅଲଂଘ୍ୟ ଭ୍ରାଂତି
ସବୁକୁ ଅତିକ୍ରମ କରିବାକୁ
ଆମେ ନିଜକୁ କରିଛୁ ପ୍ରାର୍ଥନା
ଆମ ବେଦନାରୁ ଜନ୍ମନେବ କ୍ରାଂତିକନ୍ୟା ।
ଆମେ ଦେବୁ ଆମର ଅସ୍ତ୍ର, ଶସ୍ତ୍ର
ଆୟ ଅଳଂକାର ଅବଶିଷ୍ଟ ଆୟୁଷ
ଆମେ ଦେବୁ ଆମର ସବୁତକ ଶକ୍ତି
ସେ ଜନ୍ମ ନେବ ଆମ ଦୁଃଖର ବହ୍ନିରୁ
ସେ ଅବତରିବ ଆମ ଅଂଧାରରୁ



ଫର୍ଚ୍ଚା ହେବ ଚର୍ତୁପାର୍ଶ୍ୱ
ଅପସରିଯିବ ଆଶ୍ୱିନ ଆଶଂକା
ଉଜ୍ଜ୍ୱଳି ଉଠିବ ଆମ ଭାଗ୍ୟ ରେଖା ।
ଅପେକ୍ଷା ଯୁଗ ଯୁଗର
ସେ ନିଶ୍ଚୟ ଆସିବ,
ସେଇ ଅପେକ୍ଷାରେ ଆମେ କାଳ କାଳ
ନତ ଯାନୁ ଊର୍ଦ୍ଧ୍ୱ ମୁଖ
କେବେ ସେ ଆସିବ ?
ଆଉ ଡେରି ହେଲେ ହୁଏତ
ଆବାହନ କରିବାକୁ
ଜଣେ ବି ନଥିବ ।

ପାଇକ ସାହି, ସୋରଭା, ନୟାହାଟ,
ପୁରୀ-୭୫୨୧୦୭

# ଅସୁରେଶ୍ୱର ଶ୍ରୀଚଣ୍ଡୀ

**ପ୍ରମୋଦ କୁମାର ନାୟକ**

ସର୍ବଭାରତୀୟ ଧର୍ମଧାରାରେ ମାତୃ ଶକ୍ତିର ଆରାଧନା ସୁପ୍ରାଚୀନ । ବିଶ୍ୱ ସୃଷ୍ଟିରେ ମାନବ ସୃଷ୍ଟିର ଆଦ୍ୟ ଉନ୍ମେଷ କାଳରୁ ମାତୃ ଶକ୍ତିର ଆରାଧନା ଅବ୍ୟାହତ ରହିଛି । ଯାହାର ପ୍ରମାଣ ପ୍ରତ୍ନତାତ୍ତ୍ୱିକଖନନ, ବିଜ୍ଞଗବେଷକ ବୃନ୍ଦଙ୍କ ଅନୁସନ୍ଧାନ ରିପୋର୍ଟ ତଥା ମାତୃ ଶକ୍ତିର ପ୍ରତ୍ୟକ୍ଷ ପ୍ରେରଣା ଲାଭ କରିଥିବା କବି କୋବିଦବୃନ୍ଦ ଅମର ଲେଖନୀ ନିସୃତ ମାତୃବନ୍ଦନା ତଥା କିମ୍ବଦନ୍ତୀରୁ ମିଳିଥାଏ । ଏହି ଦିବ୍ୟ ଦୃଷ୍ଟିରୁ ମାଟିର ମହାକବି ''ସାରଳା ଦାସ''ଙ୍କ ''ସର୍ବମଙ୍ଗଳା ସ୍ତୁତି'' ତଥା ସ୍ଥାନୀୟ କବି ଓ କିମ୍ବଦନ୍ତୀଙ୍କୁ ଆଧାର କରି ଶ୍ରୀଚଣ୍ଡୀଙ୍କ ଅଧିଷ୍ଠାନ କ୍ଷେତ୍ର ବର୍ଣ୍ଣନା ନିମିତ୍ତ ଏକ କ୍ଷୀଣ ପ୍ରୟାସ ମାତ୍ର ।

ଓଡ଼ିଶାର କେନ୍ଦ୍ରାପଡ଼ା ଜିଲ୍ଲାରେ ଅସୁରେଶ୍ୱର ଶ୍ରୀଚଣ୍ଡୀଙ୍କ ଭବ୍ୟ ମନ୍ଦିର ଅବସ୍ଥିତ । ଏହି ପୁଣ୍ୟ ପୀଠର ଉତ୍ତରରେ ଲୁଣାନଦୀ ଓ ଦକ୍ଷିଣରେ ଚିତ୍ରୋତ୍ପଳା ନଦୀ ପ୍ରବାହିତ । ଏହି ପୁଣ୍ୟ ସଲିଳା ନଦୀ ଦ୍ୱୟର ତ୍ରିକୋଣ ଭୂମିରେ ଶ୍ରୀଚଣ୍ଡୀଙ୍କ ଅଧିଷ୍ଠାନ କ୍ଷେତ୍ର ଅସୁରେଶ୍ୱର ନାମରେ ମହିମାବନ୍ତ । ଏହି ପୁରାଣ ପ୍ରସିଦ୍ଧ ଦେବୀଙ୍କ ନାମ ଶ୍ରୀଚଣ୍ଡୀ ଓ ହରଚଣ୍ଡୀ ନାମରେ ପରିଚିତ ।

ପୁରାଣ ପ୍ରସିଦ୍ଧ ହରଚଣ୍ଡୀଙ୍କ ପୀଠରେ ଅଛନ୍ତି ଶ୍ରୀଅସୁରେଶ୍ୱର ମହାଦେବ ଓ ଅଷ୍ଟଶମ୍ଭୁ । ଦିବ୍ୟ ଦୃଷ୍ଟିରୁ, ଏହି ପୁଣ୍ୟପୀଠକୁ ଅସୁରେଶ୍ୱର କ୍ଷେତ୍ର କୁହାଯାଏ ।

ପୁରାଣଶାସ୍ତ୍ର ସିଦ୍ଧାନ୍ତାନୁସାରେ ଏହି ପୁଣ୍ୟ କ୍ଷେତ୍ର ଶ୍ରେଷ୍ଠ ତନ୍ତ୍ର ପୀଠର ମାନ୍ୟତା ଲାଭ କରି ଅଛି । ଦେବୀ ହରଚଣ୍ଡୀଙ୍କ ପ୍ରାଚୀନତା ମାଟିର ମହାକବି ସାରଳା ଦାସଙ୍କ ସର୍ବମଙ୍ଗଳା ସ୍ତୁତିରୁ ଜଣାଯାଏ । କବିଙ୍କ ଭାଷାରେ–

''ଝଙ୍କଡ଼େ ରହିଲୁ ନାମ ଶାରଳା ବୋଲାଇ
କାକଟପୁରେ ରହିଲୁ ମଙ୍ଗଳା ଯେ ତୁହି ।।
ଲହଲହ ଜିହ୍ୱା ମା ଗୋ ସିନ୍ଦୂରେ ମୁଖମଣ୍ଡି
କୋଣାରକେ ରହିଲୁ ମା'ଅଭୟା ରାମଚଣ୍ଡୀ ।।
ପୁରୁଷୋତ୍ତମେ ରହିଲୁ ବିମଳା ବୋଲାଇ
ବାଙ୍କିରେ ରହିଲୁ ବିମଳା ବୋଲାଇ ।।
ସମ୍ବଲପୁରେ ରହିଲୁ ନାମ ସମଲାଇ
ପଶ୍ଚିମେ ରହିଲୁ ମାତ ନାମ ହିଙ୍ଗୁଳାଇ ।।
ଭୁବନେଶ୍ୱରେ ରହିଲୁ ଗଉରୀ ବୋଲାଇ
ବାଣପୁରେ ରହିଲୁ ମା' ନାମ ଭଗବତୀ ।।
ସକଳ ଅମରେ ତୋତେ କରନ୍ତି ଯେ ସ୍ତୁତି
ଉତ୍ତର ଦିଗେ ରହିଲୁ ଚଣ୍ଡୀ ନାମ ବହି ॥

ତଦନୁରୂପ ବାଳକବି ଗାଇ ଉଠିଛନ୍ତି–

''ଜୟ ତୁ ବୃଦ୍ଧ ନଦୀ ତଟରେ
ବିହାରିଣୀ ପ୍ରାଚୀ ଉତ୍ତରକୂଳେ ବାସ

ଜୟ ବଇତରଣୀ ତଟରେ
ବିହାରିଣୀ ଜୟଶ୍ରୀ ବକ୍ରଦୁର୍ଗେ ବାସ ଗୋ

ଭଗବତୀ ଜୟ ସମଲେ ସମଲାଇ
ଜୟଶ୍ରୀଚଣ୍ଡୀ କର ତ୍ରାହି

ଜୟ ବାଣପୁରରେ ଭଗବତୀ ନାମରେ
ଜୟ ଶ୍ରୀକ୍ଷେତ୍ର ବିମଳାଇ ଗୋ''

ଏତଦ୍ ଭିନ୍ନ ''ଭଗବତୀ ଜଣାଣ''ରେ ବର୍ଣ୍ଣିତ ଅଷ୍ଟପୀଠ ମଧ୍ୟରେ ହରଚଣ୍ଡୀଙ୍କ ନାମ ରହିଥିବାରୁ ଶ୍ରୀହରଚଣ୍ଡୀଙ୍କ ପୀଠ ଯେ ଅତି ପ୍ରାଚୀନ ଏଥିରେ ସନ୍ଦେହ ନାହିଁ ।

କିମ୍ବଦନ୍ତୀ କହେ, ସୁଦୂର ଅତୀତରେ କୃଷ୍ଣଚୂଡ଼ା ବଳଦେବ ପ୍ରବଳ ପ୍ରତାପୀ କନ୍ଦରାସୁରକୁ ଆକାଶ ମାର୍ଗରେ ନିହତ କରିଥିଲେ । ଏହି ଦୁର୍ଦ୍ଧର୍ଷ ଅସୁରକୁ ବଳଦେବ ଦ୍ୱିଧା ଭାଗରେ ବିଭକ୍ତ କରି ମାରିଥିଲେ । ପରିଣାମରେ ଆକାଶ ମାର୍ଗରୁ ଅସୁରର ମୃତ ପିଣ୍ଡ ଭୂପତିତ ହୋଇ ମୁଣ୍ଡ ଭାଗ ଅଧୁନା ଅସୁରେଶ୍ୱରରେ ଏବଂ ଗଣ୍ଡିଭାଗ କେନ୍ଦ୍ରାପଡ଼ାରେ ପଡ଼ିଥିଲା । କାଳକ୍ରମେ ଲୋକମୁଖରେ ଅସୁରେଶ୍ୱର ଓ କେନ୍ଦ୍ରାପଡ଼ା ତୁଳସୀକ୍ଷେତ୍ର ନାମରେ ପ୍ରସିଦ୍ଧ ଲାଭ କଲା । ଏହି କିମ୍ବଦନ୍ତୀକୁ ଭିତ୍ତିକରି ଅସୁରେଶ୍ୱରର ବରପୁତ୍ର କବି ଦ୍ୱିତୀୟ ଭଞ୍ଜଙ୍କ ବର୍ଣ୍ଣନାନୁସାରେ, ଏକଦା ବିଜୟାସୁର ନାମରେ ରାଜା ରାଜପଣ କରୁଥିଲେ । ଏହି ଅସୁର ସହସ୍ର ସିଂହର ବଳ ଧାରଣ ପୂର୍ବକ ମାୟାବୀ ପଣରେ ଅସୁର କୂଳର ଶ୍ରେଷ୍ଠ ଥିଲେ । କାଳକ୍ରମେ ବିଜୟା ଅସୁରଙ୍କ ଶାସିତ ରାଜ୍ୟ ଅଧୁନା ଅସୁରେଶ୍ୱର ନାମରେ ନାମିତ । କବିଙ୍କ ଭାଷାରେ–

'' ଗିରି ବନାକୀର୍ଣ୍ଣେ ବୁଦ୍ଧିମନ୍ତ ରାଜ୍ୟ
ନିସର୍ଗ ଶୋଭା ଭଣ୍ଡାର
ବହୁଭାଗ ଜଳ ଥିଲା ପୂର୍ଣ୍ଣ ତହିଁ
ଦୃଶ୍ୟ ଅତି ଚମତ୍କାର
ଅସୁରେଶ୍ୱରସେ ରାଜ୍ୟ ନାମ ଥିଲା
ଅଧିପ ବିଜୟାସୁର
ସହସ୍ର ଶାର୍ଦ୍ଦୁଳ ପିଳଧାରଃଶ୍ୱର
ମାୟାବୀ ଦୈତ୍ୟଶେଖର
ସେ ଅସୁରେଶ୍ୱର ବୃହଦାକାରର
ଏବର ଅସୁରେଶ୍ୱର
ପରିସରେ କ୍ଷୁଦ୍ର ମାତ୍ର ଅନ୍ତର୍ଗତ
ହୋଇଥିଲା ଏ ତାହାର ।।''

(ଶ୍ରୀ ରଘୁନାଥ କାବ୍ୟ)

ଅସୁରମାନେ ସାଧାରଣତଃ କ୍ଷମତା ଲିପ୍‌ସୁ । ସେମାନେ କ୍ଷମତା, ପ୍ରତିପତ୍ତି ଓ ଦୀର୍ଘ ଜୀବନ କାମନା ନିମିତ୍ତ ଦେବୀ ଆରାଧନା କରିଥାନ୍ତି । ତଦନୁରୂପ ବିଜୟାସୁର ଅଭିଷ୍ଟ ପୂର୍ଣ୍ଣ ନିମିତ୍ତ ହରଚଣ୍ଡୀଙ୍କୁ ତନ୍ତ୍ର ମତରେ ଆରାଧନା କରି ବରପ୍ରାପ୍ତି ହୋଇଥିଲା । ଦେବୀ ଅସୁରର ଆରାଧନାରେ ପ୍ରୀତ ହୋଇ ସମସ୍ତ ବର ଦେଇଥିଲେ ହେଁ ଅମର ବର ଦେଇ ନଥିଲେ । ପରିଣାମରେ ବିଜୟାସୁର ଲଙ୍କପତି ରାବଣଠାରୁ 'ଡାମରତନ୍ତ୍ର' ଆହରଣ ପୂର୍ବକ ପୁନର୍ବାର ସାଧନାରେ ବ୍ରତୀ ହୋଇଥିଲା । ଅସୁରର ତପସ୍ୟାରେ ସନ୍ତୁଷ୍ଟ ହୋଇ ହରଚଣ୍ଡୀ ପୁନର୍ବାର ବର ପ୍ରଦାନ କଲେ ଏବଂ କହିଲେ ''ବ୍ରହ୍ମାଙ୍କଠାରେ ଶତ୍ରୁତା ଆଚରଣ କଲେ ତୋର ମୃତ୍ୟୁ ହେବ ।'' କବିଙ୍କ ଭାଷାରେ–

''ବିଜୟ ଦୈତ୍ୟ କରି ଏ ହରଚଣ୍ଡୀ ପୂଜା,
ଦେଉଥିଲା ସଭକ୍ତିରେ ବହୁ ବଳି ଭୋଜା

ନହେଉ ପ୍ରସନ୍ନ, ଚଣ୍ଡୀସେ ତନ୍ତ୍ରସାଧକ,
ପଞ୍ଚମ କାରେ ସାଧିଲା ହୋଇ କାପାଳିକ

ତୁଷ୍ଟହୋଇ ଦେଲେ ଦେବୀ ଭୋଗ, ନାଶ,
ମାନ ଅମର ହେବାର ବାଞ୍ଛା କରି ପ୍ରତ୍ୟାଖ୍ୟାନ

ବାଧ୍ୟହୋଇ ହରଚଣ୍ଡୀ ଯାଚିଦେଲେ ବର
ମୃତ୍ୟୁ ପାଇଁ ଚରାଚର ନରହୁ ତୋ ଡର

ବ୍ରହ୍ମେକଲେ ଶତୃଭାବ, ହେବ ତୋ ବିନାଶରେ
ଲଭ ସେ ବିଜୟ ହେଲା ହସହସ ।''

ଅନ୍ୟଏକ କିମ୍ବଦନ୍ତୀରୁ ଜଣାଯାଏ– ଅସୁରେଶ୍ୱର ହରଚଣ୍ଡୀଙ୍କ ପୀଠର ପଶ୍ଚିମ ଦିଗରେ ଓଡ଼ିଶାର ପଞ୍ଚସଖାଙ୍କ ମଧ୍ୟରୁ ଅଚ୍ୟୁତାନନ୍ଦ ଦାସଙ୍କ ଗାଦି ନେମାଳ ଅବସ୍ଥିତ । ଉତ୍ତର ଦିଗରେ ଓଡ଼ିଶାର ପ୍ରସିଦ୍ଧ ଠାକୁର ଶ୍ରୀ ରଘୁନାଥ ଜୀଉଙ୍କ ଭବ୍ୟ ମନ୍ଦିର କୋଇଲ ଗ୍ରାମରେ ଅଧିଷ୍ଠିତ । ନେମାଳ ଓ ଅସୁରେଶ୍ୱର ମଧ୍ୟରେ ଅବସ୍ଥିତ ଗ୍ରାମ 'ତରୋତ' । ଶ୍ରୀ ରଘୁନାଥ ଜୀଉଙ୍କ ମନ୍ଦିର ପ୍ରତିଷ୍ଠା ଅବସରରେ ରାମଶିଳା ଅନୁସନ୍ଧାନ ନିମିତ୍ତ ରାମଦାସ ନାମକ ଜନୈକ ଲୋକ ନେମାଳ ଯାଇଥିଲେ । ସେ ସ୍ୱଗ୍ରାମକୁ ପ୍ରତ୍ୟାବର୍ତ୍ତନ କରିବା ସମୟକୁ ନିଶାର୍ଦ୍ଧ ହୋଇଗଲା । ଇତ୍ୟବସରରେ ତରୋତ ଗ୍ରାମର ସୁବିସ୍ତିର୍ଣ୍ଣ ପ୍ରାନ୍ତର ମଧ୍ୟରେ ରାମଦାସ ବିକଟ ବଦନା ଏକ ଦେବୀଙ୍କ ଉପସ୍ଥିତ ଦେଖି ଭୟଭୀତ ନହୋଇ ଦେବୀଙ୍କୁ ସାମନା କଲେ । ଦେବୀ ରାମଦାସଙ୍କ ସାହସ ଦେଖି ପ୍ରୀତ ହେଲେ ଏବଂ ସ୍ୱ ପରିଚୟ ଦେବାକୁ ଯାଇ କହିଲେ, ''ମୋର ସମ୍ମୁଖରେ ଯେଉଁ ପ୍ରସ୍ତର ଖଣ୍ଡିକ ପଡ଼ିଛି, ତାହା ମୋର ବିଗ୍ରହ ଅଟେ ।'' ଏହା କହି ଦେବୀ ଅନ୍ତର୍ହିତ ହୋଇଗଲେ । ରାମଦାସ ଏହି ଅଲୌକିକ ଘଟଣା ଗ୍ରାମବାସୀଙ୍କୁ ଜଣାଇଲେ । ତଦନୁଯାୟୀ

ଭକ୍ତଗଣଙ୍କ ଉପସ୍ଥିତିରେ ଦେବୀଙ୍କ ପାଷାଣ ପ୍ରତିମାଙ୍କୁ ଉଦ୍ଧାର କରାଯାଇ ଯଥା ସ୍ଥାନରେ ସ୍ଥାପନ କଲେ ରାମଦାସ । କବିଙ୍କ ଭାଷାରେ–

''ସମ୍ମୁଖେ ସେ ଯେଉଁ ପଡ଼ିଅଛିଶିଳା,
ଉଲଟହୋଇ ମହୀରେ
ସେହି ମୋ ବିଗ୍ରହ କରି ରାମଚଣ୍ଡୀ,
ଲୁଚିଗଲେ ତହିଁ ଖରେ

ଉପସ୍ଥିତ ସ୍ଥାନେ ରଖାଇଲେ ନେଇ,
ସେ ଚଣ୍ଡୀଙ୍କି ରାମ ଦାସ
କରିବା ପୂଜାଦିରେ କଲେ ସୁବିଧା,
ଶାକ୍ତ କଲେ ବହି ତୋଷ ।''

ପୌରାଣିକ ତଥା କିମ୍ବଦନ୍ତୀ ଅନୁସାରେ ଦେବୀ ହରଚଣ୍ଡୀ ବହୁ ପ୍ରାଚୀନ କାଳରୁ ଅଧିଷ୍ଠିତ ଓ ପୂଜିତା, କିନ୍ତୁ ତାଙ୍କ ଭବ୍ୟ ମନ୍ଦିର ପ୍ରତିଷ୍ଠା ସଂପର୍କରେ ସୂଚନା ମିଳେ ନାହିଁ । ଜଣାଯାଏ, ମନ୍ଦିର ନିର୍ମାଣ ହୋଇଥିଲା ଷୋଡ଼ଶ ଶତାବ୍ଦୀରେ । ଶ୍ରୀ ହରଚଣ୍ଡୀଙ୍କ ଭବ୍ୟ ମନ୍ଦିର ନିର୍ମାଣ ନିମିତ୍ତ ସ୍ଥାନୀୟ ଛଅ ଜଣ ଜମିଦାରଙ୍କ ଅକୁଣ୍ଠ ସହଯୋଗ ନିହିତ ଥିଲା । ସେମାନେ ଦେବୀଙ୍କ ମନ୍ଦିର ତୋଳାଇବା ସହିତ ଦେବୀଙ୍କ ପୂଜାବିଧି ସକାଶେ ଜମିଜମା ଖଞ୍ଜା କରିଦେଇଥିଲେ । ଶ୍ରୀ ଚଣ୍ଡୀଙ୍କ ପୂଜକମାନଙ୍କ ନିମିତ୍ତ ବସତି ଦେଇଥିଲେ 'ଛପଟିକଣା' ଗ୍ରାମରେ, ଯାହାକି ଅବଧି ରହିଅଛି । କିନ୍ତୁ ଛଅ ଜମିଦାରଙ୍କ ଦ୍ୱାରା ନିର୍ମିତ ମନ୍ଦିର କାଳଗର୍ଭରେ ବିଲୀନ ହୋଇ ନୂତନ ମନ୍ଦିରରେ ଦେବୀ ଆରାଧିତା । ଏହି ନୂତନ ମନ୍ଦିରର ନିର୍ମାତାଙ୍କୁ ତଥା ସମୟକୁ ଜାଣିବାର ଅବକାଶ ନାହିଁ । ଏସବୁ ସତ୍ତ୍ୱେ, ହରଚଣ୍ଡୀଙ୍କ ମହିମା କ୍ଷିନ୍ନ ହୋଇ ନାହିଁ ।

ମୂର୍ତ୍ତି କଳା ଦୃଷ୍ଟିରୁ, ହରଚଣ୍ଡୀଙ୍କ ଶ୍ରୀବିଗ୍ରହ ଦଶଭୁଜା, ଲୋଳ ଜିହ୍ୱା, ଖଣ୍ଡାଖର୍ପର ଧାରଣୀ ଓ ଶବାରୂଢ଼ା । ଦେବୀଙ୍କର ପ୍ରକୃତ ମୁଖକୁ ଦେଖିହୁଏ ନାହିଁ । ଜଣାଯାଏ, ହରଚଣ୍ଡୀଙ୍କର ପ୍ରକୃତ ମୁଖ ଏପରି ଭୟାନକ ଯେ, ଦର୍ଶନ ମାତ୍ରେ ଦର୍ଶକ ଭୟଭୀତ ହୋଇପଡେ । ପରିଣାମରେ, ଶ୍ରୀଚଣ୍ଡୀଙ୍କ ଶ୍ରୀମୁଖରେ ଜଉମୁଦ ଦିଆଯାଇ, ଏକ ମୁଖା ଦିଆଯାଇଅଛି ।

ପ୍ରାଥମିକ ଅବସ୍ଥାରେ ହରଚଣ୍ଡୀଙ୍କ ମନ୍ଦିର ପରିଚାଳନା କେବଳ ସେବାୟତମାନଙ୍କ ଦ୍ୱାରା ସମାହିତ ହେଉଥିଲା । ପରବର୍ତ୍ତୀ କାଳରେ ଟ୍ରଷ୍ଟବୋର୍ଡ଼ ମାଧ୍ୟମରେ ପରିଚାଳନା ନ୍ୟସ୍ତଥିଲା । ଅଧୁନା ଏଣ୍ଡାମେଣ୍ଟ ଆଇନ ବଳରେ ମନ୍ଦିର କାର୍ଯ୍ୟ ସମାହିତ ହେଉଥିଲେ ହେଁ ଟ୍ରଷ୍ଟବୋର୍ଡ଼ ପ୍ରତିନିଧିଭାବେ କାର୍ଯ୍ୟ କରୁଅଛି । ଏତଦ୍‌ଭିନ୍ନ ସେବକମାନଙ୍କ ମଧ୍ୟରେ ରହିଛି ଘଣ୍ଟୁଆ ପରିଷଦ । ଏମାନେ ସରକାରୀ ସ୍ୱୀକୃତି ପାଇ ଓଡ଼ିଶାର ବିଭିନ୍ନ ସ୍ଥାନକୁ ଯାଇ ଶ୍ରୀଚଣ୍ଡୀଙ୍କ ମହିମାକୁ କଳାକୃତି ରୂପ ପ୍ରଦାନ ପୂର୍ବକ ମହିମା ପ୍ରଚାର କରି ଆସୁଛନ୍ତି ।

ଜଗଜ୍ଜନନୀ ମା' ହରଚଣ୍ଡୀଙ୍କୁ ବନଦୁର୍ଗା ମନ୍ତ୍ରରେ ପୂଜା କରାଯାଇଥାଏ । ଦେବୀଙ୍କୁ ଭୋଗ ନିମିତ୍ତ ଖେଚେଡ଼ି ଭୋଗ, ଅନ୍ନ ଭୋଗ ଓ କାକରା ଭୋଗ ଲାଗି ହୋଇଥାଏ । ରାତ୍ରୀ ଧୂପ ଅବକାଶରେ ଦହି ପଖାଳ ଭୋଗ ହୋଇଥାଏ । ତତ୍ ସହିତ ଆଗନ୍ତୁକ ଭକ୍ତମାନଙ୍କ ଭୋଗ ମଧ୍ୟ ଚଣ୍ଡୀଙ୍କୁ ଅର୍ପଣ କରାଯାଇଥାଏ । ଦେବୀଙ୍କଠାରେ ଆମିଷ ଭୋଗର ପ୍ରଚଳନ ଥିଲେ ହେଁ ଅଧୁନା ବନ୍ଦ ହୋଇଯାଇଛି ।

ଶ୍ରୀହରଚଣ୍ଡୀଙ୍କ ପୀଠରେ ବର୍ଷସାରା ଉତ୍ସବ ଲାଗି ରହିଥାଏ । ବିଶେଷତଃ, ରଜପର୍ବ ଓ ଚନ୍ଦନଯାତ୍ରା ବିଶେଷ ଆକର୍ଷଣ ହୋଇଥାଏ । ଏତଦ୍ ଭିନ୍ନ ଅସୁରେଶ୍ୱର ମହାଦେବଙ୍କ ଉଦ୍ଦେଶ୍ୟରେ ଅନୁଷ୍ଠିତ ହେଉଥିବା 'ମହାଶିବରାତ୍ରୀ' ଦିନ ଏହି ପୁଣ୍ୟ କ୍ଷେତ୍ରଟି ଲୋକାରଣ୍ୟ ହୋଇଯାଏ । ଏଠାରେ ଅନ୍ୟ ଏକ ଆକର୍ଷଣୀୟ ପର୍ବ ହେଲା ପଣାସଂକ୍ରାନ୍ତି ଅବସରରେ ଅନୁଷ୍ଠିତ ହେଉଥିବା ଝାମୁଯାତ୍ରା । ସେବକମାନଙ୍କ ଆଶ୍ଚର୍ଯ୍ୟଜନକ ଘଟନୃତ୍ୟ ଓ ଘଣ୍ଟା ଘଣ୍ଟୁଆମାନଙ୍କ ଚିତ୍ତାକର୍ଷକ ଘଣ୍ଟ ବାଦନ ଅନନ୍ୟ ଓ ଅନୁପମ ।

ଦେବୀ ଶ୍ରୀହରଚଣ୍ଡୀଙ୍କ ପୀଠ ଏକ ତନ୍ତ୍ରପୀଠ । ଦେବୀଙ୍କୁ ଶ୍ରଦ୍ଧା ଓ ଭକ୍ତି ସହକାରେ ଆରାଧନା କଲେ ଅଭିଷ୍ଟ ପୂରଣ ହୋଇଥାଏ । ହରଚଣ୍ଡୀଙ୍କ ମୁଖ୍ୟ ମନ୍ଦିର ସଂଲଗ୍ନ ଏକ ବିଶାଳ ପଣସ ବୃକ୍ଷ ରହିଅଛି । ଏହି ବୃକ୍ଷ ବହୁ ପ୍ରାଚୀନ ଭାବେ ପ୍ରତୀତ ହୁଏ । ତେଣୁ ଏହି ବୃକ୍ଷକୁ ଦେବୀଙ୍କ କଳ୍ପବୃକ୍ଷ ସଦୃଶ ଦଣ୍ଡାୟମାନ । ଅପର ପକ୍ଷରେ, ଏହି ବୃକ୍ଷ ଦେବୀଙ୍କ ପ୍ରାଚୀନତାର ମୂକସାକ୍ଷୀ । ପଞ୍ଚସଖା ଯୁଗର ଶ୍ରେଷ୍ଠ ସାଧକ ଅଚ୍ୟୁତାନନ୍ଦ ଦାସ ଶ୍ରୀ ଚଣ୍ଡୀଙ୍କ ମହିମାକୁ ଶତମୁଖରେ ବର୍ଣ୍ଣନା କରିଯାଇଛନ୍ତି । ତାଙ୍କ ମତରେ କଳିଯୁଗର ଅନ୍ତ ସମୟରେ

ଦେବୀ ସ୍ୱୀୟ ଶକ୍ତି ବଳରେ ପୃଥିବୀରୁ ମାନବ ସମାଜ ମଧ୍ୟରୁ ଅନ୍ୟାୟ, ଅତ୍ୟାଚାର ତଥା ପାପତାପର ଭାରା ନିବାରଣ ସହିତ ଧର୍ମ ସଂସ୍ଥାପନା କରିବେ । ଅଚ୍ୟୁତାନନ୍ଦ ଦାସଙ୍କ ବିରଚିତ ଭବିଷ୍ୟମାଳିକା ବର୍ଣ୍ଣିତ ବିଷୟ ସତରେ ପରିଣତ ହେଉଥିବା ଲକ୍ଷ୍ୟ କରାଯାଏ । ତଦନୁରୂପ, ଦେବୀ ହରଚଣ୍ଡୀଙ୍କ ପ୍ରତି ବର୍ଣ୍ଣିତ ଭବିଷ୍ୟତ ବାଣୀ ଯେ ସତ୍ୟ ନ ହେବ କିଏ କହିବ ? ଏହି ଦିବ୍ୟ ଦୃଷ୍ଟିରୁ ସମୟ ଆସିଛି, ଦେବୀ ହରଚଣ୍ଡୀଙ୍କୁ ଦର୍ଶନ ଓ ମନନ ପୂର୍ବକ ମାନବ ଜନ୍ମ ସାର୍ଥକ ନିହିତ ।

ସହାୟକ ଗ୍ରନ୍ଥସୂଚୀ

୧. ଓଡ଼ିଶାର ତନ୍ତ୍ର ସଂସ୍କୃତି– ଓଡ଼ିଶା ସାହିତ୍ୟ ଏକାଡେମୀ

୨. ଓଡ଼ିଶାର ଦେବୀପୀଠ ତତ୍ତ୍ୱ ଓ ଉପାସନା– ରାଜେନ୍ଦ୍ର କୁମାର ମହାନ୍ତି

୩. ଭାରତୀୟ ଧର୍ମ ଓ ସଂସ୍କୃତି– ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

ସ୍ୱତନ୍ତ୍ର ଭୂ–ଅର୍ଜନ କାର୍ଯ୍ୟାଳୟ
ରେଙ୍ଗାଳି ଦକ୍ଷିଣ କେନାଲ ସିଷ୍ଟମ, ଢେଙ୍କାନାଳ



# ମାଆ

ଅକ୍ଷୟ ପାଳ

ତମେ କ'ଣ ଆସ ମାଆ
ଏଇ ସମୟରେ ? ଯୋଉ ସମୟରେ
ଶୋଭା ପାଉଥିବା ସୁଦୃଶ୍ୟ ତୋରଣ
ଆଖି ଝଲସା ଆଲୋକ ମାଳାରେ
ସାଧ ମତେ ସୁଢଳ ଦିଶିବାକୁ
ପ୍ରଚେଷ୍ଟାରତ ନାରୀ ଓ ପୁରୁଷଙ୍କ
ଆଭରଣର ଆକାର ପ୍ରକାରେ ।

ତମେ ଆସିବ ବୋଲି ପୁରୁଦ ପରି
ଚିକ୍ ଚିକ୍ ମଡା ଅମଡା ବାଟ
ହସର ହାଟ ବସିଛି ସବୁ ଛକରେ
ସବୁ କିଛି ମିଳିଯିବାର ଭାବଟିଏ
ସଭିଙ୍କ ମୁହଁରେ
ଅଥଚ ସମସ୍ତଙ୍କ ଜଣାଥାଏ
ହାତ ଗୋଡ ହରେଇ ବସିଥିବା ଦୁଃଖ
ପୁଣି ଫେରିବ ଏଇ
ଚାରିଦିନ ପରେ ।



ଏମିତି ହୁଅନ୍ତାନି ମାଆ !
ଆଜିର ଏଇ ହସଖୁସି କଳରୋଳ
ଲାଗି ରହନ୍ତା ତମାମ ଜୀବନକାଳ
ଭୋକ ବ୍ୟାଧି ଓ ଯାବତୀୟ ହାନୀକାରକ
ପ୍ରେତମାନେ ଅଦୃଶ୍ୟ ହୁଅନ୍ତେ
ତମ ଇଶାରାରେ
ହସର ମଣ୍ଡଳାଗ୍ର ଭେଦି ଯାଆନ୍ତା
ପ୍ରତିଟି ଅମଣିଷର ଛାତି
ଓ ସେଇ ଛାତିରୁ ଉତୁରି ଆସନ୍ତା
ଗୋଟେ ପ୍ରେମର ଫୁଲମାଳ ।
ସବୁତ ତମରି ଭିଆଣ ମାଆ
ବନ୍ଦ କର ଏଇ
ଅନ୍ଧାର ଓ ଆଲୁଅର ଖେଳ ।

ଏଚ୍.ଆଇ.ଜି–୧/୨୦, ସତ୍ୟସାଇ ଏନ୍‌କ୍ଲେଭ
କୋଳଥିଆ/ଖଣ୍ଡଗିରି, ଭୁବନେଶ୍ୱର–୩୦



# ଶ୍ରୀମନ୍ଦିରରେ ଶକ୍ତି ଉପାସନା

**ଅଭିମନ୍ୟୁ ଦାଶ**

ଶ୍ରୀବିମଳା ହେଉଛନ୍ତି ଶ୍ରୀମନ୍ଦିରରେ ଶକ୍ତି ଉପାସନାର କେନ୍ଦ୍ରବିନ୍ଦୁ । ତାହାଙ୍କୁ ନେଇ ଶ୍ରୀମନ୍ଦିରରେ ଶକ୍ତି ଉପାସନା କରାଯାଇଥାଏ । ଶ୍ରୀମନ୍ଦିରରେ ଦକ୍ଷିଣ ପଶ୍ଚିମ କୋଣରେ ଅବସ୍ଥିତ ଦେବୀ ଶ୍ରୀବିମଳାଙ୍କ ମନ୍ଦିର ବିଦ୍ୟମାନ । ସମଗ୍ର ଭାରତବର୍ଷରେ ଶକ୍ତିପୀଠମାନଙ୍କ ମଧ୍ୟରେ ଦେବୀ ଶ୍ରୀବିମଳାଙ୍କ ସ୍ଥାନ ସ୍ୱତନ୍ତ୍ର । ଭାରତବର୍ଷର ୧୦୮ଟି ଦେବୀ ପୀଠ ରହିଅଛି ଏବଂ ସେମାନଙ୍କ ମଧ୍ୟରେ ଶ୍ରୀବିମଳା ମୁଖ୍ୟ ସ୍ଥାନ ଅଧିକାର କରିଅଛନ୍ତି । ସତୀ ଦେବୀଙ୍କ ନାଭି ଶ୍ରୀକ୍ଷେତ୍ର ପୁରୀରେ ପତିତ ହୋଇ ବିମଳା ରୂପେ କେଉଁ ଆବହମାନ କାଳରୁ ପୂଜିତ ହୋଇଆସୁଛନ୍ତି । ଶକ୍ତି ରୂପୀଣ ଶ୍ରୀବିମଳାଙ୍କୁ ଶ୍ରୀମନ୍ଦିରରେ ଭୈରବୀ ରୂପେ ଆରାଧନା କରାଯାଉଥିବା ବେଳେ ଶ୍ରୀଜଗନ୍ନାଥଙ୍କୁ ଭୈରବ ଭାବେ ପୂଜା କରାଯାଉଛି । ଶ୍ରୀବିମଳାଙ୍କ ନାମ ମତ୍ସ୍ୟ ପୁରାଣ, କପିଳ ସଂହିତା ଏବଂ ସ୍କନ୍ଦ ପୁରାଣରେ ଉଲ୍ଲେଖ କରାଯାଇଥିବାର ଦେଖିବାକୁ ମିଳେ । ପ୍ରତ୍ୟେକ ବର୍ଷ ଦୁର୍ଗା ପୂଜା ଅବସରରେ ଦେବୀ ବିମଳାଙ୍କଠାରେ ୧୬ ଦିନ ଲାଗି ରଖାଯାଇଥିବା ପୂଜାକୁ ଷୋଳପୂଜା କୁହାଯାଇଥାଏ । ଉକ୍ତ ଷୋଳ ପୂଜା ସମୟରେ ମହିଳାମାନଙ୍କୁ ବିମଳା ମନ୍ଦିର ପ୍ରବେଶ ନିଷେଧ ଥାଏ । ଶ୍ରୀଜୀଉମାନଙ୍କ ପ୍ରସାଦ ଲାଗି ହେଲାପରେ ପୁନର୍ବାର ଶ୍ରୀବିମଳାଙ୍କୁ ତାହା ପ୍ରସାଦ ରୂପେ ଅର୍ପଣ କରାଯାଇ ମହାପ୍ରସାଦରେ ପରିଣତ କରାଯାଇଥାଏ ଯାହା ଭାରତବର୍ଷରେ ବିରଳ । ଏଭଳି ଗୋଟିଏ ଭୋଗ ଦୁଇଥର ଲାଗି ହେବା ଅନ୍ୟ କୌଣସି ଶକ୍ତି କ୍ଷେତ୍ରରେ ଦେଖିବାକୁ ମିଳେ ନାହିଁ । ତେଣୁ ଏହାର ମହାତ୍ମ୍ୟ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଥିବାରୁ ଶ୍ରୀବିମଳାଙ୍କ ସ୍ଥାନ ଶାକ୍ତ କ୍ଷେତ୍ରମାନଙ୍କ ମଧ୍ୟରେ ଅନନ୍ୟ ।

ଶ୍ରୀବିମଳାଙ୍କ ମନ୍ଦିର ଶ୍ରୀମନ୍ଦିରଠାରୁ ବହୁ ପ୍ରାଚୀନ ମନେ ହୁଏ କାରଣ ବିମଳାଙ୍କ ମୂର୍ତ୍ତିର ଗଠନ ଶୈଳୀ ଦଶମ ଶତାବ୍ଦୀଠାରୁ ଏକାଦଶ ଶତାବ୍ଦୀ ମଧ୍ୟରେ ଗଠନ ହୋଇଥିବାର ଜଣାପଡ଼େ । ସୋମବଂଶୀୟ ରାଜା ଯଯାତି କେଶରୀ ଉକ୍ତ ମନ୍ଦିରଟି ଶାକ୍ତ ଭକ୍ତମାନଙ୍କ ନିମନ୍ତେ ପ୍ରଥମେ ନିର୍ମାଣ କରିଥିଲେ । ତାହାକୁ ପରବର୍ତ୍ତୀ କାଳରେ ଜରାଜୀର୍ଣ୍ଣ ହୋଇଯିବାରୁ ଗଙ୍ଗବଂଶୀୟ ରାଜା ତୃତୀୟ ଅନଙ୍ଗଭୀମଦେବ ପୁନର୍ନିର୍ମାଣ କରିଥିଲେ, ଯାହା ବର୍ତ୍ତମାନ ଦୃଶ୍ୟମାନ ।

ଦେବୀ ବିମଳାଙ୍କ ଉତ୍ପତ୍ତି ସମ୍ବନ୍ଧରେ ବିଭିନ୍ନ ଉପାଖ୍ୟାନ ପୁରାଣମାନଙ୍କରେ ରଚିତ ହୋଇଅଛି । ପ୍ରଥମେ ବାମଦେବ ସଂହିତାରେ ଶିବ ପାର୍ବତୀ ଉପାଖ୍ୟାନରେ ଦେବୀଙ୍କ ଉତ୍ପତ୍ତି ସଂପର୍କରେ ବର୍ଣ୍ଣନା କରାଯାଇଛି ଯେ, (୧) ଏକଦା ନାରଦ ପୁରୁଷୋତ୍ତମ କ୍ଷେତ୍ରରୁ ସ୍ୱଳ୍ପ ନିର୍ମାଲ୍ୟ ଆଣି ପ୍ରଭୁ ଶିବଙ୍କୁ ଅର୍ପଣ କରିଥିଲେ । ଶିବ ଏକାକୀ ତାହା ଭକ୍ଷଣ କରୁଥିବାର ଲକ୍ଷ୍ୟ କରି ଦେବୀ ସତୀ କ୍ରୋଧାନ୍ୱିତା ହୋଇ ପଚାରିଲେ, ପ୍ରଭୁ ମୋତେ ନିର୍ମାଲ୍ୟ ଦେଲେ ନାହିଁ କାହିଁକି ? ମୁଁ ବିଭୁ ପ୍ରସାଦରୁ ବଞ୍ଚିତା ହେଲି । ତେଣୁ ବିଭୁ ପ୍ରସାଦ ପାଇବା ନିମନ୍ତେ ମୁଁ ସେହି ପୁରୁଷୋତ୍ତମ କ୍ଷେତ୍ରରେ ଅବସ୍ଥାନ କରିବି । ଏହା କହି ଦେବୀ ସତୀ ନୀରବ ରହିଲେ । ଅର୍ଥାତ୍ ବିଭୁ ପ୍ରସାଦ ଲାଭ ନିମନ୍ତେ ଦେବୀ ସତୀ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଦେବୀ ବିମଳା ରୂପେ ଅବସ୍ଥାନ କରିଥିଲେ । (୨)ଅନ୍ୟ ଏକ ପୌରାଣିକ କିମ୍ବଦନ୍ତୀ ଅନୁସାରେ ସତୀଙ୍କ ଶରୀରର କିଛି ଅଂଶ ଏଠାରେ ପତିତ ହୋଇଥିବାରୁ ଏହା ଏକ ପ୍ରସିଦ୍ଧ ଦେବୀ ପୀଠ ବା ଶ୍ରୀବିମଳା ପୀଠ ହୋଇଛି । କିମ୍ବଦନ୍ତୀ ଅନୁସାରେ ସତୀ ଦକ୍ଷ ପ୍ରଜାପତିଙ୍କର କନ୍ୟା ଓ ମହାଦେବ ଶିବଙ୍କର ପତ୍ନୀ ଅଟନ୍ତି । ଶିବ ଦିଗମ୍ବର ହେତୁ ଦକ୍ଷଙ୍କର ତାଙ୍କ ପ୍ରତି ସମ୍ମାନ ନଥିଲା । ଜାମାତା ଅନାଦୃତ ହେଲେ କନ୍ୟା ଅବହେଳିତା ହେବା ସ୍ୱାଭାବିକ । ଏଭଳି ପରିସ୍ଥିତିରେ ଏକଦା

ଦକ୍ଷ ପ୍ରଜାପତି ଏକ ଯଜ୍ଞର ଆୟୋଜନ କରି ମୁନି, ଋଷି ଓ ଦେବତାମାନଙ୍କୁ ଆମନ୍ତ୍ରଣ କରିବା ସହିତ ତାଙ୍କର ଅନ୍ୟ ସମସ୍ତ ଜାମାତା ଓ କନ୍ୟାମାନଙ୍କୁ ନିମନ୍ତ୍ରଣ କରିଥିଲେ । କିନ୍ତୁ ସତୀ ଓ ଶିବଙ୍କୁ ଯଜ୍ଞକୁ ଆହୂତ ହୋଇନଥିଲେ । କୌଣସି ସୂତ୍ରରୁ ସତୀ ଦକ୍ଷଙ୍କର ଯଜ୍ଞ ସଂପାଦନ ଜାଣି ସେଠାକୁ (ପିତ୍ରାଳୟକୁ) ଯିବାକୁ ଶିବଙ୍କର ଆଜ୍ଞା ପ୍ରାର୍ଥନା କଲେ । ଶିବଙ୍କର ବାରଣ ସତ୍ତ୍ୱେ ସତୀ ଯଜ୍ଞ ସ୍ଥାନରେ ପହଞ୍ଚିଲେ ସତ୍ୟ କିନ୍ତୁ ପିତାମାତାଙ୍କର ତାଙ୍କ ପ୍ରତି ଅଶ୍ରଦ୍ଧା ଓ ପତି ପରମ ପ୍ରଭୁ ଶିବଙ୍କ ପ୍ରତି ଅବଜ୍ଞା ସହି ନପାରି ଯଜ୍ଞ କୁଣ୍ଡରେ ଆତ୍ମ ବିସର୍ଜନ କଲେ । ପରମ ଯୋଗୀ ଶିବ ଯୋଗ ବଳରେ ତାହା ଜାଣି ପାରିଥିଲେ । ଶିବ କ୍ରୋଧାନ୍ୱିତ ହୋଇ ଦକ୍ଷଙ୍କର ମସ୍ତକ ଛେଦନ କରିବା ସହ ଯଜ୍ଞକୁ ନଷ୍ଟ ଭ୍ରଷ୍ଟ କରିପକାଇଥିଲେ । ଦାରୁଣ ଦୁଃଖରେ ଅଧୀର ଶିବ ନିଜର ମାନସିକ ଭାରସାମ୍ୟ ହରାଇ ଯଜ୍ଞ ସ୍ଥଳରେ ପହଞ୍ଚି ପ୍ରାଣ ବିସର୍ଜନ କରିଥିବା ସତୀଙ୍କର ଶରୀରକୁ କାନ୍ଧରେ ପକାଇ ନାନା ତୀର୍ଥସ୍ଥଳ ପରିଭ୍ରମଣ କରିବାକୁ ଲାଗିଲେ । ଏହି ସମୟରେ ଭୀତତ୍ରସ୍ତ ଦେବଗଣ ବୈକୁଣ୍ଠ ବିହାରୀ ଭଗବାନ ବିଷ୍ଣୁଙ୍କର ଶରଣାପନ୍ନ ହେଲେ । ଭଗବାନ ବିଷ୍ଣୁ ଶିବଙ୍କର ଆସକ୍ତି ପରିହାର ନିମନ୍ତେ ସୁଦର୍ଶନ ଚକ୍ରକୁ ପ୍ରେରଣ କରି ନିର୍ଦ୍ଦେଶ ଦେଲେ ଯେ ଶିବ ସ୍କନ୍ଧସ୍ଥିତ ସତୀଙ୍କର ଶବକୁ ତାଙ୍କର ଅଜ୍ଞାତରେ ଖଣ୍ଡ ଖଣ୍ଡ କରି କାଟି ପକାଅ । ବିଷ୍ଣୁଙ୍କର ଆଜ୍ଞା ପାଳିତ ହେଲା ଓ ସତୀଙ୍କର ଶରୀରାଂଶ ଯେଉଁ ଯେଉଁ ସ୍ଥାନରେ ପତିତ ହେଲା, ସେହି ସ୍ଥାନମାନ ପ୍ରସିଦ୍ଧ ଦେବୀପୀଠ ବା ତନ୍ତ୍ରପୀଠରେ ପରିଣତ ହେଲା । ଶିବ ଆସକ୍ତି ଶୂନ୍ୟ ହୋଇ ଯୋଗ ସାଧନାରେ ବ୍ରତୀ ହେଲେ । ତେଣୁ ସତୀଙ୍କ ଶରୀରର ଏକ ଅଂଶ ଏଠାରେ ପତିତ ହୋଇଥିବାରୁ ଏହା ପ୍ରସିଦ୍ଧ ଶକ୍ତି ଉପାସନା ପୀଠ ବା ଶ୍ରୀବିମଳା ଦେବୀଙ୍କ ପୀଠ ରୂପେ ପରିଚିତ ହେଲା । କେହି କେହି ଏହାକୁ ପାଦପୀଠ, ଜିହ୍ୱାପୀଠ ଏବଂ ନାଭିପୀଠ ନାମରେ ବର୍ଣ୍ଣନା କରିଛନ୍ତି ।

ଏଠାରେ ପ୍ରଶ୍ନ ଉଠେ ସତୀ, ଗୌରୀ, ପାର୍ବତୀ ଏବଂ ଦୁର୍ଗା ଏକ କି ନୁହେଁ ? ସେଥିପାଇଁ ମତ୍ସ୍ୟ ପୁରାଣର ସାହାଯ୍ୟ ନିଆଯାଇଛି। ସେଥିରୁ ଜଣା ପଡୁଛି ସେମାନେ ସମସ୍ତେ ଏକ ଓ ଅଭିନ୍ନ । ମତ୍ସ୍ୟ ପୁରାଣ ଅନୁସାରେ ମହାମାୟା, ଗୌରୀ, ସତୀ ଓ ଦେବୀ ପାର୍ବତୀ ସମସ୍ତେ ଏକ ଓ ଅଭିନ୍ନ ଏବଂ ସେମାନେ ପ୍ରତ୍ୟେକ ମହାବୀଜ ମନ୍ତ୍ରରେ ଆରାଧିତ ହୁଅନ୍ତି । ତେଣୁ ବିମଳା ଏକ ଶକ୍ତି ପୀଠ ଏହା ନିଃସନ୍ଦେହରେ କୁହାଯାଇପାରେ ।

ଶକ୍ତିପୀଠ ଉପରେ ଦଣ୍ଡାୟମାନ ଭଙ୍ଗୀରେ ଦେବୀ ବିମଳା ପ୍ରସ୍ଫୁଟିତ ପଦ୍ମ ଉପରେ ବିରାଜିତା । କମନୀୟ ରୂପରେ ଦେବୀଙ୍କ ବିଗ୍ରହ ଚାରିଗୋଟି ହସ୍ତ ଓ ତିନୋଟି ଚକ୍ଷୁ ବିଶିଷ୍ଟ ହୋଇଥିବା ବେଳେ ଛଅ ଫୁଟ ସିଂହାସନ ଉପରେ ପାଞ୍ଚ ଫୁଟ ଉଚ୍ଚତାର ଦୃଶ୍ୟମାନ ହୁଅନ୍ତି । ଶ୍ରୀବିମଳାଙ୍କ ଉଭୟ ପାର୍ଶ୍ୱରେ ଛାୟା ଓ ମାୟା ଦେବୀ ଅବସ୍ଥାନ କରିଥାନ୍ତି । ଦେବୀ ବିମଳାଙ୍କ ମୂର୍ତ୍ତି ବହୁ ପ୍ରାଚୀନ ହୋଇଥିବାରୁ ତାଙ୍କର ଆୟୁଧ ଠିକ୍ ରୂପେ ଜାଣି ହୁଏ ନାହିଁ ।

ଦେବୀ ବିମଳା ତାଙ୍କ ଚାରି ହସ୍ତରେ ଯଥା – ଜପାମାଳା, ନାଗପାଶ, ଏକ ମନୁଷ୍ୟ ଏବଂ ଅମୃତ କଳସ ଶୋଭିତ ଥିବାର ଦେଖିବାକୁ ମିଳେ । କିନ୍ତୁ ଦେବୀଙ୍କ ବିଗ୍ରହ ନିକଟକୁ ଯାଇ ଅନୁଧ୍ୟାନ କଲେ ଉପରୋକ୍ତ ଆୟୁଧଗୁଡ଼ିକ ବିମଳାଙ୍କ ହସ୍ତରେ ଥିବାର ସ୍ପଷ୍ଟ ବାରି ହୁଏ ନାହିଁ । ତେବେ ତାଙ୍କ ଦକ୍ଷିଣ ହସ୍ତରେ ବର ମୁଦ୍ରାଙ୍କିତ ଥିଲେ ମଧ୍ୟ ତହିଁରେ ମାଳା ଧାରଣ ଚିହ୍ନ ବିଦ୍ୟମାନ । ଦକ୍ଷିଣ ଉପର ହସ୍ତ ଅଙ୍କୁଶ ଶୋଭିତ ହୋଇଥିଲେ ମଧ୍ୟ ଅଙ୍କୁଶର ଉପରିଭାଗ ସର୍ପ ମସ୍ତକ ପରି ଭ୍ରମ ଜନ୍ମାଉଅଛି । ବାମ ଉପର ହସ୍ତରେ ନାଗପାଶ ଧରି ଥିବାର ସମ୍ଭାବନା କିନ୍ତୁ ନାଗ ମସ୍ତକ ମନୁଷ୍ୟ ମସ୍ତକର ଭ୍ରମ ଜନ୍ମାଉଅଛି । ବାମତଳ ହସ୍ତ ଅଭୟ ମୁଦ୍ରାରେ ଅବସ୍ଥିତ ଥିଲେ ମଧ୍ୟ ହସ୍ତ ଉପରେ ଏକ ସୁବର୍ଣ୍ଣ ଓଲଟ ଫରୁଆ କୌଣସି ପାତ୍ର ଉପରେ ଖଞ୍ଜା ଯାଇଥିବାର ଜଣା ପଡୁଅଛି । ଏ ସମସ୍ତ ଦୃଷ୍ଟିରୁ ଦେଖିବାକୁ ଗଲେ ଦେବୀ ବିମଳା ଯଥାକ୍ରମେ– ବର, ପାଶ, ଅଙ୍କୁଶ ଓ ଅଭୟ ମୁଦ୍ରାରେ ଶୋଭିତ ହୋଇଛନ୍ତି ।

ଶ୍ରୀବିମଳାଙ୍କ ମନ୍ଦିର ପାଞ୍ଚ ଭାଗରେ ବିଭକ୍ତ ଯଥା – ବିମାନ, ଜଗମୋହନ, ଭୋଗମଣ୍ଡପ (ପୂଜାମଣ୍ଡପ), ନାଟମଣ୍ଡପ ଓ ଦର୍ଶନୀ ମଣ୍ଡପ ଇତ୍ୟାଦି । ଦୁଇଟି ଭିନ୍ନ ଭିନ୍ନ ସମୟରେ ଶ୍ରୀବିମଳାଙ୍କ ମନ୍ଦିର ନିର୍ମାଣ କରାଯାଇଛି । ପ୍ରଥମେ ନିର୍ମିତ ହୋଇଥିଲା ବିମାନ (ଦେଉଳ) ଏବଂ ଜଗମୋହନ । ତାହା ଦେଉଳମାଳା ପଥରରେ ନିର୍ମିତ ହୋଇଥିଲା । ବିମାନ ବା ଗର୍ଭଗୃହ ରେଖ ଶୈଳୀରେ ନିର୍ମିତ ହୋଇଥିବା ବେଳେ ଜଗମୋହନ ପୀଢ଼ ଆକୃତିରେ ଗଢ଼ା ହୋଇଛି । ପରବର୍ତ୍ତୀ ସମୟରେ ମନ୍ଦିର ସମ୍ମୁଖରେ ଭୋଗ ମଣ୍ଡପ (ପୂଜାମଣ୍ଡପ) ଓ ନାଟ ମଣ୍ଡପ ଏବଂ ଦର୍ଶନୀ ମଣ୍ଡପ ନିର୍ମାଣ କରାଯାଇଥିଲା । ମାଦଳା ପାଞ୍ଜିରୁ ଜଣାପଡ଼େ ଦେବୀ ବିମଳାଙ୍କ ମନ୍ଦିର ସୋମବଂଶୀୟ ରାଜା ଯଯାତି କେଶରୀଙ୍କ ଦ୍ୱାରା ପ୍ରଥମେ ନିର୍ମିତ ହୋଇଥିଲା । ଏହା ସେତେବେଳେ ଅଠର ହାତ ବିଶିଷ୍ଟ ଉଚ୍ଚତା ଥିଲା । ପରବର୍ତ୍ତୀ ସମୟରେ ଗଙ୍ଗବଂଶୀୟ ରାଜା ଅନଙ୍ଗ ଭୀମଦେବଙ୍କ ଦ୍ୱାରା ଷାଠିଏ ହାତ ବିଶିଷ୍ଟ ନିର୍ମିତ ହେଲା ।

◆◆◆

ଦଶଭୁଜା ମହିଷାମର୍ଦ୍ଦିନୀ ଦୁର୍ଗା, ଶବାରୂଢ଼ା ଦେବୀ କାଳୀ ଓ ବରାହୀ ଶ୍ରୀବିମଳା ମନ୍ଦିରର ପାର୍ଶ୍ୱ ଦେବୀ ଅଟନ୍ତି । କିନ୍ତୁ ଉତ୍ତର ପାର୍ଶ୍ୱଗଢ଼ା ବରାହୀ ବର୍ତ୍ତମାନ ତାଙ୍କ ସ୍ଥାନରେ ନାହାଁନ୍ତି ।

ନାଟମଣ୍ଡପରୁ ଭୋଗମଣ୍ଡପ ବା ପୂଜାମଣ୍ଡପକୁ ପ୍ରବେଶ କରିବା ନିମନ୍ତେ ମୁଖ୍ୟଦ୍ୱାର ଅବସ୍ଥିତ ପ୍ରବେଶ ଦ୍ୱାରର ଉଭୟ ପଟେ ଗଣେଶ ଓ କାର୍ତ୍ତିକେୟଙ୍କର କାରୁକାର୍ଯ୍ୟ ବିମଣ୍ଡିତ ବିଗ୍ରହ ଦୃଶ୍ୟମାନ ହୁଅନ୍ତି । ଗଣେଶ ଓ କାର୍ତ୍ତିକେୟ ଅଢ଼େଇ ଫୁଟ ଉଚ୍ଚତା ବିଶିଷ୍ଟ କଳା ମୁଗୁନି ପଥରରେ ନିର୍ମିତ । ଗଣେଶ ନୃତ୍ୟରତ ଭଙ୍ଗୀରେ ଅଛନ୍ତି । ମଣ୍ଡପ ବର୍ତ୍ତୁଳାକାର । ଛାତର ମଧ୍ୟବିନ୍ଦୁରୁ ଓହଳିଛି ଓଲଟ ପଦ୍ମ ଭାସ୍କର୍ଯ୍ୟଟିଏ । ମଣ୍ଡପ କାନ୍ଥରେ ଦେବୀ ଦୁର୍ଗାଙ୍କର ବିଭିନ୍ନ ରୂପର କାନ୍ଥ ଚିତ୍ର ଦେଖିବାକୁ ମିଳେ । ସେମାନେ ହେଲେ ବିମଳା, ଛିନ୍ନମସ୍ତା, ଉଗ୍ରତାରା, ମହାକାଳୀ, ବଗଳା, ଧୂମାବତୀ, ଶ୍ୟାମାକାଳୀ, ଭୁବନେଶ୍ୱରୀ, ଷୋଡ଼ଶୀ, ଭୈରବୀ, ବନଦୁର୍ଗା, ଭଦ୍ରକାଳୀ, ହରଚଣ୍ଡୀ, ମାତଙ୍ଗିନୀ ଏବଂ ଜୟଦୁର୍ଗା ଇତ୍ୟାଦି ।

ଏହି ଦ୍ୱାରଛଡ଼ା ନାଟମନ୍ଦିରର ଅସଂଲଗ୍ନ ଅନ୍ୟ ଏକ ଦ୍ୱାର ପୂଜା ମଣ୍ଡପରେ ପ୍ରବେଶ କରିବା ପାଇଁ ଅଛି । ଷୋଳ ପୂଜାର ପ୍ରଥମ ଆଠଦିନମାନଙ୍କରେ ଦୁର୍ଗା ମାଧବ ବିଗ୍ରହ ଏହି ଦ୍ୱାର ଦେଇ ପ୍ରବେଶ ଓ ପ୍ରତ୍ୟାବର୍ତ୍ତନ କରନ୍ତି ଏବଂ ଏହି ଦ୍ୱାରର ଅଳ୍ପ କିଛି ଦୂର ପଶ୍ଚିମକୁ ପୂର୍ବାଭିମୁଖୀ ହୋଇ ଅବସ୍ଥାନ କରନ୍ତି । ଉଭୟ ଦ୍ୱାର ସର୍ବଦା ସର୍ବସାଧାରଣଙ୍କ ଗମନା ଗମନର ଦ୍ୱାରଭାବେ ବ୍ୟବହୃତ ହେଉଥିଲେ ମଧ୍ୟ ଷୋଡ଼ଶ ଦିବସାତ୍ମକ ପୂଜା ଦିନମାନଙ୍କରେ ମହିଳାମାନେ ଏହି ମାର୍ଗମାନଙ୍କରେ ଦେବୀ ଦର୍ଶନରେ ଯିବାପାଇଁ ବାରଣ କରାଯାଇଥାଏ। ସେମାନେ ନାଟମଣ୍ଡପର ଦ୍ୱାର ଦେଶରେ ବିମଳାଦେବୀଙ୍କୁ ଓ ଅନ୍ୟ ଦ୍ୱାର ବାହାରେ ରହି ଦୁର୍ଗାମାଧବଙ୍କୁ ଦର୍ଶନ କରିଥାଆନ୍ତି । ମଣ୍ଡପରେ ସାଧାରଣ ଦିନମାନଙ୍କରେ ସର୍ବସାଧାରଣ ଭକ୍ତ ଧ୍ୟାନ, ଧାରଣ, ସ୍ତୁତି ଓ ଚଣ୍ଡୀପାଠ ପ୍ରଭୃତି କରନ୍ତି, କିନ୍ତୁ ଷୋଡ଼ଶ ଦିବସାତ୍ମକ ପୂଜା ଦିନମାନଙ୍କରେ କେବଳ ବରଣୀୟ ବ୍ରାହ୍ମଣମାନେ ଯଥା – ରାଜଗୁରୁ, ସାମନ୍ତ ଏବଂ ଭଟ୍ଟମିଶ୍ରମାନଙ୍କ ସହଯୋଗରେ ହୋମ, ପୂଜା, ତର୍ପଣ ଓ ଚଣ୍ଡୀପାଠ ଓ ସହସ୍ରନାମାଦି ସଂପାଦିତ ହୋଇଥାଏ ।

ନାଟମଣ୍ଡପର ଉପରି ଭାଗରେ ଶ୍ରୀକୃଷ୍ଣଲୀଳା ମୂର୍ତ୍ତିମାନ ଚିତ୍ରିତ ହୋଇଅଛି । ଧୂପକାଳରେ ଏହି ମଣ୍ଡପରେ ଦେବଦାସୀ ନୃତ୍ୟାଦିର ବ୍ୟବସ୍ଥା ଥିଲା ଓ ଏହାକୁ ନାଟମଣ୍ଡପ କୁହାଯାଉଥିଲା । ବର୍ତ୍ତମାନ କିନ୍ତୁ ସେ ବ୍ୟବସ୍ଥା ନାହିଁ । ତେବେ ସେହି ସମୟମାନଙ୍କରେ ଘଣ୍ଟ, ଛତା, କାହାଳୀ ଦ୍ୱାରା ଏହି ସ୍ଥାନ ଶୋଭିତ ଓ ନିନାଦିତ ହୋଇଥାଏ । ଏହି ମଣ୍ଡପର ପ୍ରବେଶ ଦ୍ୱାରରେ ପାବଚ୍ଛ ଶ୍ରେଣୀର ଉଭୟପଟେ ଦୁଇଗୋଟି ଭୈରବୀ ବିଗ୍ରହ ଅଛନ୍ତି । ଏହି ମୂର୍ତ୍ତି ଲୋକମୁଖରେ ଯଥାକ୍ରମେ ସରଖାଇ ଓ କ୍ଷୀରଖାଇ ନାମରେ ଅଭିହିତ ।

ନାଟମଣ୍ଡପର ପାବଚ୍ଛ ଶ୍ରେଣୀ ଅତିକ୍ରମ କଲାପରେ ଅଳ୍ପ ଦୂରରେ ଅନ୍ୟ ଏକ କ୍ଷୁଦ୍ର ମଣ୍ଡପ ପଡ଼େ । ଏହି ମଣ୍ଡପର ଶକ୍ତି ପୀଠ ଉପରେ ହସ୍ତୀଶୁଣ୍ଢ ଦଣ୍ଡରେ କବଳିତ ଏକ ବୀର ପୁରୁଷ ଓ ହସ୍ତୀ ସିଂହଦ୍ୱାରା ଆକ୍ରାନ୍ତ ହୋଇଥିବାର ମୂର୍ତ୍ତି ଦେଖିବାକୁ ମିଳେ । ଏହାକୁ ଗଜସିଂହ କୁହାଯାଏ । ଦେବୀ ବିମଳାଙ୍କ ବାହନ ହେଉଛନ୍ତି ଗଜସିଂହ । ଅଧିକାଂଶ ଶକ୍ତି ପୀଠରେ ସିଂହ ଭାସ୍କର୍ଯ୍ୟ ଦେବୀଙ୍କ ସମ୍ମୁଖ ଜଗମୋହନରେ ସ୍ଥାପିତ ହୋଇଥାଏ । କିନ୍ତୁ ବିମଳାଙ୍କ ବାହନ ରହିଛି ବାହାରେ, ମନ୍ଦିର ସୋପାନଠାରୁ ପ୍ରାୟ ଦଶଫୁଟ ପୂର୍ବକୁ । ଗଜସିଂହ ମୂର୍ତ୍ତିଟି ପ୍ରାୟ ଚାରିଫୁଟ ଉଚ୍ଚ, ପୁଣି ଛାତ – ଆଚ୍ଛାଦିତ ଗୋଟିଏ ସାନ ମଣ୍ଡପ ଉପରେ ତାହା ରହିଛି । ଭକ୍ତ ପ୍ରଥମେ ଉକ୍ତ ସିଂହ ପୃଷ୍ଠ ଭାଗରେ ଦେବୀ ଦର୍ଶନ ସହିତ ଦେବୀଙ୍କୁ ପ୍ରଣତି ଜଣାଇଥାନ୍ତି । ପରେ ସିଂହ ସମ୍ମୁଖସ୍ଥ ପାବଚ୍ଛ ଶ୍ରେଣୀ ଅତିକ୍ରମ କରି ନାଟମଣ୍ଡପ ଦେଇ ଦେବୀ ଦର୍ଶନରେ ଅଗ୍ରସର ହୋଇଥାନ୍ତି ।

ମନ୍ଦିର ପ୍ରବେଶ ପଥର ଦୁଇପାର୍ଶ୍ୱରେ ଦୁଇଟି ଦ୍ୱାରପାଳ ଭାସ୍କର୍ଯ୍ୟ ମଧ୍ୟ ରହିଛି । ପ୍ରାୟ ଦୁଇ ଫୁଟ ଉଚ୍ଚ ଏହି ଦୁଇ କଳାକୃତି କାନ୍ଥର ଠଣା ଭିତରେ ରହିଥିବାରୁ ସହଜେ ଆଖିରେ ପଡ଼େ ନାହିଁ । ଅବଶ୍ୟ ମୂର୍ତ୍ତି ଦୁଇଟିର ନାମ ଜାଣିବା ମଧ୍ୟ ସହଜ ନୁହେଁ । ଦୁଇଜଣ ବପୁମାନ ପୁରୁଷ ବସିଥିବା ଭଙ୍ଗୀରେ ରୂପାୟିତ ହୋଇଛନ୍ତି । ସେମାନେ ଡ଼ାହାଣ ହାତରେ ଧରିଛନ୍ତି ଛୁରୀକା ଏବଂ ବାମ କର ଜଂଘରେ ରଖିଛନ୍ତି ବୀରତ୍ୱ ବ୍ୟଞ୍ଜକ ଠାଣିରେ ସେମାନଙ୍କ ମୁଖାକୃତି, ଉଦର, ହସ୍ତ ଇତ୍ୟାଦି ।

ଶ୍ରୀମନ୍ଦିର ସ୍ୱତ୍ତ୍ୱ ଲିପିରୁ ଜଣାପଡ଼େ ଯେ ଦେବୀ ବିମଳାଙ୍କ ବିଭିନ୍ନ ବେଶ ନିମନ୍ତେ କେତେକ ବଦାନ୍ୟ ବ୍ୟକ୍ତି ବେଶ ସାମଗ୍ରୀମାନ ପ୍ରଦାନ କରିଥାନ୍ତି । ସେଗୁଡ଼ିକ ହେଲା– ଶ୍ରୀବନଦୁର୍ଗା ବେଶ, ଶ୍ରୀଭୁବନେଶ୍ୱରୀ ବେଶ, ଶ୍ରୀନାରାୟଣୀ ବେଶ, ଶ୍ରୀବଗଳା ବେଶ, ଶ୍ରୀଜୟଦୁର୍ଗା ବେଶ, ଶ୍ରୀଉଗ୍ରତାରା ବେଶ, ଶ୍ରୀମାତଙ୍ଗିନୀ ବେଶ, ଶ୍ରୀଦଶଭୁଜା ବେଶ, ଶ୍ରୀହରଚଣ୍ଡୀ ବେଶ ଏବଂ ଶ୍ରୀସିଂହବାହିନୀ ବେଶ ଇତ୍ୟାଦି । ମୂଳାଷ୍ଟମୀଠାରୁ ମହାଷ୍ଟମୀ ପର୍ଯ୍ୟନ୍ତ ଉକ୍ତ

ଷୋଳଦିନ ଉପରୋକ୍ତ ଅନୁସାରେ ଦେବୀ ବିମଳାଙ୍କୁ ବେଶ ଲାଗି କରାଯାଇଥାଏ । ଏତଦ୍‌ବ୍ୟତୀତ ପ୍ରଥମାଷ୍ଟମୀରେ, ରୁକ୍ମିଣୀ ହରଣରେ ଏବଂ ଷୋଳପୂଜାର ପ୍ରଥମ ଦିବସରେ ବାରଲାଗି ଶାଢ଼ୀ ଲାଗି ହୋଇଥାଏ । ବସନ୍ତ ପଞ୍ଚମୀରେ, ଓଢ଼ଣ ଷଷ୍ଠୀରେ ଏବଂ କୁମାର ପୂର୍ଣ୍ଣିମାରେ ଦେବୀ ବିମଳାଙ୍କୁ ସୂତା ଶାଢ଼ୀ ଲାଗି କରାଯାଏ ।

ଦେବୀ ବିମଳାଙ୍କ ପୂଜା ଓ ଭୋଗ ନୀତି ସ୍ୱତନ୍ତ୍ର । ଶ୍ରୀଜୀଉଙ୍କ ସକାଳ ଧୂପରୁ ମହାଦେଇଥାଳି, ଦ୍ୱିପ୍ରହର ଧୂପରୁ ଓରିଆ ଥାଳି, ଓରିଆ ମରିଚିପାଣି ଓ ମାଠପୁଳି, ସନ୍ଧ୍ୟା ଧୂପରୁ ପଖାଳ, ଶାକରା ଓ ସାନ ଅମାଲୁ, ବଡ଼ସିଂହାର ଧୂପରୁ କଦଳୀ, ପହୁଡ଼ ନୀତିରୁ ଗୋଟିଏ ପଇଡ଼ ଦୈନିକ ଦେବୀ ବିମଳାଙ୍କ ନିମନ୍ତେ ଦିଆହୋଇଥାଏ । ଏସବୁ ବର୍ଣ୍ଣନାରୁ ଜଣାପଡ଼େ ଦେବୀ ବିମଳାଙ୍କ ନିକଟରେ ପ୍ରତ୍ୟହ ସମସ୍ତ ଭୋଗ ନୀତି ସମ୍ପନ୍ନ ନ ହୋଇପାରିଲେ ଶ୍ରୀମନ୍ଦିରର କାର୍ଯ୍ୟାବଳୀ ସୁଚାରୁ ରୂପେ ଆଗେଇ ପାରେନାହିଁ ।

ଦେବୀ ବିମଳାଙ୍କ ପାର୍ବଣ ନୀତିମାନଙ୍କ ମଧ୍ୟରେ ଷୋଳପୂଜା ସର୍ବଶ୍ରେଷ୍ଠ । ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀଠାରୁ ଶୁକ୍ଳପକ୍ଷ ନବମୀ ପର୍ଯ୍ୟନ୍ତ ଏହି ପୂଜା ଉତ୍ସବ ଅନୁଷ୍ଠିତ ହୋଇଥାଏ । ଉକ୍ତ ଦିନମାନଙ୍କରେ ଶ୍ରୀଜୀଉମାନଙ୍କର ତିନି ବାଡ଼ରେ ଯାହା ଭୋଗ ଲାଗେ ସବୁ ଦେବୀଙ୍କ ପାଖକୁ ଆସି ବେଲପତ୍ର ପଡ଼ି ପୁନଃ ନୈବେଦ୍ୟ ହୋଇଥାଏ । ଏହି ଦିନମାନଙ୍କରେ ଅଧିକ ପରିମାଣରେ ଭୋଗ ବ୍ୟବସ୍ଥା କରାଯାଇଥାଏ । ସକାଳ ଧୂପ ନିମନ୍ତେ କାନ୍ତି ଏକ ସରା ଓ ଖେଚେଡ଼ି ଫାଳେର ବ୍ୟବସ୍ଥା କରାଯାଇଥାଏ । ସେହିପରି ମଧ୍ୟାହ୍ନ ଧୂପ ପାଇଁ କାକରା ପାଞ୍ଚଗୋଟି, ମାଠପୁଳି ଦୁଇଟି, ସାନ ଆରିସା ଗୋଟିଏ, ବଡ଼ ଆରିସା ଗୋଟିଏ ଭୋଗ କରାଯାଇଥାଏ । ସନ୍ଧ୍ୟା ଧୂପ ନିମନ୍ତେ ବଡ଼ ପଖାଳ ଗୋଟିଏ, ମାଠ ପୁଳି ଏକଟା, ପାରିଜାତକ ନଅଟା ଓ ଅମାଲୁ ଦୁଇଟି ପ୍ରସ୍ତୁତ କରାଯାଇଥାଏ । ବଡ଼ସିଂହାରରେ କ୍ଷୀରୀ ଗୋଟିଏ ଏବଂ ଟାକୁଆ ଗୋଟିଏ ଲାଗି କରାଯାଇଥାଏ । ଷୋଳପୂଜା ସମୟରେ ଦେବୀଙ୍କର ଶୀତଳ ଭୋଗର ବ୍ୟବସ୍ଥା କରାଯାଇଥାଏ । ସକାଳ ଧୂପ ପାଇଁ ଖଇ ପାଞ୍ଚ ଓଳି, ସୁଆଁ ପାଞ୍ଚ ଗୋଟି, ମଧ୍ୟାହ୍ନ ଧୂପ ପାଇଁ ଅଠେଇଶ ଗୋଟି କୋରା, କଦଳୀ ସାତ ଗୋଟି, ସନ୍ଧ୍ୟା ଧୂପ ନିମନ୍ତେ କୋରା କୋଡ଼ିଏଟି ଏବଂ ପେଡ଼ା ସାତ ଗୋଟି ଅର୍ପଣ କରାଯାଇଥାଏ । ଶେଷ ତିନି ଦିନ ଅର୍ଥାତ୍ ସପ୍ତମୀ, ଅଷ୍ଟମୀ ଓ ନବମୀରେ ସଙ୍ଖୁଡ଼ି ଭୋଗ ଅର୍ପଣ କରାଯାଇଥାଏ । ଏଥି ନିମନ୍ତେ ଦୈନିକ ଖେଚେଡ଼ି ତିନି ହାଣ୍ଡି, କ୍ଷୀର ଦୁଇହାଣ୍ଡି, ଏକ ହାଣ୍ଡି ପଖାଳ, ଭଜା ଏକ ତାଡ଼ ଓ ମାଛ ତରକାରୀ ପ୍ରସ୍ତୁତ କରାଯାଇଥାଏ । ସେହି ଦିନମାନଙ୍କ ନିମନ୍ତେ ଅସ୍ଥାୟୀ ଭୋଗଘର ତିଆରି ହୋଇ ଶ୍ରୀଜୀଉମାନଙ୍କର ପହୁଡ଼ ପଡ଼ିଲା ପରେ ଓ ଦେବୀଙ୍କ ସନ୍ଧ୍ୟାଧୂପ ପରେ ପାଳିଆ ସେବକଙ୍କ ଦ୍ୱାରା ଭୋଗ ଲାଗିଥାଏ ।

ପ୍ରତିବର୍ଷ ଦୁର୍ଗାପୂଜା ସମୟରେ ସପ୍ତମୀ, ଅଷ୍ଟମୀ ଓ ନବମୀ କ୍ରମାନ୍ୱୟରେ ତିନିଦିନ ଧରି ଶ୍ରୀବିମଳାଙ୍କ ନିକଟରେ ନିଶାର୍ଦ୍ଧରେ ସ୍ୱତନ୍ତ୍ର ପୂଜା ଓ ସଂଖୁଡ଼ି ଭୋଗ ହୋଇଥାଏ ଯାହା ବର୍ଷର ଅନ୍ୟ ଦିନମାନଙ୍କରେ ଦେଖାଯାଏ ନାହିଁ । ସ୍ୱର୍ଗୀୟ ଲକ୍ଷ୍ମଣ ପଣ୍ଡାଙ୍କ ପୁସ୍ତକ (Record of Rights)ରେ ସେ ବିଷୟରେ ଏହି ପ୍ରକାରେ ବର୍ଣ୍ଣିତ ହୋଇଛି । ଆଶ୍ୱିନ ଶୁକ୍ଳ ସପ୍ତମୀ ପର୍ଯ୍ୟନ୍ତ ବିମଳାଙ୍କ ସଂଖୁଡ଼ି ଭୋଗ ହୁଏ ନାହିଁ । ସପ୍ତମୀ, ଅଷ୍ଟମୀ ଓ ନବମୀ ସଂଖୁଡ଼ି ଭୋଗ ହୋଇ ନିଶାର୍ଦ୍ଧ ପୂଜା ହୁଏ । ଏହି ତିନିଦିନ ପ୍ରତ୍ୟେକ ରାତ୍ର ୩ଟା ଛେଦ ପଡ଼େ । ଭିତରେ ବଡ଼ ସିଂହାର ସରି ପହୁଡ଼ ହେବା ପରେ ଛେଦ ଓ ଭୋଗ ପଶ୍ଚିମ ଦ୍ୱାର ବାଟେ ଯା'ଆସ ହୁଏ, ମାଛ ରନ୍ଧା ହୁଏ । ବିମଳାଙ୍କ କୂଅ ପାଶେ ରୋଷଘର ତିଆରି ହୁଏ । ଛେଦ ବିମଳାଙ୍କ କୂଅ ପାଖରେ ପଡ଼େ । ପୂଜକ ଠାକୁରାଣୀଙ୍କ ନିକଟକୁ ରକ୍ତ ସରାରେ ନିଏ । ମାନସିକ କରିବା ଲୋକଙ୍କ ଛେଦ ପେଜନଳା ପାଶେ ବାହାରି କାକୁଡ଼ିଖାଇଙ୍କ ନିକଟରେ ପଡ଼େ । ପ୍ରତ୍ୟହ ସଂଖୁଡ଼ି ଧୂପ ପାଣି ପଡ଼ିବା ପରେ ମନ୍ଦିରଠାରେ ପଶ୍ଚିମ ଦ୍ୱାର ପର୍ଯ୍ୟନ୍ତ ଚୂନ ପାଣି ପଡ଼ି ଧୁଆ ହୁଏ । ଯେଉଁ ଦିନ ନିଶାର୍ଦ୍ଧକୁ ସପ୍ତମୀ ପାଇବ ସେଦିନ ସଂଖୁଡ଼ି ଭୋଗ ଆରମ୍ଭ ହୁଏ ।

କିନ୍ତୁ ଶରତ ଚନ୍ଦ୍ରଙ୍କ ଲିଖିତ ଓଡ଼ିଶାର ଶକ୍ତିପୀଠ, ପ୍ରଥମ ଭାଗରେ ଉଲ୍ଲେଖ କରାଯାଇଛି ଯେ ମଧ୍ୟରାତ୍ରି ପରେ ମନ୍ଦିରର କେତେକ ନିର୍ଦ୍ଦିଷ୍ଟ ସୁଆର ଅସ୍ଥାୟୀ ରୋଷେଇ ଘରେ ତିଆରି କରିଥାଆନ୍ତି ଖିରୀ, କାନିକା, ଡ଼ାଲି, ମାଛଭଜା ଏବଂ ମାଛ ବେସର । ଏଥିପାଇଁ ଆବଶ୍ୟକୀୟ ମାଛ ଯୋଗେଇ ଦେଇଥାନ୍ତି ପାଣିଆପଟ ନାମକ ସେବାୟତ ।

ଆଶ୍ୱିନ ମାସର ଷୋହଳ ଦିନ ପୂଜା କାଳରେ ଶ୍ରୀଦୁର୍ଗାଦେବୀ ଶ୍ରୀଜଗନ୍ନାଥଙ୍କ ଅଭିନ୍ନ ସ୍ୱରୂପ ଶ୍ରୀମାଧବଙ୍କ ସହିତ ଏକତ୍ର ଭଦ୍ରାସନରେ ରୁଜା ହୋଇ ପ୍ରଥମ ଆଠଦିନ ଶ୍ରୀବିମଳାଙ୍କ ମନ୍ଦିର ପୂଜା ମଣ୍ଡପରେ ପାଲିଙ୍କିରେ ବିଜେ ହୋଇ ଅବସ୍ଥାନ କରୁଥିବା ବେଳେ ଶେଷ ନଅ ଦିନ ରଥାକୃତି ବିମାନରେ ଦୋଳମଣ୍ଡପ ସାହିସ୍ଥିତ ଶ୍ରୀନାରାୟଣୀ ମନ୍ଦିରକୁ ଯାତ୍ରା କରିଥାନ୍ତି । ଉକ୍ତ ନଅ ଦିନର ଯାତ୍ରାକୁ ଗୁପ୍ତ ଗୁଣ୍ଡିଚା କୁହାଯାଇଥାଏ । ଦକ୍ଷିଣ

ଭାରତୀୟ ଭାଷା ଗୁଡ଼ିଶା ଶବ୍ଦରୁ ଓଡ଼ିଆ ଗୁଣ୍ଡିଚା ଶବ୍ଦ ର ଉତ୍ପତ୍ତି । ଗୁଡ଼ିଶା ଶବ୍ଦର ଅର୍ଥ ଏକ ପବିତ୍ର ସ୍ଥାନ । ସ୍ୱସ୍ଥାନରୁ ଅନ୍ୟ ଏକ ପବିତ୍ର ସ୍ଥାନକୁ ଯାତ୍ରା କରୁଥିବାରୁ ଏହି ଯାତ୍ରାକୁ ଗୁଣ୍ଡିଚା ଯାତ୍ରା କୁହାଯାଏ । ଏହି ଯାତ୍ରାର ଆରମ୍ଭ କାଳ ନିରୂପଣ କରିବାକୁ ଯିବା ପୂର୍ବରୁ ଶ୍ରୀବିମଳା ଓ ଶ୍ରୀମାଧବଙ୍କର ଏହି କ୍ଷେତ୍ରରେ ପ୍ରକଟର ସମୟ ନିରୂପଣ କରିବାକୁ ହେବ । କିନ୍ତୁ ତାହା ଅତ୍ୟନ୍ତ କଷ୍ଟସାଧ୍ୟ ମନେହୁଏ । ତେବେ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କର ଅବସ୍ଥିତି ପୂର୍ବରୁ ଶ୍ରୀମାଧବଙ୍କର ଅବସ୍ଥାନ ଥିବା ବିଭିନ୍ନ ପୁରାଣ ଓ କିମ୍ବଦନ୍ତୀମାନଙ୍କରୁ ଜଣାପଡ଼ିଥାଏ ଓ ନୀଳକନ୍ଦରରେ ଶ୍ରୀନୀଳମାଧବଙ୍କର ଅବସ୍ଥାନର ବର୍ଣ୍ଣନା ଏହାକୁ ଦୃଢ଼ୀଭୂତ କରେ । ମୋଟ ଉପରେ କହିବାକୁ ଗଲେ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ଦାରୁ ବିଗ୍ରହାଦିର ଅବସ୍ଥାନ ପୂର୍ବରୁ ପ୍ରାଚୀନ ଶ୍ରୀମନ୍ଦିରରେ ଶ୍ରୀମହାଲକ୍ଷ୍ମୀ ଓ ଶ୍ରୀବିମଳା ଆରାଧିତ ଥିଲେ । ବର୍ତ୍ତମାନର ଶ୍ରୀମନ୍ଦିର ନିର୍ମାଣ କାଳରେ (ଯଯାତି କେଶରୀଙ୍କ ଦ୍ୱାରା) ଶ୍ରୀବିମଳାଙ୍କର ଓ ଶ୍ରୀମହାଲକ୍ଷ୍ମୀଙ୍କର ମନ୍ଦିର ନିର୍ମାଣ ହୋଇଥିଲା, ଯେତେବେଳେ କି ଶ୍ରୀମାଧବ ବା ନୀଳମାଧବ କିମ୍ବା ପୁରୁଷୋତ୍ତମ ବର୍ତ୍ତମାନର ନୃସିଂହ ମନ୍ଦିରରେ ଆରାଧିତ ଥିଲେ । ପୁରୁଷୋତ୍ତମଙ୍କ ଉଦ୍ଦେଶ୍ୟରେ ଦୀପଦାନାଦି ଅଭିଲେଖଗୁଡ଼ିକ କେବଳ ଏହି ମନ୍ଦିରରେ ହିଁ ଦେଖାଯାଏ । ଯଯାତି କେଶରୀଙ୍କ ପୂର୍ବରୁ ଭୌମକର ବଂଶର ରାଜତ୍ୱ କାଳରେ ଓଡ଼ିଶାରେ ବୌଦ୍ଧ ଧର୍ମର ପ୍ରଭାବ ସୁଦୂରପ୍ରସାରୀ ଥିଲା ଏବଂ ତତ୍‌ପୂର୍ବରୁ ହର୍ଷବର୍ଦ୍ଧନ ଶୈଳୋଦ୍ଭବ ରାଜବଂଶର ପତନ ଘଟାଇ ଓଡ଼ିଶା ଜୟ କଲାଠାରୁ ବୌଦ୍ଧ ବଜ୍ରଯାନର ସ୍ରୋତରେ ଶ୍ରୀବିମଳାଦେବୀ ଭୈରବୀ ରୂପରେ ଆଖ୍ୟାୟିତ ହୋଇ କ୍ଷେତ୍ରେଶ୍ୱରୀ ରୂପେ ପୂଜା ପାଇଲେ । ତାହା ଫଳରେ କ୍ଷେତ୍ରପାଳ ଭୈରବୀଙ୍କର ଆବଶ୍ୟକତା ଆସିଥିଲା । ମୁକ୍ତି ମଣ୍ଡପ ଓ ଅନନ୍ତ ଶୟନ ବାସୁଦେବଙ୍କ ମଧ୍ୟବର୍ତ୍ତୀ କ୍ଷେତ୍ରପାଳେଶ୍ୱର (ଶିବ) ମନ୍ଦିରକୁ ଅନୁଧ୍ୟାନ କଲେ ଏହାର ସତ୍ୟତା ସ୍ପଷ୍ଟ ବାରି ହୋଇଥାଏ ।

ପୌରାଣିକ ଆଖ୍ୟାୟିକା ଅନୁସାରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଶ୍ରୀସୁଭଦ୍ରାଙ୍କ ମୂର୍ତ୍ତିମାନ ଗୁଣ୍ଡିଚା ମନ୍ଦିରର ଆଡ଼ପ ମଣ୍ଡପରେ ନିର୍ମାଣ କରାଯାଇଥିଲା । ତତ୍ ସଂଗେ ସଂଗେ ସେମାନଙ୍କର ପୂଜା ପାର୍ବଣ ନିମନ୍ତେ ଶ୍ରୀମନ୍ଦିର ମଧ୍ୟ ନିର୍ମାଣ ହୋଇ ଶେଷ କରାଗଲା । ମନ୍ଦିର ପ୍ରତିଷ୍ଠା ନିମନ୍ତେ ରାଜା ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କୁ ନିମନ୍ତ୍ରଣ କରି ଫେରିବା ପରେ ଦେଖିଲେ ପୂର୍ବରୁ ମନ୍ଦିର ପରିସରରେ ପୂଜା ପାଉଥିବା ଦେବୀ ଶ୍ରୀବିମଳା ରତ୍ନସିଂହାସନ ଅଧିକାର କରିନେଇଅଛନ୍ତି । ତେଣୁ ଇନ୍ଦ୍ରଦ୍ୟୁମ୍ନ ଦେବୀ ବିମଳାଙ୍କୁ ସବିନୟ ନିବେଦନ କରିଥିଲେ ରତ୍ନସିଂହାସନ ଛାଡ଼ି ଅନ୍ୟତ୍ର ଗଲେ ଶ୍ରୀଜୀଉମାନଙ୍କ ବିଗ୍ରହମାନ ସେଠାରେ ପ୍ରତିଷ୍ଠା କରିବେ । ଶ୍ରୀବିମଳା ସର୍ତ୍ତ ରଖିଲେ ଓ ଇନ୍ଦ୍ରଦ୍ୟୁମ୍ନଙ୍କୁ ପ୍ରତିଜ୍ଞାବଦ୍ଧ କରାଇଲେ ଯେ ଦେବୀଙ୍କ ନିମନ୍ତେ ମନ୍ଦିର ପରିସରରେ ତାଙ୍କ ପୂଜାପାଠ ନିମନ୍ତେ ଅନ୍ୟ ଏକ ମନ୍ଦିର ନିର୍ମାଣ କରିବେ ଏବଂ ଶ୍ରୀଜଗନ୍ନାଥଙ୍କୁ ପରଷା ଯାଉଥିବା ପ୍ରସାଦ ତାଙ୍କୁ ମଧ୍ୟ ଅର୍ପଣ କରାଯିବ । ଦେବୀଙ୍କୁ ଭୋଗ ପଦାର୍ଥ ଅର୍ପଣ ହେବା ପରେ ହିଁ ତାହା ହେବ ମହାପ୍ରସାଦ । ଇନ୍ଦ୍ରଦ୍ୟୁମ୍ନ ଏଥିରେ ରାଜି ହେଲେ ଓ ଦକ୍ଷିଣ ପଶ୍ଚିମ ପଟର ପଛପଟକୁ ଲକ୍ଷ୍ମୀ ମନ୍ଦିରର ବିପରୀତ ଦିଗରେ ଏକ ଦେବାଳୟ ନିର୍ମାଣ କଲେ । ବର୍ତ୍ତମାନ ତାହା ପୁନର୍ନିର୍ମିତ ହୋଇ ୬୦ଫୁଟ ବିଶିଷ୍ଟ କରାଯାଇଛି ।

ଶ୍ରୀଜଗନ୍ନାଥ ମନ୍ଦିରର ପୂଜା ପରଂପରାରେ ବିମଳାଙ୍କ ପ୍ରାଧାନ୍ୟ ଅନସ୍ୱୀକାର୍ଯ୍ୟ । ଶ୍ରୀମନ୍ଦିରର ପୋଖରିଆରେ ଭୋଗ ପଦାର୍ଥ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ପରଷି ପୂଜା କରିଦେଲେ ଯେ ତାହା ମହାପ୍ରସାଦ ହୋଇଯାଏ, ତାହା ନୁହେଁ । ପୂଜା ସାମଗ୍ରୀ ଦେବୀ ବିମଳାଙ୍କୁ ଅର୍ପଣ ନ କରିବା ଯାଏଁ ତାହା ମହାପ୍ରସାଦ ହୁଏ ନାହିଁ । ତତ୍ତ୍ୱବିତ୍‌ମାନଙ୍କ ମତ ଯେ ମା' ପ୍ରସାଦରୁ ମହାପ୍ରସାଦ ଶବ୍ଦ ଜନ୍ମ ନେଇଛି । ଦିନଥିଲା ଯେତେବେଳେ ଶ୍ରୀଜଗନ୍ନାଥଙ୍କୁ ପରଷା ଯାଉଥିବା ସମସ୍ତ ପ୍ରସାଦ ପୁନଶ୍ଚ ମା'ବିମଳାଙ୍କୁ ଅର୍ପଣ ହେଉଥିଲା, ଏବେ କିନ୍ତୁ ସୀମିତ ସଂଖ୍ୟକ ଭୋଗ ପଦାର୍ଥ ହିଁ ଦେବୀଙ୍କୁ ପୁନଃ ପ୍ରଦାନ କରାଯାଉଛି । ପୁରୀ ମନ୍ଦିରର ପ୍ରଥମ ଅନ୍ନ ଭୋଗ ସକାଳ ଧୂପରେ ୧୬ ପ୍ରକାର ପ୍ରସାଦ ସାମଗ୍ରୀ ରହେ । କିନ୍ତୁ ସେଥିରୁ ମାତ୍ର ଛଅ ପ୍ରକାରର ପଦାର୍ଥ ନିଆଯାଏ ବିମଳା ମନ୍ଦିରକୁ ପୁନଃ ଅର୍ପଣ ପାଇଁ । ସେଗୁଡ଼ିକ ହେଲା ସୁନାଥାଳି ଖେଚେଡ଼ି, ବଡ଼କାନ୍ତି, ସାନକାନ୍ତି, ଝିଲି, ଶାଗ ଭଜା ଓ କଦଳୀ ଭଜା ଇତ୍ୟାଦି । ସୁଆର ନିଯୋଗରେ ଅନ୍ତର୍ଭୁକ୍ତ ବେହେରା ପନ୍ତିବଡ୍ଡୁ, ପନ୍ତିବଡ୍ଡୁ ଏବଂ ବିଡୁଆ ଯଥାକ୍ରମେ ଶ୍ରୀଜଗନ୍ନାଥ, ପ୍ରଭୁ ବଳଭଦ୍ର ଏବଂ ଦେବୀ ସୁଭଦ୍ରା ଓ ସୁଦର୍ଶନଙ୍କ ଭୋଗ ନେଇ ବିମଳା ମନ୍ଦିରକୁ ଯାଆନ୍ତି । ସେହିମାନେ ହିଁ ଦେବୀଙ୍କୁ ପୁନଃ ସମର୍ପଣ କରନ୍ତି ପ୍ରସାଦ । ପୂଜାବେଳେ ସେମାନେ ଉଚ୍ଚାରଣ କରନ୍ତି ମାତ୍ର ଗୋଟିଏ ବାକ୍ୟ – ମା' ମହାପ୍ରସାଦ ସମର୍ପଣାୟ ନମଃ । ଅର୍ଥାତ୍ ମା' ଜୁହାର, ମହାପ୍ରସାଦ ସମର୍ପିତ ହେଲା । ମା'ଙ୍କ ପ୍ରସାଦ ଯୋଗୁଁ ଭୋଗ ହୁଏ ମହାପ୍ରସାଦ । ଏଣୁ ପୁରୀ ମନ୍ଦିର ପରମ୍ପରାରେ ବିମଳାଙ୍କ ଭୂମିକା ଅଦ୍ୱିତୀୟ ।

◆◆◆

**ପୁସ୍ତକ ସହାୟକ**

(୧)ପଣ୍ଡିତ ହରିହର ମହାପାତ୍ର , ଶ୍ରୀକ୍ଷେତ୍ରର ଅଜ୍ଞାତ ଅଧ୍ୟାୟ, କଟକ, ୨୦୦୦, ପୃ-୧୨୦-୧୩୨

(୨)ଶରତ ଚନ୍ଦ୍ର, ଓଡ଼ିଶାର ଶକ୍ତିପୀଠ, ପ୍ରଥମ ଭାଗ, ବ୍ରହ୍ମପୁର, ୨୦୦୬, ପୃ ୬୩-୬୯

(୩)ସତ୍ୟନାରାୟଣ ରାଜଗୁରୁ, ଶ୍ରୀପୁରୁଷୋତ୍ତମ ଓ ଶ୍ରୀମନ୍ଦିର, ଭୁବନେଶ୍ୱର, ୨୦୦୪, ପୃ୧୪୭

(୪)ଚକ୍ରଧର ମହାପାତ୍ର, ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ, କଟକ, ୧୯୬୯, ପୃ ୩୧୮, ୩୨୬

(୫)ମହିମୋହନ ତ୍ରିପାଠୀ, ଏ ବ୍ରିଫ୍ ଲୁକ୍ ଆଟ ଶ୍ରୀଜଗନ୍ନାଥ ଟେମ୍ପୁଲ, ପୁରୀ, ୨୦୧୦, ପୃ-୩୨

(୬)ଏଚ୍. ସି. ଦାସ, କଲଚରାଲ ହେରିଟେଜ ଅଫ୍ ଓଡ଼ିଶା, ପୁରୀ ଜିଲ୍ଲା, ୩ୟ ଭାଗ, ଗୋପିନାଥ ମହାନ୍ତି (ସମ୍ପାଦନା), ଭୁବନେଶ୍ୱର. ୨୦୧୦, ପୃ-୬୮୨

ଅଧ୍ୟାପକ, ଇତିହାସ ବିଭାଗ
ସୂରଜମଲ ଶାହା ମହାବିଦ୍ୟାଳୟ, ପୁରୀ

# ବିଜୟିନୀ

**ମିନତୀ ମିଶ୍ର**

ଗଗନେ ପବନେ ନବ ଝଙ୍କାର
ହୃଦୟ ଗହନେ ଶୁଭ ଓଁକାର
ବହେ ଶ୍ରଦ୍ଧା ମନ୍ଦାକିନୀ
ଆସ ମା ! ତ୍ରିଲୋଚନୀ

ଶରତ ଆଙ୍କିଛି ଶେଫାଳୀ ଚିତା
କାଶତଣ୍ଡି ଧୀରେ ନୁଆଁଏ ମଥା
ସବୁ ମଧୁମୟ ତୋ'ର ଆସିବା ଘେନି
ଆସ ମା ! କାତ୍ୟାୟନୀ

ମନରେ ମନରେ ପୁଲକ ଶତ
ପଲ୍ଲୀଠୁ ସହର ମନ ଉଷତ



ପ୍ରକୃତି ସୁନ୍ଦର ଫୁଲ ପଲ୍ଲବ ଘେନି
ଆସ ମା ! ସିଂହାସିନୀ

ଅଶ୍ରୁରେ ସଜାଏ ଦୀପାଳୀ ମାଳ
ଆଶାରେ ବନ୍ଦାଏ ପଦ ଯୁଗଳ
ତୁଷ୍ଟ ହୁଅ ଅନ୍ତରର ଶରଧା ଘେନି
ଆସ ମା ! ବିଜୟିନୀ

ଭାରତୀୟ ଷ୍ଟେଟ୍ ବ୍ୟାଙ୍କ
ଭୁବନେଶ୍ୱର ମୁଖ୍ୟ ଶାଖା



# ମାଆ ଓ ଶକ୍ତିପୂଜା

**ବିମଳା ସିଂହ**

'ମାଆ' ଏକ ପବିତ୍ର ଉଚ୍ଚାରଣ । ସିଏ ସୃଷ୍ଟି, ସ୍ଥିତି ଆଉ ପ୍ରଳୟ, ଏହି ତିନୋଟି ଶକ୍ତିର ଉତ୍ସ । ମାନବ ସଭ୍ୟତାର ଆଦିଶକ୍ତି ହେଉଛନ୍ତି ମାଆ । ତାଙ୍କର ଶକ୍ତିକୁ ଶକ୍ତି ତତ୍ତ୍ୱର ରୂପ ଦିଆଯାଇଅଛି । କାରଣ 'ଦେବୀ ଭାଗବତ'ରୁ ଜଣାଯାଏ ଯେ ଭଗବାନ ଶିବଙ୍କର ପ୍ରଥମ ସ୍ପନ୍ଦନର ବିକାଶ ହିଁ ଶକ୍ତିତତ୍ତ୍ୱ । ଏହି ଶକ୍ତି ମଧ୍ୟ ଜ୍ୟୋର୍ତିବିନ୍ଦୁଯୁକ୍ତ । ପୁନଶ୍ଚ ଦେବୀ ଉପନିଷଦରୁ ଜଣାଯାଏ, ବ୍ରହ୍ମଠାରୁ ବହୁଶକ୍ତି ଅଭିନ୍ନ । ଯେତେବେଳେ ଏହି ଧରାଧାମରେ ଆସୁରିକ ଶକ୍ତିର ପରିମାଣ ଅଧିକ ହୋଇଯାଏ, ତା'ର ବିନାଶ ପାଇଁ 'ମାଆ' ବିଭିନ୍ନ ରୂପରେ ଆବିର୍ଭାବ ହୋଇଥାନ୍ତି । ଆହୁରି ମଧ୍ୟ ଋକ୍‌ବେଦରୁ ଜଣାଯାଏ ଯେ ପ୍ରତି ମୁହୂର୍ତ୍ତରେ ଏହି ଧରାପୃଷ୍ଠରେ ଯାହାସବୁ ଘଟୁଅଛି, ତାହା ମା' ଅଦିତିଙ୍କ ଇଚ୍ଛା ଶକ୍ତିରୁ ଘଟୁଛି । 'ଅଦିତି' ହେଉଛନ୍ତି ନିଜେ ମାତା, ପିତା, ପୁତ୍ର ଓ ଗୁରୁ । ଏହି ଶକ୍ତି ସ୍ୱରୂପିଣୀ ମାଆ ବିଭିନ୍ନ ନାମରେ ବିଭିନ୍ନ ସ୍ଥାନରେ ରହି ପୂଜା ପାଇଥାନ୍ତି । ସେ ସର୍ବବ୍ୟାପୀ, ସର୍ବଦା ଜାଗ୍ରତ ଓ ସର୍ବ ବିଦ୍ୟମାନ । ସେ ମଧ୍ୟ ଆଦିଶକ୍ତି, ମହାମାୟୀ ଓ ଜଗତଜନନୀ । ମା'ଙ୍କର ବିଭିନ୍ନ ନାମ ଯଥା ଦୁର୍ଗା, ଉମା, କାଳୀ, ଅମ୍ବିକା, ଭୈରବୀ ଆଦି ନାମକୁ ଆଧାର କରି ଶାକ୍ତ ଧର୍ମାଚାର ମଧ୍ୟ ବିକାଶଲାଭ କରିଛି ଏବଂ ଅନୁମାନ କରାଯାଏ ଉପନିଷଦ ଯୁଗରେ ଏହି ଦେବୀ କଳ୍ପନାର ଅଭ୍ୟୁଦୟ ହୋଇଥିଲା ବୋଲି । କାରଣ ବେଦ ଶାସ୍ତ୍ରରେ ଋଷିଗଣ ଶକ୍ତି ଏବଂ ବ୍ରହ୍ମ ଉଭୟେ ଏକ ବୋଲି ଧରି ନେଇଥିଲେ ଏବଂ ସେହି ଅନୁଯାୟୀ ସେମାନେ ଦେବୀଙ୍କୁ ପୂଜା ମଧ୍ୟ କରୁଥିଲେ । ଋକ୍‌ବେଦର ଦଶମ ମଣ୍ଡଳରେ ଯେଉଁ ଆଠଟି ମନ୍ତ୍ର ରହିଛି, ତାହା ଦେବୀସୂକ୍ତ ନାମରେ ପରିଚିତ, ଯାହା ଚଣ୍ଡୀର ମୌଳିକ ତତ୍ତ୍ୱ ।

ଏକାଦଶ ରୁଦ୍ର, ଦ୍ୱାଦଶ ଆଦିତ୍ୟ, ସର୍ବ ଦେବଗଣ, ଅଗ୍ନି, ବରୁଣ, ମିତ୍ର, ଅଶ୍ୱିନୀ କୁମାର ଆଦି ସମସ୍ତେ ହେଉଛନ୍ତି ଦେବୀ ଚଣ୍ଡୀଙ୍କର ଅଂଶ ବିଶେଷ । ଆହୁରି ମଧ୍ୟ ଦେବୀଙ୍କୁ ହିରଣ୍ୟବର୍ଣ୍ଣା ଲକ୍ଷ୍ମୀ ରୂପେ ସ୍ତୁତି କରାଯାଏ ଶ୍ରୀସୂକ୍ତ ଅନୁଯାୟୀ ।

ଓଡ଼ିଆ ସାହିତ୍ୟ ସହିତ ସମ୍ପୃକ୍ତ ପଲ୍ଲୀ ସାହିତ୍ୟ ଏବଂ ଆଦିବାସୀ ସାହିତ୍ୟ ମାଆଙ୍କର ସ୍ତୁତିଗାନ କରେ । ଏଥିରେ ଥିବା ସ୍ତୁତି ମାଳା ଅନୁଯାୟୀ ମାଆ ସକଳ ଶକ୍ତିର ଆଧାର । ଆଞ୍ଚଳିକ ସ୍ତରରେ ତାଙ୍କର ବିଭିନ୍ନ ନାମ ଯଥା- କଟକରେ କଟକଚଣ୍ଡୀ, ବାଣପୁରରେ ଭଗବତୀ, ଭଦ୍ରକରେ ଭଦ୍ରକାଳୀ, ଘଟଗାଁରେ ତାରିଣୀ, ସମ୍ବଲପୁରରେ ସମଲେଶ୍ୱରୀ, କାକଟପୁରରେ ମା' ମଙ୍ଗଳା, ଶ୍ରୀକ୍ଷେତ୍ରେ ବିମଳା, ତାଳଚେରରେ ହିଙ୍ଗୁଳା, ବାଙ୍କୀରେ ଚର୍ଚ୍ଚିକା, ବଡମ୍ବାରେ ଭଟ୍ଟାରିକା, ଚିଲିକାରେ କାଳିଜାଈ, ଝଙ୍କଡରେ ମା'ସାରଳା, କୋଣାର୍କରେ ରାମଚଣ୍ଡୀ, ଭୁବନେଶ୍ୱରରେ ଗୌରୀ, ଯାଜପୁରରେ ବିରଜା, ଭୁଷଣ୍ଡପୁରରେ ଉଗ୍ରତାରା, ପୁରୁଷୋତ୍ତମପୁରରେ ତାରାତାରିଣୀ, ଗଜପତିରେ ସ୍ଥାପିତା ଝାଡେଶ୍ୱରୀ, ହରଚଣ୍ଡୀ, ଖୋର୍ଦ୍ଧା ବାଲିପାଟଣାରେ ଚଉଷଠୀ ଯୋଗିନୀ, ମୟୂରଭଞ୍ଜରେ କୀଚକେଶ୍ୱରୀ ଇତ୍ୟାଦି । ମା'ଙ୍କର ନାମ ଅନୁସାରେ ଏହିସବୁ ସ୍ଥାନ ଜନମାନସରେ ପ୍ରସିଦ୍ଧି ଲାଭ କରିଛି ଏବଂ ପ୍ରତ୍ୟେକ ଦିନ ବହୁ ସଂଖ୍ୟାରେ ଜନସାଧାରଣ ମା'ଙ୍କର ଏହି ପୀଠମାନଙ୍କରେ ଭିଡ ଜମାଇଥାନ୍ତି । ଦେବୀଙ୍କ ସ୍ତୁତିମାଳିକାରୁ ଜଣାଯାଏ–

''ସୃଷ୍ଟି ସ୍ଥିତି ପ୍ରକ୍ରିୟା ଯେ ଦେବୀ ମହାମାୟୀ
ଜଗତକଲ୍ୟାଣୀ ଆଦିଶକ୍ତି ମହାମାୟୀ,
ମାଆ ଶକ୍ତି ସ୍ୱରୂପିଣୀ ଜଗତଜନନୀ,
ମାଆ ସ୍ନେହ ସୁଧା ଜ୍ଞାନ ମଙ୍ଗଳ କାରିଣୀ ।''

◆◆◆

ଶ୍ରୀମଦ୍ ଭାଗବତରେ ଏହି ମହାଶକ୍ତିଙ୍କୁ ମାୟା, ଯୋଗ ଏବଂ ପ୍ରକୃତି ଆଦି ରୂପରେ ବ୍ୟାଖ୍ୟା କରାଯାଇଛି । ତନ୍ତ୍ର ଶାସ୍ତ୍ର ଅନୁଯାୟୀ ଶକ୍ତି-ସୃଷ୍ଟି-ସ୍ଥିତି । ପ୍ରଳୟକାରିଣୀ ସନାତନ ପ୍ରକୃତି ରୂପେ ପରିକଳ୍ପିତା, ଯଥା-

''ସୃଷ୍ଟି-ସ୍ଥିତି-ବିନାଶନାଂ ଶକ୍ତିଭୂତେ ସନାତନୀ,
ଗୁଣାଶ୍ରୟେ ଗୁଣମୟେ ନାରାୟଣୀ ନମସ୍ତୁତେ ।''

ମନ୍ତ୍ରଯନ୍ତ୍ର ବା ମହାବିଦ୍ୟାରେ ମା' ସୁପ୍ରତିଷ୍ଠିତା । ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଥିବା ଅନେକ କବି, ସାହିତ୍ୟିକ, ପ୍ରାବନ୍ଧିକ ନିଜର ଆତ୍ମ ନିବେଦନ କରିଛନ୍ତି ମା'ଙ୍କର ଚରଣାରବିନ୍ଦରେ ଏବଂ ଆଶୀର୍ବାଦ ଯୁକ୍ତ ହୋଇଛନ୍ତି ମଧ୍ୟ । ସେମାନଙ୍କ ମଧ୍ୟରୁ ଶୁଦ୍ରମୂନୀ ସାରଳାଦାସ ଅନ୍ୟତମ । ତାଙ୍କ ରଚନାରୁ ଜଣାଯାଏ ଯେ-

''ନ ଜାଣଇ ଜପ ମନ୍ତ୍ର ତନ୍ତ୍ର କଥା,
ଶ୍ରୀଚଣ୍ଡୀ ସାରଳା ମୋ' ଅଭୟବର ଦାତା ।
ଦୁର୍ଗା ଅଟନ୍ତି ସମସ୍ତ ବେଦ ମନ୍ତ୍ର ଶାଖା,
ଦୁର୍ଗା ଆଦ୍ୟ ଅବଧାନ ଜାଣିଛି ମୁଁ ଏକା ॥
ଦୁର୍ଗା ଅଟନ୍ତି ଯେ ଜଣା ଅଜଣା ଗାୟତ୍ରୀ,
ଦୁର୍ଗା ଅଟନ୍ତି ଯୋଗ ଅଯୋଗ କାଳରାତ୍ରି ॥

ବେଦରେ ମଧ୍ୟ ଲେଖାଅଛି- ମାତା ପୃଥ୍ୱୀ ଅହଂ ପୁତ୍ର ପୃଥିବ୍ୟାଃ । ଆମ ଦେଶରେ ଶକ୍ତି ପୂଜାର ପ୍ରବର୍ତ୍ତନ ଐତିହାସିକ ଦୃଷ୍ଟିକୋଣରୁ ସଠିକ୍ ଭାବରେ ଜଣା ନପଡିଲେ ମଧ୍ୟ ଅନୁମାନ କରାଯାଏ ଯେ ପ୍ରାୟ ପାଞ୍ଚହଜାର ବର୍ଷ ପୂର୍ବେ ଅର୍ଥାତ ସିନ୍ଧୁ ସଭ୍ୟତା ପୂର୍ବରୁ ଶକ୍ତି ପୂଜାର ପରମ୍ପରା ରହିଥିଲା । କିନ୍ତୁ ଓଡ଼ିଶାରେ ଶକ୍ତିପୂଜାର ପରମ୍ପରା କେବେଠାରୁ ଆରମ୍ଭ ହୋଇଛି, ତାହା ବିଭିନ୍ନ ଗବେଷକଙ୍କ ଭିନ୍ନ ଭିନ୍ନ ମତ ଯୋଗୁଁ ନିର୍ଧାର୍ଯ୍ୟ ହୋଇପାରିନାହିଁ । କାରଣ କେତେଜଣ ଗବେଷକଙ୍କ ମତରେ ଖ୍ରୀ.ପୂ. ୧ମରୁ ବିରଜା କ୍ଷେତ୍ରରେ ଶକ୍ତିପୂଜା ପ୍ରଚଳିତ ଥିଲା । ଗୁପ୍ତବଂଶର ଶାସନ ସମୟରେ ଓଡ଼ିଶାରେ ଶକ୍ତି ପୂଜାର ବିକାଶ ଘଟିଥିଲା ବୋଲି ଇତିହାସରୁ ଜଣାଯାଏ । ଭୌମକର ବଂଶୀ ରାଜାମାନଙ୍କ ସହାୟତାରେ ଓଡ଼ିଶାରେ ବିଭିନ୍ନ ଶକ୍ତିପୀଠରେ ପ୍ରତିଷ୍ଠା ହୋଇଥିଲା ବୋଲି ମଧ୍ୟ ଜଣାଯାଏ । ସେ ଯାହା ହେଉନା କାହିଁକି ଓଡ଼ିଶାର ପୁରପଲ୍ଲୀରେ ମା'ଙ୍କର ପୂଜା ପାଇଁ ଗ୍ରାମଦେବତୀ ବା ଅନ୍ୟ କେଉଁ ନାମରେ ମନ୍ଦିରଟିଏ ରହି ଆସିଛି । ଅନେକ ବିଶ୍ୱାସର ଧାରା ଭିତରେ ଏବଂ ସମସ୍ତ ପୂଜା ଉତ୍ସବରେ ପ୍ରଥମେ ମାଆଙ୍କ ପୀଠରେ ପୂଜା ଆରମ୍ଭ କରି ସାରିବା ପରେ ଅନ୍ୟ କାମ କରିଥାନ୍ତି ।

ମାଆ ଶବ୍ଦର ଅର୍ଥ, ସମସ୍ତ ପ୍ରକାର ବାଧା ବନ୍ଧନକୁ ପ୍ରତିହତକରି ଯିଏ ଆନନ୍ଦ ପ୍ରଦାନ କରିଥାନ୍ତି । ଜନ୍ମଭୂମି, ଜନ୍ମଦାତ୍ରୀ, ପାଳନକର୍ତ୍ତ୍ରୀ, ଅଭୟଦାତ୍ରୀ ଏବଂ ଗୋମାତା, ଯାହାଙ୍କ ଦେହରେ ତେତ୍ରିଶ କୋଟି ଦେବତା ବାସ କରନ୍ତି ।

ଓଡ଼ିଆ ସଂସ୍କୃତି ଓ ପରମ୍ପରାରେ ମା'ଙ୍କର ବିଭିନ୍ନ ପୂଜା ବର୍ଷତମାମ ଲାଗି ରହିଥିଲେ ମଧ୍ୟ ଦୁର୍ଗାପୂଜା ଶ୍ରେଷ୍ଠପୂଜା । ଏହି 'ଦୁର୍ଗା' ଶବ୍ଦର ଅର୍ଥହେଲା ଦୁର୍ଗ ରୂପକ କାରାଗାରରୁ ବିଷ୍ଣୁବିମୁଖ ଜୀବମାନଙ୍କୁ ଯିଏ ଦଣ୍ଡ ଦିଅନ୍ତି । ଏହି ଦୁର୍ଗା ଦ୍ୱି ଭୁଜାରୁ ବିଂଶଭୁଜାରେ ମଧ୍ୟ ସମୟକ୍ରମରେ ଆବିର୍ଭୂତା । ଓଡ଼ିଶାର ବିଭିନ୍ନ ସ୍ଥାନରେ ପରିଲକ୍ଷିତ ହେଉଥିବା ଦୁର୍ଗାମୂର୍ତ୍ତିଗୁଡିକ ଭିନ୍ନ ଭିନ୍ନ ରୂପ ଧାରଣ କରିଥାନ୍ତି । ଉଦାହରଣ ସ୍ୱରୂପ-ପ୍ରାଚୀ ଉପତ୍ୟକାରେ ମୋତିଆ ଗ୍ରାମରେ ଚତୁର୍ଭୁଜା, କୋରାପୁଟ ପଦ୍ମପୁରରେ ଅଷ୍ଟଭୁଜା, ବିରଜାକ୍ଷେତ୍ରର କୁଆଁସ ମଙ୍ଗଳା ଅଷ୍ଟଭୁଜା, ମହାନଦୀ ତଟସ୍ଥିତ ସିଂହର ଦଶଭୁଜା, ରାୟଗଡା ନିକଟ ପାଇକପଡା ଗ୍ରାମର ଅଷ୍ଟଭୁଜା, ବୈଦ୍ୟେଶ୍ୱରର ଦଶଭୁଜା, ମୟୂରଭଞ୍ଜର ଖିଚିଂର ଦଶଭୁଜା ପ୍ରଧାନ । ସେ ତ୍ରିଗୁଣାତ୍ମକ ଯଥା ସର୍ବଜନନୀ, ପ୍ରକୃତି ରୂପିଣୀ, ମାତାସ୍ୱରୂପିଣୀ ଆଦ୍ୟାଶକ୍ତି ରୂପେ ପରିକଳ୍ପିତା । ତେଣୁ ଓଡ଼ିଶାରେ ଶକ୍ତିପୂଜା ଏକ ଲୋକପ୍ରିୟ ପୂଜା ଭାବରେ ଅଭିହିତ । ମାନବର ଜନ୍ମଜାତକ ସହ ମା'ଙ୍କର ଏହି ଶକ୍ତିପୂଜା ଓତଃପ୍ରୋତ ଭାବରେ ଜଡିତ । ଏତଦ୍‌ବ୍ୟତୀତ ଓଡ଼ିଆ ସାହିତ୍ୟରେ ଏହି ମା'ଙ୍କର ଉପାସନା ବହୁ ଭାବରେ ରହିଛି । ତେଣୁ ସାହିତ୍ୟ ସାଧକ ସାଧିକାମାନେ ଗାଇଥାନ୍ତି-

'ଚିରକାଳ ମାଆ କବିତ୍ୱ ପ୍ରଦାୟିନୀ
ଉପାସନା କବିତାରେ ପରିତୃପ୍ତା... କବୀନ୍ଦ୍ର ଜନନୀ ।''

ଆସନ୍ତୁ, ଏହି ମହାମାୟୀ ମହାଶକ୍ତି ମାଆଙ୍କୁ ପ୍ରଣାମ ସ୍ୱରୂପ ଆମ ଭିତରେ ଥିବା ଅହଂକୁ ଦୂର କରି ଜୀବନ ଯାତ୍ରା ପଥରେ ସହାୟ ହେବାକୁ ପ୍ରାର୍ଥନା କରିବା ।

ସରକାରୀ ଉଚ୍ଚ ବିଦ୍ୟାଳୟ,
ଖଣ୍ଡଗିରି, ଭୁବନେଶ୍ୱର



# ସୂଚୀ

# ଶ୍ରଦ୍ଧାଞ୍ଜଳି



## ମହାତ୍ମା ଗାନ୍ଧୀ

**୦୨.୧୦.୧୮୬୯ – ୩୦.୦୧.୧୯୪୮**

### ମୋ' ସ୍ୱପ୍ନର ଭାରତ

'ମୁଁ ଏପରି ଭାରତବର୍ଷ ନିମନ୍ତେ କାମ କରିବି, ଯେଉଁଠି ଦରିଦ୍ରରୁ ଦରିଦ୍ରତମମାନେ ଅନୁଭବ କରିବେ ଯେ ଏହା ସେମାନଙ୍କର ଦେଶ, ଯାହାର ନିର୍ମାଣରେ ସେମାନଙ୍କର ଫଳପ୍ରଦ ଅବଦାନ ରହିଥିବ, ଏପରି ଭାରତବର୍ଷ ଯେଉଁଠାରେ କି ଜନସାଧାରଣଙ୍କ ମଧ୍ୟରେ ଛୋଟ ବଡ଼ ବୋଲି କିଛି ଶ୍ରେଣୀ ଭେଦ ନଥିବ, ଏପରି ଭାରତବର୍ଷ ଯେଉଁଠାରେ କି ସମସ୍ତ ସମ୍ପ୍ରଦାୟ ପୂର୍ଣ୍ଣ ସଂଗତିରେ ବାସ କରିବେ, ଏପରି ଏକ ଭାରତବର୍ଷ ଯେଉଁଠାରେ ଅଭିଶପ୍ତରୂପୀ ଅସ୍ପୃଶ୍ୟତା କିମ୍ୱା ମାଦକ ଓ ନିଶାଦ୍ରବ୍ୟର ସ୍ଥାନ ନଥିବ, ପୁରୁଷଙ୍କ ପରି ମହିଳାମାନେ ସମାନ ଅଧିକାର ଉପଭୋଗ କରିବେ ଆଉ ଅବଶିଷ୍ଟ ପୃଥିବୀ ସହ ଆମେ ଶାନ୍ତିରେ ସହାବସ୍ଥାନ କରିବୁ । ଏହା ହେଉଛି ମୋ' ସ୍ୱପ୍ନର ଭାରତବର୍ଷ ।'

– ଏମ୍.କେ. ଗାନ୍ଧୀ

# ଶ୍ରଦ୍ଧାଞ୍ଜଳି



ସର୍ଦ୍ଦାର ବଲ୍ଲଭଭାଇ ପଟେଲ

୩୧.୧୦.୧୮୭୫ - ୧୫.୧୨.୧୯୫୦



ଜୟପ୍ରକାଶ ନାରାୟଣ

୧୧.୧୦.୧୯୦୨ - ୦୮.୧୦.୧୯୭୯



ଲାଲ ବାହାଦୂର ଶାସ୍ତ୍ରୀ

୦୨.୧୦.୧୯୦୪ - ୧୧.୦୧.୧୯୬୬



ଉତ୍କଳମଣି ଗୋପବନ୍ଧୁ ଦାସ

୦୯.୧୦.୧୮୭୭ - ୧୭.୦୬.୧୯୨୮

ସମ୍ପାଦକୀୟ

# ବାପୁ ! ତୁମେ ଖୁବ୍ ମନେ ପଡୁଛ

ବାପୁ !

ତୁମେ ଆଜି ଖୁବ୍ ମନେପଡୁଛ, ଏଇଥି ପାଇଁ ନୁହେଁ ଯେ, ଅକ୍ଟୋବର ୨ ତାରିଖ ତୁମର ଜନ୍ମ ଦିନ ଏବଂ ତୁମ ଜନ୍ମ ତିଥିରେ ତୁମକୁ ଆମେ ଢେର ମନେପକାଉ । ତା' ବାସିଦିନ ତୁମେ ଆମ ମାନସ ପଟରୁ ଏମିତି ଲିଭିଯାଅ, ଯେମିତି କୌଣସି ପ୍ରାଗୈତିହାସିକ ଜୀବର ସ୍ମୃତି । ପ୍ରାଗୈତିହାସିକ ଜୀବର ଜୀବାସ୍ମ ଅନ୍ତତଃ ସଂଗ୍ରହାଳୟ ବା ଜାଦୁଘରେ ସୁରକ୍ଷିତ ହୋଇ ରହିଥାଏ ପିଢ଼ି ପରେ ପିଢ଼ିର ମଣିଷ ଅବଲୋକନ କରିବା ପାଇଁ । ମାତ୍ର ତୁମର ସ୍ମୃତି ବିସ୍ମୃତ, ସ୍ଥିତି ନିଶ୍ଚିହ୍ନ ହୋଇଯାଏ କେବଳ ଅକ୍ଟୋବର ୨ ତାରିଖ ଦିନ । ଯଦି ସେଦିନଟି ସରକାରୀ ଛୁଟି ଦିନ ହୋଇନଥାନ୍ତା, ତେବେ ସେଦିନ ବି କେହି ତୁମକୁ ମନେ ରଖିଥାନ୍ତେ କି ନାହିଁ, ସନ୍ଦେହ ।

ବାପୁ !

ତୁମ ଜନ୍ମମାଟିରେ ଏବେ ଦାନବ ଓ ପିଶାଚମାନେ ବସି ନର ରକ୍ତ ପାନ କରିବାରେ ବ୍ୟସ୍ତ । ଯେଉଁ ମୂଲ୍ୟବୋଧ ପାଇଁ ତୁମେ ଜୀବନ ଉତ୍ସର୍ଗ କରି ଦେଲ, ସେହି ମୂଲ୍ୟବୋଧ କେଉଁଆଡେ ହଜିଯାଇଛି ତୁମ ଜନ୍ମମାଟିରେ । ହେ ସାବରମତୀର ସନ୍ଥ ! ସାବରମତୀ ତୀର ଦେଶରେ ସାମ୍ପ୍ରଦାୟିକତାର ଦାବାଗ୍ନି ପ୍ରଜ୍ଜ୍ୱଳିତ ହୋଇ ନଗରରୁ ନଗର, ଗ୍ରାମରୁ ଗ୍ରାମ ଜାଳିପୋଡି ପାଉଁଶ କରି ପକାଇଲାଣି । ଯେଉଁ ମହାମୁଲକର ମୁକ୍ତି ପାଇଁ 'ଲଙ୍ଗଳା ଫକୀର' ସାଜି ଆକୁମାରୀ ହିମାଳୟକୁ ସ୍ତବ୍ଧ କରି ଦେଇଥିଲ, ସେହି ମୁଲକରେ ଏବେ ପୁନରାୟ ବିଦେଶୀ କମ୍ପାନୀମାନଙ୍କର ଜୟଯାତ୍ରା ଅବ୍ୟାହତ । ତୁମ ସାଂଜ୍ଞା ଧାରଣ କରି ବିଦେଶୀମାନେ ଏ ଦେଶର ସ୍ୱାଧୀନତାକୁ ବିକ୍ରି କରି ଦେଉଛନ୍ତି ସାତ ସମୁଦ୍ର ତେର ନଈ ସେପାରିରେ ।

ବାପୁ !

ମୋ ମୁଲକର ଅସହାୟ ମଣିଷକୁ ମୁଠାଏ କରମୁକ୍ତ ଲୁଣର ସ୍ୱାଦ ପ୍ରଦାନ କରିବାକୁ ଦାଣ୍ଡିଯାତ୍ରା କରି ତୁମେ ବିଶାଳ ବିଟ୍ରିଶ ସାମ୍ରାଜ୍ୟକୁ ଥରହର କରି ଦେଇଥିଲ । ଅଥଚ ଆଜି ତୁମ ନାମ ବ୍ୟବହାର କରି ଭାରତେଶ୍ୱର ସାଜିଥିବା ମଣିଷଗୁଡିକ ଭାରତୀୟଙ୍କୁ ପୁନରାୟ ଛେଳିମେଣ୍ଢା ପରି ବିଦେଶୀ କଂସେଇ ଖାନାକୁ ବିକ୍ରିକରି ଦିଆଯାଉଥିବା ବେଳେ ତୁମେ ନିରବରେ ବସି ରହୁଛ ?

ବାପୁ !

ଅସହାୟ ମୁଲକର ଅସହାୟ ମଣିଷ ଆଜି ହା' ଅନ୍ନ ଚିତ୍କାର କରୁଥିବା ବେଳେ ତାକୁ 'ପିଜା' ଓ 'ବର୍ଗର' ଖୁଆଇବା ପାଇଁ ବିଦେଶୀ କମ୍ପାନୀର କରାଳ କବଳକୁ ଠେଲି ଦେବାର ଉପକ୍ରମ – 'ଭାତ ନମିଳିଲେ ପିଜା ଖାଅ, କ୍ଷୀର ନମିଳିଲେ ହୁ୍ୟସ୍କି ପିଅ' ନୀତିରେ ଦେଶ ପରିଚାଳିତ । ଦେଶୀ ବିଦେଶୀ ପୁଞ୍ଜି ଐରାବତମାନଙ୍କୁ ରିହାତି ଦେବାକୁ ରାଜକୋଷରେ ଧନର ଅଭାବ ନାହିଁ । ଚିନି, କିରୋସିନି ଉପରେ ସାମାନ୍ୟ ରିହାତି ଦେଲେ ଦେଶ ଦେବାଳିଆ ହୋଇଯାଉଛି– ସୁନ୍ଦର ଅର୍ଥନୀତିର ବ୍ୟାଖ୍ୟା । ସରକାରୀ ଉଦ୍ୟୋଗକୁ ବିକ୍ରିକରି ମାଲିକାଣୀଙ୍କ ଗନ୍ତାଘର ଭର୍ତ୍ତିକରର ନାରାରେ ଏ ସମଗ୍ର ଦେଶଟା ଉଠୁଛି ପଡୁଛି ।

ବାପୁ !

ସତରେ ମୋ' ପରି ମଣିଷ ତୁମକୁ ଖୁବ୍ ମନେ ପକାଉଛନ୍ତି । ହେଲେ ଏ ଦେଶର ଅଧିବାସୀ ! ଭଗବାନ୍ ସେମାନଙ୍କୁ ପରା ଉଦ୍ଧାର କରିବେ ? କେବେ କେଜାଣି !!

## ଦଶମୀ ଦଶହରା

ଶାରଦୀୟ ଦୁର୍ଗାପୂଜା ବା ଦଶହରା ଆସି ଯାଇଛି । ଦେବୀ ଦୁର୍ଗାଙ୍କର ମୃଣ୍ମୟୀ ପ୍ରତିମୂର୍ତ୍ତିଗୁଡିକ ରଙ୍ଗବେରଙ୍ଗ ରୂପ ଧାରଣ କରି ମନକୁ ମୋହିତ କରି ଦେଉଛନ୍ତି । ଓଡ଼ିଶାରେ ଶାରଦୀୟ ଦୁର୍ଗାପୂଜାର ପରମ୍ପରା ବହୁ ପ୍ରାଚୀନ । ଏହି ଅବସରରେ ଓଡ଼ିଶାର ଜନସାଧାରଣଙ୍କୁ 'ଉତ୍କଳ ପ୍ରସଙ୍ଗ' ତରଫରୁ ଶାରଦୀୟ ଅଭିନନ୍ଦନ ଜଣାଇ ସମସ୍ତଙ୍କର ସୁଖ-ସମୃଦ୍ଧି କାମନା କରୁଛି ।

ସମ୍ପାଦକ